# କୁରଆନ୍‌ର ହିତୋପଦେଶ


<u>ଅନୁବାଦ</u>

**ଶକୀଲ ଅହମଦ**

<u>ସହଯୋଗ</u>

**ମୁଫ୍‌ତି ଅବ୍ଦୁର ରହମାନ ନଦ୍‌ଭି**

**ରଫି ଅହମଦ ଖାନ୍**



ଇକ୍‌ରା ରିସର୍ଚ୍ଚ ଏକାଡେମୀ, କଟକ

# କୁରଆନ୍‌ର ହିତୋପଦେଶ

ଅନୁବାଦ :

**ଶକୀଲ ଅହମଦ**

ପ୍ରକାଶକ :

**ଶକୀଲ ଅହମଦ**
ଇକ୍‌ରା ରିସର୍ଚ୍ଚ ଏକାଡେମୀ
ମେଟ୍ରୋ ମଞ୍ଜିଲ୍, ଦିୱାନ୍ ବଜାର
କଟକ-୭୫୩୦୦୧

ନୂତନ ସଂସ୍କରଣ :

**ଜୁଲାଇ, ୨୦୧୭**

ଅକ୍ଷରସଜ୍ଜା :

**ଶକୀଲ ଅହମଦ**

ମୁଦ୍ରଣ :

**ଜଗନ୍ନାଥ ପ୍ରୋସେସ୍ ପ୍ରାଃ ଲି., କଟକ**

ମୂଲ୍ୟ :

**୧୫୦ ଟଙ୍କା**

# QUR'AN RA HITOPADESHA

**Translation**

**Shakeel Ahmed**

**Publisher :**

**Shakeel Ahmed**
For Iqra Research Academy
Metro Manzil, Dewan Bazar
Cuttack-753001

**New Edition :**

**July, 2017**

**Typeset :**

**Shakeel Ahmed**

**Printers :**
**Jagannath Process Pvt. Ltd., Cuttack**

**Price :**
**Rs. 150/-**

ପାଠକ ବନ୍ଧୁମାନଙ୍କୁ ଏହି ଗ୍ରନ୍ଥର ପବିତ୍ରତା ରକ୍ଷା କରିବା ପାଇଁ ବିନମ୍ର ଅନୁରୋଧ

# ମୁଖବନ୍ଧ

ଅନନ୍ତ ଦୟାବାନ ଅସୀମ କୃପାଶୀଳ ଅଲ୍ଲାହଙ୍କ ନାମରେ

କୁରଆନ୍ ଏକ ମହାନ ଗ୍ରନ୍ଥ । ବିଶ୍ୱର ଶତକଡ଼ା ୨୩ ଭାଗ ନରନାରୀ ଏହି ଗ୍ରନ୍ଥ ପ୍ରତି ନିଜର ଆସ୍ଥା ରଖିଛନ୍ତି । ଭାରତରେ ବିଭିନ୍ନ ପ୍ରାଦେଶିକ ଭାଷାରେ କୁରଆନର ଅନୁବାଦ ହୋଇ ସାରିଛି, ମାତ୍ର ଆମ ଓଡ଼ିଶାରେ ଏହାର ଉପଯୁକ୍ତ ଓଡ଼ିଆ ଅନୁବାଦର ଅଭାବ ଆଜି ମଧ୍ୟ ଅନୁଭୂତ ହୁଏ । ଏହି କାରଣରୁ ଅଧିକାଂଶ ଲୋକ ଏହାର ଶିକ୍ଷା ବିଷୟରେ ଅନ୍ଧକାରରେ ରହିଛନ୍ତି । କୁରଆନ ବିଷୟରେ ଅନେକ ମୁସଲିମ୍ ଅଜ୍ଞ ରହିଥିବା ବେଳେ ବହୁ ଅଣମୁସଲିମ ଭାଇଭଉଣୀଙ୍କ ମନରେ ଏହାର ଶିକ୍ଷାକୁ ନେଇ ବିଭିନ୍ନ ପ୍ରକାର ସନ୍ଦେହ ଘର କରି ରହିଛି । ତେଣୁ, ଏହି ପବିତ୍ର ଗ୍ରନ୍ଥର ଶିକ୍ଷା ସଂପର୍କରେ ପାଠକମାନଙ୍କୁ ଅବଗତ କରାଇବା ପାଇଁ ଏହାର କେତେକ ବାଣୀର ମୁଁ ଓଡ଼ିଆ ଅନୁବାଦ କରିଛି, ଯାହା ଗ୍ରନ୍ଥର ମୌଳିକ ଶିକ୍ଷା ସଂପର୍କରେ ପର୍ଯ୍ୟାପ୍ତ ଧାରଣା ଦେଇପାରିବ । ଯେଉଁମାନେ କୁରଆନ ଅଧ୍ୟୟନ କରିବାର ସୌଭାଗ୍ୟ ପାଇନାହାନ୍ତି, ସେମାନେ ଅନ୍ତତଃ ଏହାର ମୌଳିକ ଶିକ୍ଷାରୁ ବଂଚିତ ନ ରହନ୍ତୁ, ଏହାହିଁ ପ୍ରସ୍ତୁତ ଗ୍ରନ୍ଥଟିର ଉଦ୍ଦେଶ୍ୟ ।

ମଣିଷକୁ କାହିଁକି ସୃଷ୍ଟି କରାଯାଇଛି, ତା' ପ୍ରଭୁ କିଏ, ସେ କିପରି ପ୍ରସନ୍ନ ହୁଅନ୍ତି, ଈଶ୍ୱରଙ୍କ ପ୍ରତି ଏବଂ ପିତାମାତା, ପରିଜନ ଓ ସମାଜ ପ୍ରତି ମଣିଷର କର୍ତ୍ତବ୍ୟ କ'ଣ, ତା'ର ଆଚାର ଓ ବିଚାର କିପରି ହେବା ଉଚିତ, ଚିତ୍ତଶୁଦ୍ଧି କିପରି ହୁଏ, ପୁନର୍ଜୀବନ କାହିଁକି ଓ କିପରି ହେବ, କେଉଁ କର୍ମ ଦ୍ୱାରା ସ୍ୱର୍ଗଲାଭ ହେବ ଏବଂ କେଉଁ କର୍ମ ଦ୍ୱାରା ନର୍କବାସ ହେବ, ଏ ବିଷୟରେ କୁରଆନ ପରିଷ୍କାର ଭାବରେ ବର୍ଣ୍ଣନା କରିଛି । ଏହି ଗ୍ରନ୍ଥଟି ମନୁଷ୍ୟ ପାଇଁ ଏକ ଆଦର୍ଶ ଆଚରଣ ସଂହିତା ।

ଅନେକ ମୁସଲିମ୍ ଭାଇଭଉଣୀଙ୍କର କୁରଆନ ବିଷୟରେ ଜାଣିବାର ଭାରି ଆଗ୍ରହ ଥାଏ, ମାତ୍ର ସମୟ ଅଭାବରୁ ହେଉ ବା ବୁଝିବାରେ କିଛି ଅସୁବିଧା ହେଉଥିବା ଯୋଗୁଁ ହେଉ, ସେମାନେ ଏହାର ଅନୁବାଦ ପଢ଼ନ୍ତି ନାହିଁ, ଯାହାଫଳରେ ସେମାନେ ଏହି ପବିତ୍ର ଗ୍ରନ୍ଥର ଶିକ୍ଷା ବିଷୟରେ ଅନ୍ଧକାର ମଧ୍ୟରେ ରହି ଥାଆନ୍ତି । ଯେଉଁ ଗ୍ରନ୍ଥଟି ଧର୍ମର ମୂଳଗ୍ରନ୍ଥ, ଯାହାକୁ ପାଠ କରିବା ଦୈନିକ ପାଂଚଥର ନମାଜରେ ଅନିବାର୍ଯ୍ୟ କରାଯାଇଛି, ଯାହାକୁ ପଢ଼ିବା ବା ଶୁଣିବା ଏକ ମହାନ ପୁଣ୍ୟକର୍ମ ଏବଂ ଯେଉଁ ଗ୍ରନ୍ଥଟିକୁ ଚଉଦଶହ ବର୍ଷ ଧରି ଲକ୍ଷଲକ୍ଷ ଭକ୍ତ ସଂପୂର୍ଣ୍ଣ କଣ୍ଠସ୍ଥ କରି ଆସିଛନ୍ତି, ତାହା ଏକ ସାଧାରଣ ଗ୍ରନ୍ଥ ନୁହେଁ । ମହାମାନ୍ୟ ମୁହମ୍ମଦ କହିଛନ୍ତି, "ତୁମମାନଙ୍କ ମଧ୍ୟରେ ସର୍ବୋତ୍ତମ ବ୍ୟକ୍ତି ସେଇ, ଯିଏ କୁରଆନ ଶିକ୍ଷା କରେ ଏବଂ ଏହାର ଶିକ୍ଷା ଦିଏ" (ସହୀ ବୁଖାରୀ) । ତେଣୁ, ଏହି ପବିତ୍ର ଗ୍ରନ୍ଥଟିର ମହତ୍ତ୍ୱ ଆମେ ଉପଲବ୍ଧି କରିବା ଉଚିତ । ଅବଶ୍ୟ କୁରଆନର କେତେକ ବାଣୀର ଅର୍ଥ ବୁଝିବାପାଇଁ ଭାଷ୍ୟର ସହାୟତା ଦରକାର ହୁଏ, କିନ୍ତୁ ଏହାର ଆଚାର ଓ ବିଚାର ସମ୍ବନ୍ଧୀୟ ନୀତିବାଣୀଗୁଡ଼ିକୁ ବୁଝିବା ଆଦୌ କଷ୍ଟକର ନୁହେଁ । ଏଗୁଡ଼ିକ ସ୍ୱଷ୍ଟ ଭାବ ପ୍ରକାଶ କରନ୍ତି ଏବଂ ଏହି ବାଣୀଗୁଡ଼ିକ ହିଁ ଗ୍ରନ୍ଥର ଅସଲ ଶିକ୍ଷା ବୋଲି କୁରଆନ କହିଛି (କୁରଆନ ୩/୭) । ଗୁରୁତ୍ୱ ଦୃଷ୍ଟିରୁ ଏଗୁଡ଼ିକର

ବାରମ୍ବାର ପୁନରାବୃତ୍ତି ମଧ୍ୟ କରାଯାଇଛି । କୁରଆନର ଶିକ୍ଷାଗୁଡ଼ିକୁ ମନେରଖି ପାଳନ କରିବା ପ୍ରତ୍ୟେକ ଭକ୍ତର ପରମ କର୍ତ୍ତବ୍ୟ ବୋଲି କୁରଆନ କହିଛି । ଏହାଦ୍ୱାରା ତା' ଇହଲୋକ ଓ ପରଲୋକର ଜୀବନ ଅବଶ୍ୟ ସୁଖମୟ ହେବ ।

କୁରଆନ୍‌ର ଅବିକଳ ଅନୁବାଦ କୌଣସି ଭାଷାରେ ସମ୍ଭବ ନୁହେଁ । ମୁଁ କେବଳ ଏହାର ଭାବାନ୍ତର କରିବାର ପ୍ରୟାସ କରିଛି । ଏଥିପାଇଁ ମୁଁ ବିଶ୍ୱର ପ୍ରତିଷ୍ଠିତ ଅନୁବାଦକ ଓ ଭାଷ୍ୟକାର ମାନଙ୍କ ଭାଷ୍ୟର ସହାୟତା ନେଇଛି, ଯେଉଁମାନଙ୍କ ମଧ୍ୟରେ ସମ୍ମାନନୀୟ ଅବ୍ଦୁଲ୍ଲାହ ୟୁସୁଫ ଅଲି, ଏମ. ଏମ. ପିକଥଲ୍, ମୁହମ୍ମଦ ମହସିନ୍ ଖାନ୍ ଓ ତକୀ ଉଦ୍ଦିନ ହିଲାଲୀ, ସହୀ ଇଣ୍ଟରନାସନାଲ୍, ଜଷ୍ଟିସ୍ ମୁଫତି ମୁହମ୍ମଦ ତକୀ ଉସମାନୀ, ମୁଫତି ମୁହମ୍ମଦ ସଫି ଉସମାନୀ, ମୌଲାନା ଫତେହ ମୁହମ୍ମଦ ଜଲନ୍ଧରୀ, ମୌଲାନା ଅବ୍ଦୁଲ୍ ମାଜିଦ୍ ଦରିଆବାଦୀ, ଶେଖୁଲ୍ ହିନ୍ଦ୍ ମୌଲାନା ମେହମୁଦ ହସନ୍, ମୌଲାନା ମୁହମ୍ମଦ ଜୁନାଗଡ଼ି ଏବଂ ଇମାମ୍ ଇବନ-ଏ-କସିର୍ ଉଲ୍ଲେଖନୀୟ । ଏହି ମହତ କାର୍ଯ୍ୟରେ ଇସଲାମ ଶାସ୍ତ୍ରବିତ୍ ତଥା ମୋର ବନ୍ଧୁ ମୁଫ୍‌ତି ଅବ୍ଦୁର ରହମାନ ନଦଭି ଏବଂ ବନ୍ଧୁ ରଫି ଅହମଦ ଖାନ୍ ମୋତେ ବହୁତ ସାହାଯ୍ୟ କରିଛନ୍ତି । ସେମାନଙ୍କର ସହଯୋଗ ପାଇଁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ।

ଗ୍ରନ୍ଥ ଆରମ୍ଭରେ କୁର୍‌ଆନର ପରିଚୟ ଦେଇ ମୁଁ ଏହାର ମହାତ୍ମ୍ୟ, ଶିକ୍ଷା ଏବଂ ଅସାଧାରଣ ବୈଶିଷ୍ଟ୍ୟ ସଂପର୍କରେ କିଛି ଅଲୋଚନା କରିଛି, ଯାହା ପାଠକମାନଙ୍କ ପାଇଁ ଲାଭଦାୟକ ହେବ ବୋଲି ମୋର ବିଶ୍ୱାସ । ଗ୍ରନ୍ଥଟିରେ ଯଦି କୌଣସି ତ୍ରୁଟି ପାଠକଙ୍କ ଦୃଷ୍ଟିକୁ ଆସେ, ତେବେ ମୋତେ ସୂଚନା ଦେଲେ ପରବର୍ତ୍ତୀ ସଂସ୍କରଣରେ ଏହାର ସଂଶୋଧନ କରା ଯାଇପାରିବ । ଆଶା କରେ, ଏହି ଗ୍ରନ୍ଥଟି ଓଡ଼ିଆ ଭାଷାରେ କୁରଆନ୍‌ର ଅଭାବକୁ ଦୂର ନକରି ପାରିଲେ ମଧ୍ୟ, ଏହାର ଲକ୍ଷ୍ୟ ହାସଲ କରିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିପାରିବ । ଅଲ୍ଲାହଙ୍କ ନିକଟରେ ମୋର ପ୍ରାର୍ଥନା ଯେ ତାଙ୍କର ପବିତ୍ର ବାଣୀ ତାଙ୍କ ଭକ୍ତମାନଙ୍କ ଜୀବନକୁ ଆଲୋକମୟ କରୁ ଏବଂ ବିଶ୍ୱଶାନ୍ତି ଓ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା କ୍ଷେତ୍ରରେ ସହାୟକ ହେଉ ।

ପାଠକ ବନ୍ଧୁମାନଙ୍କୁ ମୋର ବିନୀତ ଅନୁରୋଧ ଯେ ଦୟାକରି ସେମାନେ ଏହି ଗ୍ରନ୍ଥଟିର ପବିତ୍ରତା ରକ୍ଷା କରିବେ ।

**କଟକ**
**ଇଦୁଲ୍ ଫିତର୍, ୨୬. ୬. ୨୦୧୭**

ଶକୀଲ ଅହମଦ
ଚେୟାରମ୍ୟାନ୍, ଇକ୍‌ରା ରିସର୍ଚ୍ଚ ଏକାଡେମୀ
ଫୋନ୍ - **9861269764**
**9437266208**

**ମୁଫତି ଅବ୍ଦୁର ରହମାନ୍ ନଦଓି**
**ଅଧକ୍ଷ, ମଦରସା ନୁରୁଲ୍ ଉଲୁମ୍, ନିମସାହି, କଟକ**
**ଅଧକ୍ଷ, ଜାମିଆ ଆଇଶା ଲିଲ୍ ବନାତ୍, ଦରଘା ବଜାର**
**ମହାସଚିବ, ମଜଲିସୁଲ ଉଲମା, ଓଡ଼ିଶା**
**ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ, ଇକରା ରିସର୍ଚ୍ଚ ଏକାଡେମୀ**

କୁରଆନ୍ ବିଶ୍ୱସ୍ରଷ୍ଟା ଅଲ୍ଲାହଙ୍କର ବାଣୀ । ସଭ୍ୟତାର ଆରମ୍ଭରୁ ସେ ମାନବସମାଜର ମାର୍ଗଦର୍ଶନ ପାଇଁ ବିଭିନ୍ନ ଭାଷାରେ ଅନେକ ଗ୍ରନ୍ଥ ପ୍ରକଟ କରିଛନ୍ତି । କୁରଆନ ସେହି ଦିବ୍ୟ ଧର୍ମଧାରାର ଅନ୍ତିମ ପ୍ରକାଶନ । ଏହି ପବିତ୍ର ଗ୍ରନ୍ଥଟି କେବଳ ମୁସଲମାନମାନଙ୍କର ଧର୍ମଗ୍ରନ୍ଥ ନୁହେଁ, ଏହା ସମଗ୍ର ମାନବଜାତିର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ଏହି ଗ୍ରନ୍ଥ ବିଷୟରେ ଅଜ୍ଞ ରହିଥିବା ଯୋଗୁଁ ସାଧାରଣ ଲୋକଙ୍କ ମନରେ ଇସଲାମ ସମ୍ପର୍କରେ ଅନେକ ଭୁଲ ଧାରଣା ଜମାଟ ବାନ୍ଧି ରହିଛି, ବିଶେଷ କରି ଜିହାଦ୍ ସଂପର୍କରେ । ଅଜ୍ଞାନତା ଯୋଗୁଁ ଜିହାଦ୍ ପରି ଏକ ପବିତ୍ର ଧର୍ମାଚାରକୁ ଆତଙ୍କବାଦ ସହିତ ଯୋଡ଼ା ଯାଉଛି । ଆତଙ୍କବାଦ ବା କୌଣସି ପ୍ରକାରର ଅନ୍ୟାୟ-ଅତ୍ୟାଚାରର ଇସଲାମରେ ଆଦୌ ସ୍ଥାନ ନାହିଁ । ଶକୀଲ ଭାଇଙ୍କୁ ମୁଁ ଧନ୍ୟବାଦ ଦେଉଛି ଯେ, ସେ ଏହି ଗ୍ରନ୍ଥରେ ଜିହାଦ୍ ବିଷୟରେ ସୁନ୍ଦର ଭାବରେ ତୁଳନାତ୍ମକ ଆଲୋଚନା କରିଛନ୍ତି, ଯାହା ପାଠକମାନଙ୍କ ମନରେ ଥିବା ସନ୍ଦେହ ଦୂର କରି ପାରିବ । ଗବେଷକ ଶକୀଲ ଅହମଦ ଓଡ଼ିଆ ଇସଲାମୀ ସାହିତ୍ୟ ଜଗତର ଜଣେ ସୁପରିଚିତ ଲେଖକ, ଯିଏ ଓଡ଼ିଆ ଭାଷାରେ ଇସଲାମର ଆଭିମୁଖ୍ୟକୁ ସ୍ପଷ୍ଟ କରିବା ପାଇଁ ଅନେକ ପୁସ୍ତକ ରଚନା କରିଛନ୍ତି । ତାଙ୍କ ପୁସ୍ତକଗୁଡ଼ିକ ଓଡ଼ିଆ ପାଠକ ମହଲରେ ବେଶ ଆଦୃତ ହୋଇଛି ।

କୁରଆନର ଶିକ୍ଷା ବିଷୟରେ ଓଡ଼ିଆଭାଷୀ ପାଠକବନ୍ଧୁମାନଙ୍କୁ ଅବଗତ କରାଇବା ପାଇଁ **'କୁରଆନ୍‌ର ହିତୋପଦେଶ'** ଏକ ଅଭିନବ ପ୍ରୟାସ । ଏହି ଗ୍ରନ୍ଥଟି ଉଭୟ ମୁସଲିମ୍ ଓ ଅଣମୁସଲିମ୍ ଭାଇଭଉଣୀଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ । ଅଣମୁସଲିମ୍ ଭାଇଭଉଣୀମାନେ କୁରଆନର ଶିକ୍ଷା କ'ଣ, ଏହା ଜାଣନ୍ତୁ ଏବଂ ମୁସଲିମ ଭାଇଭଉଣୀମାନେ ଏହାର ଉପଦେଶ ଅନୁଯାୟୀ ଜୀବନ ନିର୍ବାହ କରନ୍ତୁ, ଏହି ଉଦ୍ଦେଶ୍ୟରେ ଗ୍ରନ୍ଥଟିକୁ ଅକ୍ଳାନ୍ତ ପରିଶ୍ରମ କରି ପ୍ରସ୍ତୁତ କରାଯାଇଛି । ନିଜର ବିଭିନ୍ନ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ମୁଁ ଏହି ମହତ କାର୍ଯ୍ୟରେ ଯଥାସାଧ୍ୟ ସହଯୋଗ କରିଛି ଏବଂ ଅନୁବାଦର ସମୀକ୍ଷା ମଧ୍ୟ କରିଛି । ସରଳ ଓ ସୁନ୍ଦର ଓଡ଼ିଆ ଭାଷାରେ ଅନୁବାଦକଙ୍କର ଭାବାନ୍ତର ଶୈଳୀ ପ୍ରଶଂସନୀୟ । କୁରଆନର ପବିତ୍ର ବାଣୀ ଆମ ଆଚାର ଓ ବିଚାରକୁ ଶୃଂଖଳିତ କରୁ ଏବଂ ଆମ ଇହଲୋକ ଓ ପରଲୋକ ସଫଳ ହେଉ, ଏହାହିଁ ଅଲ୍ଲାହଙ୍କ ନିକଟରେ ମୋର ପ୍ରାର୍ଥନା ।

ମୁଫତି ଅବ୍ଦୁର ରହମାନ ନଦଓି
**ସି.ଇ.ଓ, ଇକ୍ରା ରିସର୍ଚ୍ଚ ଏକାଡେମୀ, କଟକ**
**ଫୋନ୍ - 9861390837**

# କୁରଆନ ପରିଚୟ

କୁରଆନ ଗ୍ରନ୍ଥଟି ମହାମାନ୍ୟ ମୁହମ୍ମଦଙ୍କ ପ୍ରତି ଖ୍ରୀ.ଅ. ୬୧୦ରୁ ଖ୍ରୀ.ଅ ୬୩୨ ମଧ୍ୟରେ ଦୀର୍ଘ ୨୩ ବର୍ଷର ଅବଧିରେ ଅଳ୍ପ ଅଳ୍ପ ହୋଇ ପ୍ରକଟ ହୋଇଥିବା ଦୈବବାଣୀର ସମାହାର । ମକ୍କାରେ ଥିବା 'ହିରା' ନାମକ ଏକ ପାହାଡ଼ ଗୁମ୍ଫାରେ ଧ୍ୟାନମଗ୍ନ ଥିବା ବେଳେ ତାଙ୍କ ପ୍ରତି ପ୍ରଥମ ଦୈବବାଣୀ ହେଲା । ଏହି ଦୈବବାଣୀ ଆରବୀ ଭାଷାରେ ହୋଇଥିଲା । ଏହି ଗ୍ରନ୍ଥଟିକୁ କୋଟି କୋଟି ମୁସଲମାନ ଭକ୍ତ ପ୍ରତିଦିନ ପାଠ କରନ୍ତି ଏବଂ ଦୈନିକ ପ୍ରାର୍ଥନାରେ ମଧ୍ୟ ଏହି ଗ୍ରନ୍ଥ ପାଠ କରାଯାଏ । କୁରଆନ ଅର୍ଥ 'ପାଠ୍ୟ' । ଏଥିରେ ୧୧୪ଟି ଅଧ୍ୟାୟ ଅଛି ଯାହା ୩୦ଟି ଭାଗରେ ବିଭକ୍ତ । କୁରଆନର ଅଧ୍ୟାୟକୁ 'ସୁରା' ଏବଂ ବିଭାଗକୁ 'ପାରା' କୁହାଯାଏ ।

## କୁରଆନର ମହାତ୍ମ୍ୟ

କୁରଆନ ଇସଲାମର ମୂଳଗ୍ରନ୍ଥ । ଏହା ସେହି ପବିତ୍ର ଗ୍ରନ୍ଥ, ଯାହାକୁ ଜଣେ ଭକ୍ତ ଅଶୁଦ୍ଧ ଅବସ୍ଥାରେ ଥିଲେ ସ୍ପର୍ଶ କରେ ନାହିଁ । ଗ୍ରନ୍ଥଟିର ମହାତ୍ମ୍ୟ ଏଥିରୁ ଅନୁମାନ କରାଯାଇପାରେ ଯେ, ଦୈନିକ ପାଂଚଥର ନମାଜରେ ଏହାର ପାଠ ପ୍ରତ୍ୟେକ ଭକ୍ତ ପାଇଁ ଅନିବାର୍ଯ୍ୟ କରାଯାଇଛି ଏବଂ ନିୟମିତ ଯଥାସମ୍ଭବ କୁରଆନପାଠ କରିବାର ଉପଦେଶ ଦିଆଯାଇଛି । ଉଦ୍ଦେଶ୍ୟ ହେଉଛି ଯେ ଭକ୍ତମାନେ ଏହି ଗ୍ରନ୍ଥର ଉପଦେଶ ମନେ ରଖି ପାଳନ କରନ୍ତୁ । ମହାମାନ୍ୟ ମୁହମ୍ମଦଙ୍କୁ ସଂପୂର୍ଣ୍ଣ କୁରଆନ କଣ୍ଠସ୍ଥ ଥିଲା । ସେ ଅନ୍ୟମାନଙ୍କୁ ଏହାର ଶିକ୍ଷା ଦେଉଥିଲେ ଏବଂ ନିଜେ ମଧ୍ୟ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତେଣୁ, ସେ କହିଛନ୍ତି "ତୁମମାନଙ୍କ ମଧ୍ୟରେ ସର୍ବୋତ୍ତମ ବ୍ୟକ୍ତି ସେଇ, ଯିଏ କୁରଆନ ଶିକ୍ଷା କରେ ଏବଂ ଏହାର ଶିକ୍ଷା ଦିଏ" (ସହୀ ବୁଖାରୀ ୬/୫୪୫) । କୁରଆନ ମହାମାନ୍ୟ ଈଶ୍ୱରଦୂତଙ୍କର ସର୍ବଶ୍ରେଷ୍ଠ ଶିକ୍ଷା । ଏହି ଗ୍ରନ୍ଥର ବ୍ୟାଖ୍ୟା, ପ୍ରଚାର ଓ ପ୍ରସାର ତାଙ୍କର ମୁଖ୍ୟ ଦାୟିତ୍ୱ ଥିଲା । ଏହି ଗ୍ରନ୍ଥଟି କୈଣସି ନିର୍ଦ୍ଦିଷ୍ଟ ସଂପ୍ରଦାୟର ଗ୍ରନ୍ଥ ନୁହେଁ, ବରଂ ଏହା ସମୁଦାୟ ମାନବଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ ବୋଲି କୁରଆନ କହିଛି –

> **(ହେ ମୁହମ୍ମଦ !) ଆମ୍ଭେ ତୁମ ପ୍ରତି ଏହି ଗ୍ରନ୍ଥଟିକୁ ମାନବଜାତିର ମଂଗଳ ପାଇଁ ଯଥାର୍ଥ ଉଦ୍ଦେଶ୍ୟରେ ପ୍ରକଟ କରିଛୁ । (କୁରଆନ ୩୯/୪୧)**

କୁରଆନ କହେ ଯେ ପ୍ରତ୍ୟେକ ମଣିଷ ଏହାର ଶିକ୍ଷା ବିଷୟରେ ଅବଗତ ହେବା ଉଚିତ–

> **ଏହି କୁରଆନ ଏକ ଉପଦେଶ - ଏକ ସ୍ପଷ୍ଟ ପଠନୀୟ ଗ୍ରନ୍ଥ । (ଏହାର) ଉଦ୍ଦେଶ୍ୟ ହେଉଛି ଯେ ଏହା (ଧରାପୃଷ୍ଠର) ପ୍ରତ୍ୟେକ ଜୀବିତ ବ୍ୟକ୍ତିକୁ ସାବଧାନ କରିଦେଉ ଏବଂ ସତ୍ୟକୁ ମାନୁ ନଥିବା ଲୋକମାନଙ୍କ ପାଇଁ ଶାସ୍ତିର ଯଥାର୍ଥତା ସିଦ୍ଧ ହୋଇଯାଉ । (କୁରଆନ ୩୬/୬୯-୭୦)**

## କୁରଆନର ସ୍ପଷ୍ଟ ବାଣୀଗୁଡ଼ିକ ହିଁ ମୂଳଗ୍ରନ୍ଥ

ଯେହେତୁ କୁରଆନ ତତ୍କାଳୀନ ସମାଜର ବିଭିନ୍ନ ପରିସ୍ଥିତିରେ ମାର୍ଗଦର୍ଶନ କରିଛି, ଏହାର କେତେକ ବାଣୀର ଅର୍ଥ ବୁଝିବା ପାଇଁ ସେଗୁଡ଼ିକର ପ୍ରସଂଗ ଓ ପୃଷ୍ଠଭୂମି ବିଷୟରେ ଜାଣିବା ଦରକାର, ଯେଉଁଥିପାଇଁ ଭାଷ୍ୟର ସହାୟତା ଆବଶ୍ୟକ ହୋଇଥାଏ; ମାତ୍ର ଆଚାର ଓ ବିଚାର ସଂବନ୍ଧୀୟ ନୀତି ଉପଦେଶଗୁଡ଼ିକୁ କୁରଆନ ଖୁବ୍ ପରିଷ୍କାର ଭାବରେ ବର୍ଣ୍ଣନା କରିଛି ଏବଂ ଏଗୁଡ଼ିକର ବାରମ୍ବାର ପୁନରାବୃତ୍ତି ମଧ୍ୟ ହୋଇଛି । ଏଗୁଡ଼ିକ କୌଣସି ବ୍ୟାଖ୍ୟା ଆବଶ୍ୟକ କରେ ନାହିଁ । ଏହି ନିତୀବାଣୀଗୁଡ଼ିକ ହିଁ ମୂଳଗ୍ରନ୍ଥ ବୋଲି କୁରଆନ କହିଛି –

**(ହେ ମୁହମ୍ମଦ!) ସେ ହିଁ ତୁମ ପ୍ରତି (କୁର୍‌ଆନ) ଗ୍ରନ୍ଥ ପ୍ରକଟ କଲେ ଯେଉଁଥିରେ ରହିଛି ସ୍ୱଷ୍ଟ ନିର୍ଣ୍ଣାୟକ ବାଣୀ ଏବଂ ଏହିଗୁଡ଼ିକ ହିଁ ମୂଳଗ୍ରନ୍ଥ । ଏହାର ଅନ୍ୟ କେତେକ ବାଣୀ ଅସ୍ୱଷ୍ଟ । ଯେଉଁମାନଙ୍କ ଅନ୍ତର କୁଟିଳତାପୂର୍ଣ୍ଣ, ସେମାନେ ସେହି ଅସ୍ୱଷ୍ଟ ବାଣୀଗୁଡ଼ିକ ପଛରେ ଲାଗି ଥାଆନ୍ତି, ସେଗୁଡ଼ିକ ମାଧ୍ୟମରେ ବିବାଦ ସୃଷ୍ଟି କରିବା ପାଇଁ ଆଉ ସେଗୁଡ଼ିକର ଅନ୍ତର୍ନିହିତ ଅର୍ଥ ଜାଣିବା ପାଇଁ । ଅଥଚ ସେଗୁଡ଼ିକର ସଠିକ ଅର୍ଥ ଅଲ୍ଲାହଙ୍କ ବ୍ୟତୀତ କେହି ଜାଣନ୍ତି ନାହିଁ । ଯେଉଁମାନଙ୍କର ଜ୍ଞାନ ଗଭୀର, ସେମାନେ କହନ୍ତି "ଆମେ ଏହାକୁ ବିଶ୍ୱାସ କରୁ । ସବୁତକ ଆମ ପରମେଶ୍ୱରଙ୍କ ପ୍ରଦତ୍ତ ବାଣୀ", କିନ୍ତୁ ଏକଥା କେବଳ ବୁଦ୍ଧିମାନ ଲୋକମାନେ ହିଁ ବୁଝି ପାରନ୍ତି । (କୁରଆନ ୩/୭) ।**

## କୁରଆନ ପ୍ରଥମ ଦିବ୍ୟଗ୍ରନ୍ଥ ନୁହେଁ

କୁରଆନ ସ୍ରଷ୍ଟାଙ୍କର ପ୍ରଥମ ଗ୍ରନ୍ଥ ନୁହେଁ । ତେଣୁ, ଏହାର କୌଣସି ନୀତି ମାନବଜଗତ ପାଇଁ ନୂଆ ନୁହେଁ । କୁରଆନ କୌଣସି ନୂଆ ଈଶ୍ୱରଙ୍କର ପରିଚୟ ଦେଇନାହିଁ କିମ୍ବା କୌଣସି ନୂଆ ଧର୍ମ ପ୍ରଚାର କରିନାହିଁ । ଏହା ସେହି ସନାତନ ଧର୍ମୀୟ ଶୃଂଖଳାର ପୁନଃସ୍ଥାପନା କରିଛି ଯାହାର ଶିକ୍ଷା ପୂର୍ବ ଗ୍ରନ୍ଥଗୁଡ଼ିକରେ ଦିଆ ଯାଇଥିଲା । ଏହି କାରଣରୁ ପ୍ରାଚୀନ ଗ୍ରନ୍ଥମାନଙ୍କ ସହିତ କୁରଆନର ବହୁ ସାମଂଜସ୍ୟ ଦେଖାଯାଏ । ତେଣୁ, ଯେଉଁମାନେ ଏହି ଗ୍ରନ୍ଥ ବିଷୟରେ ସନ୍ଦେହରେ ରହିଛନ୍ତି, କୁରଆନ ସେମାନଙ୍କୁ ପ୍ରଶ୍ନ କରିଛି -

**କ'ଣ ସେମାନେ ଏହି ଗ୍ରନ୍ଥ ପ୍ରତି ଧ୍ୟାନ ଦେଉ ନାହାନ୍ତି ? ଅଥବା କ'ଣ ସେମାନଙ୍କ ପାଖକୁ ଏଭଳି କିଛି (ନୂଆ ଜିନିଷ) ଆସି ଯାଇଛି ଯାହା ସେମାନଙ୍କ ପିତୃପିତାମହଙ୍କ ପାଖକୁ ଆସି ନଥିଲା ?**

**(କୁରଆନ ୨୩/୬୮)**

ଯେହେତୁ ଧର୍ମର ପୁନଃସ୍ଥାପନା କୁରଆନର ଉଦ୍ଦେଶ୍ୟ, ପୂର୍ବର ସବୁ ଦିବ୍ୟଗ୍ରନ୍ଥ ଏବଂ ସବୁ ଈଶ୍ୱରଦୂତଙ୍କ ପ୍ରତି ଆସ୍ଥା ନ ରଖିଲେ କୌଣସି ବ୍ୟକ୍ତି ଭକ୍ତ ହୋଇ ପାରିବନାହିଁ ବୋଲି କୁରଆନ ଘୋଷଣା କରିଛି -

**ହେ ବିଶ୍ୱାସକାରୀମାନେ ! ବିଶ୍ୱାସ ରଖ ଅଲ୍ଲାହଙ୍କ ପ୍ରତି, ତାଙ୍କ ଦୂତଙ୍କ ପ୍ରତି ଏବଂ ସେହି ଗ୍ରନ୍ଥ ପ୍ରତି ଯାହା ଈଶ୍ୱରଦୂତଙ୍କ ପ୍ରତି ପ୍ରକଟ ହେଲା ଏବଂ ସେହି ଗ୍ରନ୍ଥଗୁଡ଼ିକ ପ୍ରତି ଯାହା ତାଙ୍କ ପୂର୍ବରୁ ପ୍ରକଟ ହୋଇଥିଲା । ଯିଏ ଅଲ୍ଲାହଙ୍କୁ, ତାଙ୍କ ଦେବଗଣଙ୍କୁ, ତାଙ୍କ ଗ୍ରନ୍ଥସମୂହକୁ, ତାଙ୍କ ଦୂତମାନଙ୍କୁ ଏବଂ ପୁନର୍ଜୀବିତ ହେବା ଦିନକୁ ଅସ୍ୱୀକାର କଲା, ସେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଗଲା ।**

**(କୁରଆନ ୪/୧୩୬)**

## ଧର୍ମ ଏକ ଜୀବନଶୈଳୀ

ଧର୍ମ କେବଳ ଆସ୍ଥା ବା ପୂଜା-ଉପାସନାର ନାଁ ନୁହେଁ । ଏହା ଉପାସନା ଭିତ୍ତିକ ଏକ ଜୀବନଶୈଳୀ । ଏହା ମଣିଷର ଇହଲୋକ ଓ ପରଲୋକର କଲ୍ୟାଣ ପାଇଁ ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ ଏକ ଶୃଂଖଳା । ସଂସାରରେ ମଣିଷ କିପରି ଜୀବନ ନିର୍ବାହ କରିବ, ତା'ର ଆଚାର-ବିଚାର କିପରି ହେବ, ଈଶ୍ୱରଙ୍କ ପ୍ରତି, ପରିଜନଙ୍କ ପ୍ରତି ଏବଂ ସମାଜ ପ୍ରତି ତାର କର୍ତ୍ତବ୍ୟ କ'ଣ, ଏ ବିଷୟରେ ସ୍ରଷ୍ଟା ନୀତିନିୟମ ଦିଅନ୍ତି, ଯାହାକୁ ଧର୍ମ କୁହାଯାଏ । ଏହି ନୀତିନିୟମଗୁଡ଼ିକ ସେ ନିଜ ଗ୍ରନ୍ଥ ଓ ପ୍ରତିନିଧିଙ୍କ ମାଧ୍ୟମରେ ଦେଇଥାଆନ୍ତି । ଧର୍ମର ନୀତିଗୁଡ଼ିକ ଚିର ଶାଶ୍ୱତ ଏବଂ ସବୁ ଯୁଗରେ ସବୁ ମଣିଷଙ୍କ ପାଇଁ ସମାନ ଥାଏ । ଈଶ୍ୱରତତ୍ତ୍ୱ, ଚିତ୍ତଶୁଦ୍ଧି, ନ୍ୟାୟ ଓ ନୈତିକତାର ସିଦ୍ଧାନ୍ତ, ମାନବାଧିକାରର ନୀତିନିୟମ କିମ୍ବା ପୁନର୍ଜୀବନ ଓ କର୍ମଫଳର ସିଦ୍ଧାନ୍ତରେ କୌଣସି ଯୁଗରେ ପରିବର୍ତ୍ତନ ହୁଏନାହିଁ । କୁରଆନ କହିଛି -

**ତୁମେ ଅଲ୍ଲାହଙ୍କ ନୀତିରେ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବ ନାହିଁ । (କୁରଆନ ୩୩/୬୨)**

## ମାନବର ପ୍ରାକୃତିକ ସଭାବ ହିଁ ଧର୍ମର ଆଧାର

ଧର୍ମର ସିଦ୍ଧାନ୍ତଗୁଡ଼ିକ ମଣିଷର ସେହି ପ୍ରାକୃତିକ ସ୍ୱଭାବ ଉପରେ ଆଧାରିତ, ଯାହାକୁ ମଣିଷତ୍ୱ କୁହାଯାଏ । କୁରଆନ କହେ –

**ସୁତରାଂ, ଧର୍ମ ପ୍ରତି ସଂପୂର୍ଣ୍ଣ ଏକାଗ୍ର ରହି ଅଲ୍ଲାହଙ୍କର ସେହି ପ୍ରକୃତିର ଅନୁସରଣ କର, ଯେଉଁ ପ୍ରକୃତି ଅନୁସାରେ ସେ ମନୁଷ୍ୟମାନଙ୍କୁ ଗଢ଼ିଛନ୍ତି । ଅଲ୍ଲାହଙ୍କ ସଂରଚିତ ପ୍ରକୃତି ପରିବର୍ତ୍ତନଶୀଳ ନୁହେଁ । ଏହାହିଁ ସଠିକ୍ ଧର୍ମ, କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । (କୁରଆନ ୩୦/୩୦)**

ତେଣୁ, ସ୍ୱଭାବତଃ ପ୍ରତ୍ୟେକ ମଣିଷର ଅନ୍ତର, ସତ୍ୟ, ନ୍ୟାୟ, ଦୟା, କ୍ଷମା, ପ୍ରେମ, ପରୋପକାର ଆଦି ଧାର୍ମିକ ମୂଲ୍ୟବୋଧଗୁଡ଼ିକୁ ସଦାଚାର ବୋଲି ମାନିଥାଏ ଏବଂ ମିଥ୍ୟା, କପଟ, ଅନ୍ୟାୟ, ଅତ୍ୟାଚାର, ହତ୍ୟା, ଲୁଣ୍ଠନ, ଶୋଷଣ ଆଦି ଦୁଷ୍କର୍ମଗୁଡ଼ିକୁ ଦୁରାଚାର ମନେ କରିଥାଏ । ଏହି କାରଣରୁ କୁରଆନ କହେ -

**ସେ ମଣିଷର ଅନ୍ତରାତ୍ମାକୁ ଉଚିତ ଓ ଅନୁଚିତ କର୍ମ ସଂପର୍କରେ ସୂଚାଇ ଦେଇଛନ୍ତି ।**

**(କୁରଆନ ୯୧/୮-୧୦)**

ଯେଉଁମାନେ ଧର୍ମକୁ ଭଲରୂପେ ବୁଝି ନାହାନ୍ତି ସେମାନେ କେବଳ ପୂଜା-ଆରାଧନା ବା କିଛି କର୍ମକାଣ୍ଡକୁ ହିଁ ଧର୍ମ ମନେ କରିବାର ଭୁଲ କରନ୍ତି ।

## ଗୋଟିଏ ଜାତି ଗୋଟିଏ ଧର୍ମ

ଯେହେତୁ ମଣିଷ ଗୋଟିଏ ଜାତି ଏବଂ ସବୁ ମଣିଷଙ୍କର ପ୍ରାକୃତିକ ସ୍ୱଭାବ, ଇନ୍ଦ୍ରିୟଗୁଡ଼ିକର କାର୍ଯ୍ୟଧାରା, କାମନା-ବାସନା ଆଦି ମାନବୀୟ ଦୋଷଦୁର୍ବଳତା ସମାନ ଥାଏ, ସମସ୍ତଙ୍କ ପାଇଁ ସ୍ରଷ୍ଟା ଗୋଟିଏ ମୌଳିକ ଶୃଂଖଳା ଦେଇଛନ୍ତି ବୋଲି କୁରଆନ କହିଛି ।[୧] ସେହି ଗୋଟିଏ ଧର୍ମର ପ୍ରଚାର ପାଇଁ ବିଶ୍ୱର ବିଭିନ୍ନ ଭାଗରେ ଅନେକ ଦିବ୍ୟଗ୍ରନ୍ଥ ପ୍ରକଟ ହୋଇଛି ଏବଂ ଲକ୍ଷାଧିକ ଈଶ୍ୱରଦୂତଙ୍କର ଆବିର୍ଭାବ ଘଟିଛି । ସେମାନେ ନୂଆନୂଆ ଧର୍ମ ପ୍ରତିଷ୍ଠା କରି ନଥିଲେ ବରଂ ମୂଳଧର୍ମର ପୁନଃସ୍ଥାପନା କରିଥିଲେ । ମହାମାନ୍ୟ ମୁହମ୍ମଦ କୁହନ୍ତି ଯେ ଈଶ୍ୱରଦୂତମାନଙ୍କର ମାଆ ଭିନ୍ନ ଭିନ୍ନ, କିନ୍ତୁ ସେମାନଙ୍କର ଧର୍ମ ଗୋଟିଏ । [୨] କୁରଆନ କହେ ଯେ ମାନବସମାଜ ଗୋଟିଏ ଭ୍ରାତୃତ୍ୱ -

**ବାସ୍ତବରେ ତୁମମାନଙ୍କର ଏହି ମାନବସମାଜ ଗୋଟିଏ ଭ୍ରାତୃତ୍ୱ ଏବଂ ମୁଁ ତୁମମାନଙ୍କର ପ୍ରଭୁ । ତେଣୁ, ମୋତେ ହିଁ ଭୟ କର । ମାତ୍ର ଲୋକମାନେ ଧର୍ମକୁ ଖଣ୍ଡଖଣ୍ଡ କରି ପରସ୍ପର (ବିଭିନ୍ନ ସଂପ୍ରଦାୟରେ) ବିଭକ୍ତ ହୋଇଗଲେ । ଯେଉଁ ଗୋଷ୍ଠୀ ପାଖରେ ଯାହା ଅଛି, ସେ ସେଇଥିରେ ମଗ୍ନ ଅଛି । (କୁରଆନ ୨୩/୫୨-୫୩)**

ତେଣୁ, କୁରଆନ ଯେଉଁ ଧର୍ମର ପ୍ରଚାର କରିଛି, ତାହା ଏକ ଆଦିସ୍ରୋତ । ଆସନ୍ତୁ, ଏହାର କେତୋଟି ମୌଳିକ ନୀତି ଉପରେ ଆଲୋଚନା କରିବା ।

---

**(୧)** କୁରଆନ ୪୨/୧୩ **(୨)** ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ-୬୫୨

## ସମସ୍ତଙ୍କ ମାଲିକ ଜଣେ

ଧର୍ମର ପ୍ରଥମ ସିଦ୍ଧାନ୍ତ ହେଉଛି ଏକେଶ୍ୱରବାଦ । ସମସ୍ତଙ୍କର ମାଲିକ ଯେ ଜଣେ, ଏହା ଏକ ଚିରନ୍ତନ ସତ୍ୟ, ଯାହାର ପ୍ରଚାର ପ୍ରତ୍ୟେକ ଯୁଗରେ କରାଯାଇଛି । ମଣିଷ ବହୁଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇନାହିଁ ବା ଏକାଧିକ ଈଶ୍ୱରଙ୍କ କୃପାରୁ ବଂଚି ରହିନାହିଁ କିମ୍ବା ତା'ଭାଗ୍ୟଡୋର ଅନେକ ଈଶ୍ୱରଙ୍କ ହାତରେ ନାହିଁ । ଏହାଠାରୁ ବଳି ସତ୍ୟ ସଂସାରରେ ଆଉ କିଛି ନାହିଁ । ବେଦାନ୍ତର ବ୍ରହ୍ମସୂତ୍ର ସହସ୍ର ବର୍ଷ ପୂର୍ବରୁ ଏହା ଘୋଷଣା କରି କହିଛି - ଏକମ୍ ବ୍ରହ୍ମ ଦ୍ୱିତୀୟୋ ନାସ୍ତିଃ, ଅର୍ଥାତ୍, ଈଶ୍ୱର ଏକ ଏବଂ ଅଦ୍ୱିତୀୟ । ବେଦ କହନ୍ତି ଯେ ସବୁ ଦେବଗଣଙ୍କର ଦେବ ଜଣେ । [୩] ଉପନିଷଦରେ ଅନେକ ସ୍ଥାନରେ ଈଶ୍ୱରଙ୍କର ଏକତ୍ୱ ବିଷୟରେ ଘୋଷଣା କରାଯାଇଛି, "ଈଶତେ ଦେବ ଏକଃ"[୪] "ଏକୋହି ରୁଦ୍ରୋ ନ ଦ୍ୱିତୀୟାୟ ତସ୍ଥୁଃ"[୫], "ଏକୋ ବଶୀ ନିଷ୍କ୍ରିୟାଣାଂ ବହୂନାମ୍"[୬] "ଏକୋ ହଂସୋ ଭୁବନସ୍ୟାସ୍ୟ ମଧ୍ୟେ" ।[୭] ବାଇବଲରେ ମଧ୍ୟ ମହାମାନ୍ୟ ଯିଶୁ କହନ୍ତି "ଆମ ପ୍ରଭୁ, ଆମ ଈଶ୍ୱର ଏକ" [୮] । ବିଶ୍ୱର ପ୍ରାଚୀନ ଗ୍ରନ୍ଥ ଜେନ୍ଦାଭେସ୍ତା ମଧ୍ୟ ଏକେଶ୍ୱରବାଦର ଶିକ୍ଷା ଦେଇଛି । କୁରଆନ ସେହି ପ୍ରାଚୀନ ଶିକ୍ଷାକୁ ମନେ ପକାଇ ଦେଇ କହିଛି – ତୁମମାନଙ୍କର ଈଶ୍ୱର, ଜଣେ ଈଶ୍ୱର । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । (୨/୧୬୩)

## ଅଲ୍ଲାହ କିଏ ?

ଈଶ୍ୱରଙ୍କୁ ବିଭିନ୍ନ ଭାଷାରେ ବିଭିନ୍ନ ନାମରେ ଡକାଯାଏ, କାରଣ ଗୁଣ ଓ ସ୍ୱଭାବ ଅନୁଯାୟୀ ତାଙ୍କର ଅନେକ ନାଁ ଅଛି (କୁରଆନ ୧୭/୧୧୦) । ମୁସଲମାନମାନେ ମଧ୍ୟ ଅନେକ ନାମରେ ଈଶ୍ୱରଙ୍କୁ ଡାକି ଥାଆନ୍ତି । କୁରଆନରେ ନିରାକାର ବ୍ରହ୍ମଙ୍କୁ 'ଅଲ୍ଲାହ୍' କୁହାଯାଇଛି । ଈଶ୍ୱରଙ୍କ ପରିଚୟ ଦେଇ ବେଦାନ୍ତ କହେ ଯେ ସମସ୍ତ ପ୍ରାଣୀଙ୍କ ଜନ୍ମ ଯାହାଙ୍କଠାରୁ, ସବୁ ପ୍ରାଣୀ ଯାହାଙ୍କ ଦ୍ୱାରା ଜୀବନ-ଧାରଣ କରିଥାଆନ୍ତି ଏବଂ ଶେଷରେ ଯାହାଙ୍କଠାରେ ଲୀନ ହୁଅନ୍ତି, ତୁମେ ତାଙ୍କୁ ଭଲରୂପେ ଜାଣିବାକୁ ଇଚ୍ଛା କର, ସେଇ ହେଉଛନ୍ତି 'ବ୍ରହ୍ମ' [୯] । ବେଦ ମଧ୍ୟ କୁହନ୍ତି ଯେ ଈଶ୍ୱର ସେଇ, ଯିଏ ମୃତ୍ୟୁ ଦିଅନ୍ତି, ପ୍ରାଣସଂଚାର କରନ୍ତି ଏବଂ ଯାହାଙ୍କ କୃପାରୁ ସମସ୍ତ ଜୀବ ଜୀବିତ ରହନ୍ତି [୧୦] । କୁରଆନ ଅଲ୍ଲାହଙ୍କ ଅବିକଳ ସମାନ ପରିଚୟ ଦେଇଛି, ଯେ ଅଲ୍ଲାହ୍ ସେଇ, ଯିଏ ତୁମକୁ ସୃଷ୍ଟି କଲେ, ତୁମକୁ ଆହାର ଦେଲେ, ପୁଣି ସେ ତୁମକୁ ମୃତ୍ୟୁ ଦେବେ ଏବଂ ପୁଣି ପୁର୍ନଜୀବିତ କରିବେ ।" [୧୧] ଯିଏ ସୃଷ୍ଟି, ସ୍ଥିତି ଓ ବିଲୟର କାରଣ, ଉଭୟ ଗ୍ରନ୍ଥ ତାଙ୍କୁ ହିଁ ବ୍ରହ୍ମ ବା ଅଲ୍ଲାହ୍ କହିଛନ୍ତି । ବେଦରେ ଯାହାଙ୍କୁ "ବିଶ୍ୱସ୍ୟ ଭୁବନସ୍ୟ ରାଜାଃ" [୧୨] କୁହାଯାଇଛି, ତାଙ୍କୁ କୁରଆନ "ରବ୍-ବିଲ୍ ଆଲମୀନ"୍ ବା ସର୍ବଲୋକେଶ୍ୱର କହିଛି [୧୩] । କୁରଆନର ଅନେକ ସ୍ଥାନରେ ଅଲ୍ଲାହଙ୍କର ପରିଚୟ ଦିଆଯାଇଛି । ତେଣୁ, ଏହି ସତ୍ୟଟିକୁ ହୃଦୟଙ୍ଗମ କରିବା ପାଠକମାନଙ୍କ ପକ୍ଷରେ କଷ୍ଟକର ହେବନାହିଁ ।

---

**(୩)** ଯୋ ଦେବେସ୍ୱଧି ଦେବ ଏକ ଆସିତ୍ (ଋଗ- ୧୦.୧୨୧.୮)

**(୪)** ଶ୍ୱେତା ୧.୩ **(୫)** ଶ୍ୱେତା ୩.୧ **(୬)** ଶ୍ୱେତା ୬.୧୩ **(୭)** ଶ୍ୱେତା ୬.୧୫

**(୮)** ବାଇବଲ, ମାର୍କ, ୧୨/୨୯

**(୯)** ଯତୋ ବା ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି,ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ତଦ୍ ବିଜିଜ୍ଞାସସ୍ୱ ତଦ୍ ବ୍ରହ୍ମେତି (ତୈତ୍ତିରୀୟ ୩/୧)

**(୧୦)** ଯୋ ମାରୟତି ପ୍ରାଣୟତି ଯସ୍ମାତ୍ ପ୍ରାଣନ୍ତି ଭୁବନାନି ବିଶ୍ୱାଃ (ଅଥର୍ବ – ୧୩.୦୩.୦୩)

**(୧୧)** କୁରଆନ ୩୦/୪ **(୧୨)** ଋଗ ୬.୩୬.୪ **(୧୩)** କୁରଆନ ୧/୧

## ନିରାକାରତତ୍ତ୍ୱ

ପ୍ରାଚୀନ ଗ୍ରନ୍ଥଗୁଡ଼ିକ ଈଶ୍ୱରଙ୍କୁ ସର୍ବଜ୍ଞ, ସର୍ବଶକ୍ତିମାନ, ସର୍ବବ୍ୟାପୀ, ଅନ୍ତର୍ଯାମୀ, ଅବିନାଶୀ ଏବଂ ସ୍ୱୟମ୍ଭୁ ବୋଲି ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ ତାଙ୍କୁ ଅଜନ୍ମା, ଅରୂପ, ଅଚିନ୍ତ୍ୟ, ଅଦୃଶ୍ୟ ଏବଂ ଅନୁପମ ମଧ୍ୟ କୁହାଯାଇଛି । ବେଦାନ୍ତ ଈଶ୍ୱରଙ୍କୁ ଅଜନ୍ମା ଘୋଷଣା କରି କହିଛି ଯେ ବ୍ରହ୍ମଙ୍କୁ ଅଜନ୍ମା, ନିତ୍ୟ ଓ ପବିତ୍ର ଜାଣିଲେ ସକଳ ପାପରୁ ମୁକ୍ତି ମିଳେ [୧୪], ତାଙ୍କର କେହି ଜନ୍ମଦାତା ବା ପ୍ରଭୁ ନାହାନ୍ତି [୧୫] ଏବଂ ସେ ମରଣଶୀଳ ନୁହନ୍ତି ।[୧୬] ଉପନିଷଦ ଏହା ମଧ୍ୟ କହନ୍ତି ଯେ ସେ ଦୃଶ୍ୟମାନ ନୁହନ୍ତି [୧୭], ଯାହାକୁ ବାଇବଲ ମଧ୍ୟ ସମର୍ଥନ କରି କହିଛି ଯେ ଈଶ୍ୱରଙ୍କୁ କେହି କେବେ ଦେଖିନାହିଁ । [୧୮] ବେଦାନ୍ତରେ ପରମବ୍ରହ୍ମଙ୍କୁ ଶରୀରରହିତ [୧୯], ଆକାରରହିତ ଏବଂ ଦୁଃଖ-ଶୋକମୁକ୍ତ [୨୦] ବୋଲି ଘୋଷଣା କରାଯାଇଛି । ବେଦ ତାଙ୍କୁ ଅନୁପମ [୨୧] କହିଥିବା ବେଳେ ବେଦାନ୍ତ କହେ ଯେ ତାଙ୍କ ସମ ବା ତାଙ୍କଠାରୁ ଶ୍ରେଷ୍ଠ କେହି ନାହିଁ [୨୨] । ସେହି ପରମ ପବିତ୍ର ସତ୍ତାଙ୍କର ସ୍ୱରୂପର କଳ୍ପନା ସମ୍ଭବ ନୁହେଁ, କାରଣ ସେ ଅଚିନ୍ତ୍ୟ । [୨୩] ବେଦାନ୍ତର ଋଷି କହନ୍ତି ଯେ ଯାହାଙ୍କୁ ମନ ଦ୍ୱାରା ଚିନ୍ତା କରି ହୁଏ ନାହିଁ, ମାତ୍ର ଯାହାଙ୍କ ଦ୍ୱାରା ମନ ଚିନ୍ତା କରିବାକୁ ସମର୍ଥ, କେବଳ ତାଙ୍କୁହିଁ "ବ୍ରହ୍ମ" ବୋଲି ଜାଣ । [୨୪] କୁରଆନ ମଧ୍ୟ ଈଶ୍ୱରଙ୍କୁ ଅଜନ୍ମା, ଅବିନାଶୀ, ଅଦୃଶ୍ୟ ଓ ଅନୁପମ କହିଛି । ତେଣୁ, ନିରାକାରତତ୍ତ୍ୱ ଧର୍ମର ବହୁ ପ୍ରାଚୀନ ତତ୍ତ୍ୱ । କୁରଆନ ଏହାର ପୁନଃସ୍ଥାପନା କରିଛି ମାତ୍ର ।

## ଇସଲାମ ବା ଈଶ୍ୱରଶରଣ

ଈଶ୍ୱରଶରଣକୁ ଆରବୀ ଭାଷାରେ 'ଇସ୍‌ଲାମ' କୁହାଯାଏ । ଏହା ମଧ୍ୟ ଏକ ପ୍ରାଚୀନ ଧର୍ମତତ୍ତ୍ୱ । ଈଶ୍ୱର ସୃଷ୍ଟି କଲେ ସମସ୍ତେ ସୃଷ୍ଟି ହୁଅନ୍ତି, ସେ ଜୀବିତ ରଖିଲେ ବଞ୍ଚି ରହନ୍ତି ଏବଂ ବିନାଶ କଲେ ବିନାଶ ହୁଅନ୍ତି । ସେ ହିଁ ମଣିଷର ହର୍ତ୍ତା-କର୍ତ୍ତା - ଭାଗ୍ୟ-ବିଧାତା ଏବଂ ସେଇ ହିଁ ନଶ୍ୱରଜଗତର ଶରଣଯୋଗ୍ୟ । ତେଣୁ, ତାଙ୍କରିଠାରେ ମଣିଷ ନିଜକୁ ସମର୍ପଣ କରିବା ଉଚିତ । ଏହି ସତ୍ୟର ବାର୍ତ୍ତା ଦେଇ ଶ୍ରୀକୃଷ୍ଣ କହିଛନ୍ତି -

**ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ,**
**ତଦ୍‌ପ୍ରସାଦାତ୍‌-ପରାଂ ଶାନ୍ତିଂ, ସ୍ଥାନଂ ପ୍ରାପ୍ୟସି ଶାଶ୍ୱତମ୍** । [୨୫]

---

**(୧୪)** ଅଜଂ ଧ୍ରୁବଂ ସର୍ବତତ୍ତ୍ୱୈ ବିଶୁଦ୍ଧଂ, ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାପୈଃ (ଶ୍ୱେତା ୨/୧୫)
**(୧୫)** ନ ଚାସ୍ୟ କଶ୍ଚିଜ୍ଜନିତା ନ ଚାଧିପଃ (ଶ୍ୱେତା ୬/୯) **(୧୬)** କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ (ଶ୍ୱେତା ୧/୧୦)
**(୧୭)** ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ (ଶ୍ୱେତା/୪/୨୦)
**(୧୮)** ବାଇବଲ, ଜନ୍, ୧/୧୮ **(୧୯)** ଅଶରୀରଂ ଶରୀରେଷୁ (କଠ ୨/୨୨) ।
**(୨୦)** ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ (ମୁଣ୍ଡକ ୨/୧/୨), (ଶ୍ୱେତା ୩/୧୦)
**(୨୧)** ପତିର୍ବଭୂଥାସମୋ ଜନାନମେକୋ ବିଶ୍ୱସ୍ୟ ଭୁବନସ୍ୟ ରାଜା" (ଋଗ ୬/୩୬/୪)
**(୨୨)** ନ ତତ୍ ସମଶ୍ଚଭ୍ୟଧିକଶ୍ଚ ଦୃଶ୍ୟତେ (ଶ୍ୱେତା ୬/୮)
**(୨୩)** ଏଷ ଦେବୋ ବିଶ୍ୱକର୍ମା ମହାତ୍ମା, ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ (ଶ୍ୱେତା ୪/୧୭)
**(୨୪)** ଯନ୍ମନସା ନ ମନୁତେ, ଯେନାହୁର୍ମନୋ ମତମ. ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ (କେନ ୧/୫)
**(୨୫)** ଭଗବଦ୍ ଗୀତା ୧୮/୬୨

ଅର୍ଥାତ୍, ହେ ଅର୍ଜୁନ ! ତୁମେ ସର୍ବଭାବରେ ଈଶ୍ୱରଙ୍କ ଶରଣ ନିଅ । ତାଙ୍କରି କୃପାରୁ ତୁମେ ପରମ ଶାନ୍ତି ଏବଂ ଶାଶ୍ୱତ ସ୍ଥାନ ପ୍ରାପ୍ତ କରିବ । ପୁଣି ସର୍ବସମର୍ପଣ କ'ଣ, ଏହା ମଧ୍ୟ ଗୀତାରେ ସ୍ପଷ୍ଟ କରାଯାଇଛି -

**ବ୍ରହ୍ମଣ୍ୟାଧାୟ କର୍ମାଣି ସଂଗଂ ତ୍ୟକ୍ତ୍ୱା କରୋତି ଯ,**
**ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା ।** [୨୬]

ଅର୍ଥାତ୍ ଯିଏ ବିଷୟ ପ୍ରତି ଆସକ୍ତି ତ୍ୟାଗ କରି ନିଜର ସବୁ କର୍ମ ବ୍ରହ୍ମଙ୍କଠାରେ ଅର୍ପଣ କରେ, ପଦ୍ମପତ୍ରରେ ଜଳ ନ ଲାଗିଲା ପରି ତାକୁ ପାପ ସ୍ପର୍ଶ କରେ ନାହିଁ । ମଣିଷର ସମସ୍ତ ସତକର୍ମ, ଯଥା, ସେବା-ଉପାସନା, ଅର୍ଚ୍ଚନା-ବନ୍ଦନା,ଦାନ-ପୁଣ୍ୟ, ବ୍ରତ-ଉପବାସ ତଥା ଅନ୍ୟାନ୍ୟ ଧର୍ମକୃତ୍ୟ ଗୁଡ଼ିକ ବ୍ରହ୍ମଙ୍କୁ ସମର୍ପିତ ହେବା ଉଚିତ । ବାଇବଲ ମଧ୍ୟ ଏହି ତତ୍ତ୍ୱର ସମର୍ଥନ କରି କହିଛି ଯେ 'ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କର' [୨୭] । ମହାମାନ୍ୟ ମୁହମ୍ମଦ କହନ୍ତି ଯେ ନିଜକୁ ପ୍ରଭୁଙ୍କଠାରେ ସଂପୂର୍ଣ ରୂପେ ସମର୍ପଣ ନକଲେ କେହି ବୈକୁଣ୍ଠରେ ପ୍ରବେଶ କରିପାରିବ ନାହିଁ । [୨୮] ।

ମଣିଷର ଏହି ସମର୍ପଣ ଓ ଆନୁଗତ୍ୟକୁ ଆରବୀ ଭାଷାରେ 'ଇସ୍‌ଲାମ' କୁହାଯାଏ । ମହାମାନ୍ୟ ମୁହମ୍ମଦଙ୍କ ପୂର୍ବରୁ ମଧ୍ୟ ଏହାହିଁ ମଣିଷର ଧର୍ମ ଥିଲା ବୋଲି କୁରଆନ ସ୍ପଷ୍ଟ କହିଛି । (କୁରଆନ ୩/୧୯) ସୁତରାଂ, ଯିଏ ନିଜର ସ୍ରଷ୍ଟାଙ୍କୁ ହର୍ତ୍ତାକର୍ତ୍ତା ମାନି ତାଙ୍କଠାରେ ନିଜକୁ ସମର୍ପଣ କରେ ଏବଂ ତାଙ୍କ ଗ୍ରନ୍ଥ ଓ ପ୍ରତିନିଧିଙ୍କୁ ମାନି ତାଙ୍କର ସେବା-ଉପାସନା କରେ, କୁରଆନ ଅନୁସାରେ ସେ ଈଶ୍ୱରଙ୍କର ଆଜ୍ଞାଧୀନ ସେବକ, ଯାହାକୁ ଆରବୀ ଭାଷାରେ 'ମୁସଲିମ୍' କୁହାଯାଏ । କେବଳ ମହାମାନ୍ୟ ମୁହମ୍ମଦଙ୍କ ଅନୁଗାମୀ ହିଁ ନୁହନ୍ତି, ବରଂ ପୂର୍ବ ଯୁଗର ସେଇ ଭକ୍ତମାନେ ମଧ୍ୟ ମୁସଲିମ୍ ଥିଲେ, ଯେଉଁମାନେ ନିଜନିଜ ସମୟର ଈଶ୍ୱରଦୂତ ଓ ଈଶ୍ୱରୀୟ ଗ୍ରନ୍ଥର ଅନୁପାଳନ କରିଥିଲେ [୨୯] ।

## ଗୋଟିଏ ଧର୍ମରୁ ବହୁଧର୍ମର ସୃଷ୍ଟି

ବିଶ୍ୱରେ ବର୍ତ୍ତମାନ ପ୍ରଚଳିତ ଧର୍ମରୁ ଅନେକ ଧର୍ମ ସେହି ଗୋଟିଏ ମୂଳଧର୍ମରୁ ସୃଷ୍ଟି । ପ୍ରତ୍ୟେକ ଯୁଗରେ ଦିବ୍ୟଗ୍ରନ୍ଥଗୁଡ଼ିକରେ ସଂଶୋଧନ ଓ ପ୍ରକ୍ଷେପଣ ହୁଏ । କଳ୍ପିତ କାହାଣୀ ଓ କିମ୍ବଦନ୍ତୀ ଗଢ଼ାଯାଇ ସେଗୁଡ଼ିକୁ ଦିବ୍ୟଶିକ୍ଷା ବୋଲି ପ୍ରଚାର କରାଯାଏ । ବିଭିନ୍ନ ପ୍ରକାରର ବ୍ୟକ୍ତିବାଦ ଓ ଦର୍ଶନ ମଧ୍ୟ ଧର୍ମକୁ ଅନେକାଂଶରେ ପ୍ରଭାବିତ କରିଥାଏ । ଏହା ବ୍ୟତୀତ ଭାଷ୍ୟକାରମାନଙ୍କର ମତଭେଦ ମଧ୍ୟ ଅନେକ ପନ୍ଥା ଓ ମତବାଦକୁ ଜନ୍ମ ଦିଏ । ଏହିପରି ମାନବକୃତ ନୀତିନିୟମଗୁଡ଼ିକୁ ଧର୍ମର ମାନ୍ୟତା ମିଳିଯାଏ । ଦୈବବାଣୀରେ ପରିବର୍ତ୍ତନ କରୁଥିବା ଲୋକମାନେ ନର୍କଦଣ୍ଡ ଭୋଗିବେ ବୋଲି କୁରଆନ କହିଛି -

**ସର୍ବନାଶ ହେବ ସେମାନଙ୍କର, ଯେଉଁମାନେ ସାମାନ୍ୟ ଫାଇଦା ପାଇଁ ନିଜ ହାତରେ ଗ୍ରନ୍ଥ ଲେଖନ୍ତି ଆଉ କୁହନ୍ତି ଯେ ଏହା ଅଲ୍ଲାହଙ୍କ ଠାରୁ ଆସିଛି । ଯେଉଁ ହାତ ଦ୍ୱାରା ସେମାନେ ଲେଖିଛନ୍ତି ଏବଂ ଯାହା ସେଥିରୁ ଅର୍ଜନ କରିଛନ୍ତି, ତାହା ସେମାନଙ୍କ ସର୍ବନାଶର କାରଣ ହେବ । (୨/୭୯)**

---

**(୨୬)** ଭଗବଦ୍ ଗୀତା ୫/୧୦

**(୨୭)** ବାଇବଲ, ଜେମସ୍ ୪/୪୭

**(୨୮)** ତିରମିଜୀ, ୨/୫୪୭

**(୨୯)** କୁରଆନ ୨୨/୭୮

ଉପରୋକ୍ତ କାରଣ ଯୋଗୁଁ ସମାଜରେ ଧର୍ମ ନାଁରେ ନୂଆ ନୂଆ ଆଚାର ଓ କୁସଂସ୍କାର ପ୍ରବେଶ କରିଥାଏ । ତେଣୁ, ଧର୍ମସଂସ୍କାର ପାଇଁ ଯୁଗେଯୁଗେ ଈଶ୍ୱରଦୂତମାନଙ୍କର ଆବିର୍ଭାବ ଘଟିଛି । କୁରଆନ ଅନୁସାରେ ପ୍ରତ୍ୟେକ ସଂପ୍ରଦାୟ ପାଇଁ ଈଶ୍ୱରଦୂତ ଆସିଛନ୍ତି (୩୦) ଏବଂ ପ୍ରତ୍ୟେକ ଯୁଗ ପାଇଁ ଗ୍ରନ୍ଥ ଦିଆଯାଇଛି । (୩୧) ସପ୍ତମ ଶତାବ୍ଦୀରେ ଦିବ୍ୟଧର୍ମର ପୁନଃସ୍ଥାପନା ପାଇଁ ମହାମାନ୍ୟ ମୁହମ୍ମଦଙ୍କର ଆବିର୍ଭାବ ଘଟିଲା ଏବଂ ତାଙ୍କ ପ୍ରତି କୁରଆନ ପ୍ରକଟ ହେଲା । କୁରଆନ ସନାତନ ଧର୍ମଧାରାର ଅନ୍ତିମ ଗ୍ରନ୍ଥ ଏବଂ ସମୁଦାୟ ମାନବଜଗତର ମାର୍ଗଦର୍ଶନ ପାଇଁ ଉଦ୍ଦିଷ୍ଟ । ତେଣୁ, ଏଥିରେ ପୂର୍ବ ଗ୍ରନ୍ଥଗୁଡ଼ିକର ସବୁ ନୀତିଶିକ୍ଷା ସଂରକ୍ଷିତ ରହିଛି ।(୩୨) ଯେହେତୁ ଭବିଷ୍ୟତରେ କୌଣସି ଈଶ୍ୱରଦୂତ ଆସିବେ ନାହିଁ, ଏହି ଗ୍ରନ୍ଥକୁ ପରିବର୍ତ୍ତନ ଓ ପ୍ରକ୍ଷେପଣରୁ ମୁକ୍ତ ରଖିବାର ଦାୟିତ୍ୱ ଈଶ୍ୱର ସ୍ୱୟଂ ବହନ କରିଛନ୍ତି ବୋଲି କୁରଆନ ଘୋଷଣା କଲା –

**ଏହି କୁରଆନକୁ ଆମ୍ଭେ ହିଁ ଅବତୀର୍ଣ୍ଣ କରିଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ । (୧୫/୯)**

ତେଣୁ, କୁରଆନରେ କୌଣସି ପ୍ରକାର ପରିବର୍ତ୍ତନ ସମ୍ଭବ ନୁହେଁ । ଏହା ସପ୍ତମ ଶତାବ୍ଦୀଠାରୁ ଆଜି ପର୍ଯ୍ୟନ୍ତ କେବଳ ଲିଖିତ ରୂପରେ ନୁହେଁ, ବରଂ ଲକ୍ଷଲକ୍ଷ ଭକ୍ତଙ୍କ ହୃଦୟରେ ସଂପୂର୍ଣ୍ଣ କଣ୍ଠସ୍ଥ ହୋଇ ରହି ଆସିଛି । ଏହା ବ୍ୟତୀତ, ଗୋଟିଏ ମହତ୍ୱପୂର୍ଣ୍ଣ କଥା ହେଉଛି ଯେ ଈଶ୍ୱରଦୂତ ହିଁ ଈଶ୍ୱରଙ୍କ ଗ୍ରନ୍ଥର ବ୍ୟାଖ୍ୟା କରନ୍ତି ଏବଂ ସେବା-ଉପାସନା ଆଦି ଅନେକ ଧର୍ମକୃତ୍ୟର ନିତୀନିୟମ ଶିଖାଇ ଥାଆନ୍ତି, ଯାହା ଗ୍ରନ୍ଥରେ ନଥାଏ । ତେଣୁ, ଈଶ୍ୱରଦୂତଙ୍କ ଶିକ୍ଷା ବିନା ଗ୍ରନ୍ଥର ସଠିକ୍ ଅନୁପାଳନ ମଧ ସମ୍ଭବ ନୁହେଁ । କୁରଆନ ଯେଉଁ ଈଶ୍ୱରଦୂତଙ୍କ ପ୍ରତି ପ୍ରକଟ ହେଲା, ତାଙ୍କର ଦୈନନ୍ଦିନ କର୍ମମୟ ଜୀବନର ସଂପୂର୍ଣ୍ଣ ବିବରଣୀ ଇତିହାସ ପୃଷ୍ଠାରେ ସୁରକ୍ଷିତ ରହିଛି । କେବଳ ମହାମାନ୍ୟ ମୁହମ୍ମଦ ହିଁ ବିଶ୍ୱର ଏକମାତ୍ର ଈଶ୍ୱରଦୂତ, ଯାହାଙ୍କ ଜୀବନର ଟିକିନିଖି ବିବରଣ ଇତିହାସରେ ରହିଛି । ସୁତରାଂ, କୁରଆନର ଅନୁପାଳନ କରୁଥିବା ଭକ୍ତ ପଥଭ୍ରଷ୍ଟ ହେବନାହିଁ ।

## କୁରଆନର ମାନବିକ ମୂଲ୍ୟବୋଧ

ସ୍ରଷ୍ଟା ମଣିଷକୁ ମଣିଷତ୍ୱର ଶିକ୍ଷା ଦିଅନ୍ତି । ସୁତରାଂ, ସବୁ ଦିବ୍ୟଗ୍ରନ୍ଥ ପରି ମଣିଷକୁ ଏକ ସତ୍ୟନିଷ୍ଠ ଓ ସଦାଚାରୀ ବ୍ୟକ୍ତି ରୂପେ ଗଢ଼ିବା କୁରଆନର ଲକ୍ଷ୍ୟ । ତେଣୁ, କୁରଆନ ବାରମ୍ବାର ସତ୍ୟ, ନ୍ୟାୟ, ଦୟା, କ୍ଷମା, ପ୍ରେମ ଓ ପରୋପକାର ଉପରେ ଗୁରୁତ୍ୱ ଆରୋପ କରିଛି । ସମସ୍ତଙ୍କ ସହିତ ଉଚିତ ବ୍ୟବହାର କରିବାର ଆଦେଶ ଦେଇ କୁରଆନ କହିଛି -

**ଅଲ୍ଲାହଙ୍କର ସେବା ଉପାସନା କର ଏବଂ ଏଥିରେ କାହାରିକୁ ତାଙ୍କର ସହଭାଗୀ କର ନାହିଁ ଏବଂ ପିତାମାତା, ନିକଟ ସଂପର୍କୀୟ, ଅନାଥ, ଦରିଦ୍ର, ସଂପର୍କୀୟ ପଡ଼ୋଶୀ ତଥା ଅପରିଚିତ ପଡ଼ୋଶୀ, ତୁମ ସହିତ ବସାଉଠା କରୁଥିବା ବ୍ୟକ୍ତି, ପଥଚାରୀ ତଥା ଦାସଦାସୀ ମାନଙ୍କ ପ୍ରତି ଖୁବ୍ ଭଲ ବ୍ୟବହାର କର ଏବଂ (ଜାଣି ରଖ) ଅଲ୍ଲାହ୍ କୌଣସି ଆତ୍ମାଭିମାନୀ ଓ ଅହଂକାରୀକୁ ଆଦୌ ପସନ୍ଦ କରନ୍ତି ନାହିଁ । (କୁରଆନ ୪/୩୬)**

---

**(୩୦)** କୁରଆନ ୧୦/୪୭

**(୩୧)** କୁରଆନ ୧୩/୩୮

(୩୨) କୁରଆନ ୫/୪୮

ଦୁର୍ବ୍ୟବହାରର ଉତ୍ତର ସଦ୍‌ବ୍ୟବହାର ଦ୍ୱାରା ଦେବାର ଉପଦେଶ ଦେଇ କୁରଆନ କହେ –

**ଭଲ କର୍ମ ଓ ମନ୍ଦ କର୍ମ ସମାନ ନୁହେଁ । ତୁମେ ଦୁର୍ବ୍ୟବହାରର ଉତ୍ତର ସଦବ୍ୟବହାର ଦ୍ୱାରା ଦିଅ । ପୁଣି ଦେଖିବ ଯେ ଯେଉଁ ବ୍ୟକ୍ତି ସହିତ ତୁମର ଶତ୍ରୁତା ଥିଲା, ସେ ତୁମର ଅନ୍ତରଂଗ ବନ୍ଧୁ ପାଲଟିଯିବ । (କୁରଆନ ୪୧/୩୪)**

ଅନ୍ୟର ଅନୁଚିତ ବ୍ୟବହାର ପ୍ରତି ସହିଷ୍ଣୁ ହେବା ଏବଂ ଅନ୍ୟର ଦୋଷ କ୍ଷମା କରିଦେବା ମହାନ ପୁଣ୍ୟ କାର୍ଯ୍ୟ । କୁରଆନ ଏହାକୁ ଏକ ସାହସିକ କାର୍ଯ୍ୟ ବୋଲି ବର୍ଣ୍ଣନା କରି କହିଛି–

**ଅବଶ୍ୟ ଯିଏ ସହିଯାଏ ଏବଂ ଅନ୍ୟକୁ କ୍ଷମା କରିଦିଏ, ତେବେ ନିଶ୍ଚିତ ରୂପେ ଏହା ଏକ ସାହସିକ କାର୍ଯ୍ୟ । (କୁରଆନ ୪୨/୪୩)**

ପିତାମାତଙ୍କର ସେବାଯତ୍ନ କରିବା, ଆତ୍ମୀୟ-ସ୍ୱଜନଙ୍କ ସହ ଭଲରୂପେ ନିର୍ବାହ କରିବା ଏବଂ ଦୁର୍ବଳମାନଙ୍କୁ ସାହାଯ୍ୟ କରିବା, ଭୋକିଲାକୁ ଭୋଜନ ଦେବା ଏବଂ ଦୀନଦୁଃଖୀଙ୍କ ଦୁଃଖ ଲାଘବ କରିବା ମହାତ୍ମାମାନଙ୍କର ସ୍ୱଭାବ । କୁରଆନ କହେ ଯେ ଈଶ୍ୱର ଯାହାକିଛି ଧନ ମଣିଷକୁ ଦେଇଛନ୍ତି, ସେଥିରୁ ସେ ଅଭାବୀ ଆତ୍ମୀୟ ତଥା ସାହିବସ୍ତିର ଦୁର୍ବଳ ଲୋକମାନଙ୍କର ସାଧମତେ ସହାୟତା କରୁ -

**ଲୋକେ ତୁମକୁ ପଚାରୁଛନ୍ତି ଯେ ସେମାନେ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) କ'ଣ ଖର୍ଚ୍ଚ କରିବେ । ସେମାନଙ୍କୁ କୁହ "ଯାହା (ଧନ) ତୁମେମାନେ ଖର୍ଚ୍ଚ କରିବ, ତାହା ତୁମ ପିତାମାତାଙ୍କ ପାଇଁ, ଆତ୍ମୀୟମାନଙ୍କ ପାଇଁ ତଥା ଅନାଥ, ଦରିଦ୍ର ଓ (ଅସହାୟ) ପଥଚାରୀ ମାନଙ୍କ ପାଇଁ (ଖର୍ଚ୍ଚ) ହେବା ଉଚିତ । ଯାହା ପୁଣ୍ୟକର୍ମ ତୁମେମାନେ କର, ତାହା ଅଲ୍ଲାହ୍ ଅବଶ୍ୟ ଜାଣନ୍ତି ।"**

**(କୁରଆନ ୨/୨୧୫)**

ଜଣେ ବ୍ୟକ୍ତି କେତେ ଦାନ କରିବ, ଏହାର ଉତ୍ତରରେ କୁରଆନ କହେ -

**ସେମାନେ ତୁମକୁ ପଚାରୁଛନ୍ତି ଯେ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) କେତେ ଧନ ଖର୍ଚ୍ଚ କରିବେ ? କହିଦିଅ, "ଯାହାକିଛି (ତୁମ ଆବଶ୍ୟକତା ପୂରଣ ହେଲା ପରେ) ବଳକା ରହେ ।"**

**(କୁରଆନ ୨/୨୧୯)**

ଧନ ସଂଚୟ କରି ରଖିବାକୁ କୁରଆନ ପସନ୍ଦ କରିନାହିଁ, ବରଂ ଅନ୍ୟର ଉପକାର ପାଇଁ ତାହା ଖର୍ଚ୍ଚ କରିବାକୁ ଉତ୍ସାହିତ କରିଛି । ପରୋପକାରୀ ବ୍ୟକ୍ତିମାନେ ଈଶ୍ୱରଙ୍କର ଅତି ପ୍ରିୟ ଭକ୍ତ ବୋଲି କୁରଆନ କହିଛି -

**ପରୋପକାର କର । ବାସ୍ତବରେ ଅଲ୍ଲାହ୍ ପରୋପକାରୀମାନଙ୍କୁ ପ୍ରେମ କରନ୍ତି ।**

**(କୁରଆନ ୨/୧୯୫)**

ଏହି ପବିତ୍ର ଗ୍ରନ୍ଥରେ ଏଭଳି ଗୋଟିଏ ହେଲେ ଶିକ୍ଷା ନାହିଁ ଯାହା ସମାଜ ପାଇଁ ହାନୀକାରକ ହୋଇପାରେ । ମାନବାଧିକାର ସୁରକ୍ଷା ପାଇଁ ଅନ୍ୟର ଧନ-ଜୀବନ, ମାନ-ସମ୍ମାନ ବା ଚରିତ୍ରର ହାନୀ କରୁଥିବା ପ୍ରତ୍ୟେକ ଆଚରଣକୁ କୁରଆନ ନିଷିଦ୍ଧ କରିଛି । ଧର୍ତ୍ତବ୍ୟ ଅପରାଧ ପାଇଁ ଧର୍ମବିଧିରେ କଠୋର ଦଣ୍ଡର ବ୍ୟବସ୍ଥା ମଧ୍ୟ କରାଯାଇଛି । ସବୁ ପ୍ରକାରର ଅନ୍ୟାୟ ଓ ଅତ୍ୟାଚାରକୁ ନିଷିଦ୍ଧ ଘୋଷଣା କରି କୁରଆନ କହିଛି -

**ଅଲ୍ଲାହ୍ ତୁମମାନଙ୍କୁ ନ୍ୟାୟ ବିଚାର କରିବା, (ଅନ୍ୟର) ଉପକାର କରିବା ଏବଂ ନିକଟ ସଂପର୍କୀୟମାନଙ୍କୁ (ସେମାନଙ୍କର ପ୍ରାପ୍ୟ) ଦେବାର ଆଜ୍ଞା ଦେଉଛନ୍ତି ଏବଂ ଅଶ୍ଳୀଳତା, ଅପକର୍ମ ତଥା ଅନ୍ୟାୟ-ଅତ୍ୟାଚାରରୁ ବିରତ ରହିବାର ମଧ୍ୟ ଆଜ୍ଞା ଦେଉଛନ୍ତି । ସେ ତୁମମାନଙ୍କୁ ଏହି ଉପଦେଶ ଦେଉଛନ୍ତି, ଯେପରିକି ତୁମେମାନେ ମନେରଖିବ । (କୁରଆନ ୧୬/୯୦)**

ନିଜ ଶତ୍ରୁ ପ୍ରତି ମଧ୍ୟ ଅନ୍ୟାୟ କର ନାହିଁ ବୋଲି ଏହି ପବିତ୍ର ଗ୍ରନ୍ଥ ଉପଦେଶ ଦେଇଛି –

**କୌଣସି ଗୋଷ୍ଠୀର ଶତ୍ରୁତା ତୁମମାନଙ୍କୁ ନ୍ୟାୟରୁ ବିଚ୍ୟୁତ ହେବାପାଇଁ ପ୍ରରୋଚିତ ନ କରୁ । (ସର୍ବଦା) ନ୍ୟାୟ କର । ଏହା ହେଉଛି ଧର୍ମପରାୟଣତା । (କୁରଆନ ୫/୮)**

ଏକ ଆଦର୍ଶ ସମାଜ ଗଢ଼ିବା ଯେ ଏହି ପବିତ୍ରବାଣୀ ଗୁଡ଼ିକର ଲକ୍ଷ୍ୟ, ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ ।

## ଚିତ୍ତଶୁଦ୍ଧି

ଜଣେ ବ୍ୟକ୍ତି ନିଜେ ଭଲ ହେଲେ ହିଁ ସମାଜର କିଛି ମଂଗଳ କରିପାରେ । ତେଣୁ, ତା'ର ଚରିତ୍ରନିର୍ମାଣ ହେବା ନିହାତି ଆବଶ୍ୟକ । ଜଣେ ମିଛୁଆ, ଭଣ୍ଡ, ଲମ୍ପଟ, ଲୋଭୀ, ଅହଂକାରୀ ବା କୃପଣ ବ୍ୟକ୍ତି ସମାଜର କି ଉପକାର କରିବ ? ଚରିତ୍ରହୀନ ବ୍ୟକ୍ତି କେବଳ ଅନ୍ୟର ଦୁଃଖର କାରଣ ହୁଏ । ତେଣୁ, କୁରଆନ ଶିକ୍ଷା ଦେଇଛି ଯେ ମିଥ୍ୟା, କପଟ, ଈର୍ଷା, ଦ୍ୱେଷ, କାମ, କ୍ରୋଧ, ଲୋଭ, ମୋହ, ଗର୍ବ, ଅହଂକାର, ଅଶ୍ଳୀଳତା, ଅନୈତିକତା ଆଦି ସବୁ ଦୁର୍ଗୁଣଗୁଡ଼ିକୁ ଭକ୍ତ ତ୍ୟାଗ କରିବା ଉଚିତ । ଇନ୍ଦ୍ରିୟ ଦମନ କଲେ ହିଁ ମଣିଷର ଚିତ୍ତଶୁଦ୍ଧି ହୁଏ । କୁରଆନ କହେ -

**ଯିଏ ନିଜ ପରମେଶ୍ୱରଙ୍କ ସମ୍ମୁଖରେ ଉପସ୍ଥିତ ହେବ ବୋଲି ଭୟ କରିଥିବ ତଥା ଇନ୍ଦ୍ରିୟନିରୋଧ କରିଥିବ, ବୈକୁଣ୍ଠ ଅବଶ୍ୟ ତା'ର ନିବାସ ହେବ । (କୁରଆନ ୭୯/୪୦-୪୧)**

ମାତ୍ର ଶକ୍ତିଶାଳୀ ଇନ୍ଦ୍ରିୟଗୁଡ଼ିକୁ ଦମନ କରିବା ସହଜ କାମ ନୁହେଁ । ଅସତ୍ କାମନାର ବିରୋଧ କରି ଦୁଷ୍କର୍ମରୁ ବିରତ ରହିବା ମଣିଷ ପକ୍ଷରେ ବହୁତ କଷ୍ଟକର କାର୍ଯ୍ୟ । ଦୃଢ଼ ଭଗବତବିଶ୍ୱାସ ଓ ନିରନ୍ତର ସାଧନା ବିନା ଏହା ସଂଭବ ନୁହେଁ । ତେଣୁ, ପ୍ରଭୁଙ୍କ ସହ ଭକ୍ତର ସଂପର୍କକୁ ସୁଦୃଢ଼ କରିବା ଏବଂ ତାକୁ ଧର୍ମନିଷ୍ଠ କରିବା ପାଇଁ ପ୍ରାଚୀନ ଧର୍ମୀୟ ପରମ୍ପରା ଅନୁଯାୟୀ କୁରଆନ ଜପ, ଧ୍ୟାନ, ପ୍ରାର୍ଥନା, ଉପବାସ, ଗ୍ରନ୍ଥପାଠ ଆଦି କେତେକ ନିୟମିତ ଉପାସନାର ଆଦେଶ ଦେଇଛି । ଏହି ଉପାସନା ମଣିଷକୁ ସଦାଚାରୀ କରିଥାଏ । କୁରଆନ କହେ –

**ହେ ମନୁଷ୍ୟଗଣ! ନିଜ ପ୍ରଭୁଙ୍କର ଉପାସନା କର ଯିଏ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ, ତା'ହେଲେ ତୁମେମାନେ ସଦାଚାରୀ ହେବ । (କୁରଆନ ୨/୨୧)**

ଈଶ୍ୱରଙ୍କ ଉପଦେଶ ଅନୁଯାୟୀ ସେବା-ଉପାସନା କଲେ ଧିରେଧିରେ ପଶୁତ୍ୱର ବିନାଶ ହୋଇ ମଣିଷ ମଧ୍ୟରେ ଦେବତ୍ୱର ବିକାଶ ହୋଇଥାଏ ଏବଂ ସେ ଜଣେ ଆଦର୍ଶ ମାନବରେ ପରିଣତ ହୋଇଯାଏ । ଯେଉଁମାନେ କହନ୍ତି ଯେ ଭଲ ମଣିଷ ହେବାକୁ ହେଲେ ଈଶ୍ୱର ବା ତାଙ୍କ ସେବା-ଉପାସନାର କୌଣସି ଆବଶ୍ୟକତା ନାହିଁ, ଏହା ସେମାନଙ୍କର ଅନୁମାନ ମାତ୍ର । ପ୍ରକୃତ ସତ୍ୟ ହେଉଛି ଯେ ଉପାସନା ହିଁ ଭକ୍ତକୁ ଧର୍ମନିଷ୍ଠ କରିଥାଏ ଏବଂ ତା' ମନରେ ଈଶ୍ୱରଙ୍କ ପ୍ରତି ଭକ୍ତି ଓ ଭୟ ସୃଷ୍ଟି କରିଥାଏ । ଈଶ୍ୱରଙ୍କ ପ୍ରତି ଭୟ ଥିଲେ ମଣିଷ ଏକାନ୍ତରେ ମଧ୍ୟ ପାପ କରେ ନାହିଁ, ମାତ୍ର ତାଙ୍କ ପ୍ରତି

ଭୟ ନଥିଲେ ପୃଥିବୀର କୌଣସି ଶକ୍ତି ତାକୁ କୁକର୍ମ କରିବାରୁ ରୋକି ପାରିବ ନାହିଁ । ମଣିଷତ୍ୱ କ'ଣ ସମସ୍ତେ ଅଳ୍ପ-ବହୁତ ଜାଣନ୍ତି, କିନ୍ତୁ ପ୍ରକୃତ ମଣିଷଟିଏ ହେବା ଈଶ୍ୱରଙ୍କ ଶରଣାପନ୍ନ ନ ହେଲେ ଆଦୌ ସମ୍ଭବ ନୁହେଁ ।

## କୁରଆନ ଦୃଷ୍ଟିରେ ମାନବଜୀବନ

ମାନବ ସଂସାରର ସାରସୃଷ୍ଟି । ତେଣୁ, ତା' ଜୀବନର ମୂଲ୍ୟ କେତେ ଏହ ସ୍ୱଷ୍ଟ କରି କୁରଆନ କହିଛି-

**ଯଦି କେହି ଏଭଳି କୌଣସି ବ୍ୟକ୍ତିକୁ ହତ୍ୟା କରେ, ଯିଏ ନରହତ୍ୟା କରିନାହିଁ ବା ଭୂପୃଷ୍ଠରେ ବିଶୃଂଖଳା ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କରିଦେଲା, ଆଉ ଯିଏ ଜଣେ ବ୍ୟକ୍ତିକୁ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା । (କୁରଆନ ୫/୩୨)**

କୁରଆନ ଅନୁସାରେ ଦୁଇଟି କାରଣରୁ ନରହତ୍ୟାର ଶାସ୍ତ୍ରୀୟ ବୈଧତା ଅଛି । ଯଦି କେହି ନରହତ୍ୟା କରି କାହାରି ବଂଚିବାର ଅଧିକାର ଛିନ୍ନ କରେ ବା ସମାଜରେ ବଡ଼ ଧରଣର ବିଶୃଂଖଳା ସୃଷ୍ଟି କରିଥାଏ ତେବେ ତାକୁ ଶାସକ ବା ଅଦାଲତ ମୃତ୍ୟୁ ଦଣ୍ଡ ଦେଇପାରନ୍ତି । ଏହି ଦୁଇଟି କାରଣକୁ ଛାଡ଼ିଦେଲେ କୁରଆନ ଦୃଷ୍ଟିରେ ଜଣେ ମଣିଷର ହତ୍ୟା ସମଗ୍ର ମାନବଜାତିର ହତ୍ୟା ସହ ସମାନ । ଧର୍ମରେ ନରହତ୍ୟା, ଆତ୍ମହତ୍ୟା, ଭୃଣହତ୍ୟା ଆଦି ହତ୍ୟାର ସମସ୍ତ ସ୍ୱରୂପ ନିଷିଦ୍ଧ । ନରହତ୍ୟାକାରୀ ପରଲୋକରେ ନର୍କଦଣ୍ଡ ଭୋଗିବ ବୋଲି କୁରଆନ ସତର୍କ କରିଛି । [୩୩]

## ଧର୍ମଯୁଦ୍ଧ

ଏଠାରେ ପ୍ରଶ୍ନ ଉଠୁଛି ଯେ ଯଦି କୁରଆନରେ ସବୁ ପ୍ରକାର ନରହତ୍ୟାକୁ ନିଷିଦ୍ଧ କରାଯାଇଛି, ତେବେ 'ଜିହାଦ୍' ବା ଧର୍ମଯୁଦ୍ଧ ପୁଣି କ'ଣ ଯେଉଁଥିରେ ଅସଂଖ୍ୟ ଲୋକଙ୍କର ପ୍ରାଣହାନୀ ହୁଏ ? ଯଦି ଆମେ 'ଧର୍ମଯୁଦ୍ଧ' ଓ 'ନରହତ୍ୟା' ମଧ୍ୟରେ ଥିବା ପ୍ରଭେଦକୁ ବୁଝି ପାରିବା, ତେବେ ଆତଙ୍କବାଦ ଭଳି ଏକ ପାଶବିକ କର୍ମକୁ କୌଣସି ଧର୍ମ ସହ ଯୋଡ଼ିବା ନାହିଁ । ଆମେ ଜାଣିବା ଉଚିତ ଯେ ଦିବ୍ୟଗ୍ରନ୍ଥଗୁଡ଼ିକ କେବଳ ଆଧ୍ୟାତ୍ମିକ ବା ନୈତିକ ଶିକ୍ଷା ଦିଅନ୍ତି ନାହିଁ, ବରଂ ସମାଜର ବିଭିନ୍ନ ସମସ୍ୟାର ପ୍ରତିକାର ମଧ୍ୟ ଦେଇଥାଆନ୍ତି । ହତ୍ୟା, ଲୁଣ୍ଠନ, ଶୋଷଣ, ଦୁର୍ନୀତି ଓ ବ୍ୟଭିଚାର ଆଦି ସାମାଜିକ ଅପରାଧ ଗୁଡ଼ିକର ନିରାକରଣ ପାଇଁ ପ୍ରତିକାର ବ୍ୟବସ୍ଥା ସହିତ ପ୍ରଜାପାଳନ ପାଇଁ ଆବଶ୍ୟକ ସ୍ଥଳେ ଶତ୍ରୁ ସହ ଯୁଦ୍ଧ କରିବାର ନିର୍ଦ୍ଦେଶ ମଧ୍ୟ ଦିବ୍ୟଗ୍ରନ୍ଥଗୁଡ଼ିକରେ ଦିଆଯାଇଥାଏ । ଯୁଦ୍ଧ ସମୟରେ ମଧ୍ୟ ଶତ୍ରୁ ପ୍ରତି କୌଣସି ଅନ୍ୟାୟ ନ ହେଉ କିମ୍ବା ଅକାରଣରେ ଧନଜୀବନ ନଷ୍ଟ ନହେଉ, ଏଥିପାଇଁ ଦିବ୍ୟଗ୍ରନ୍ଥଗୁଡ଼ିକ ନିର୍ଦ୍ଦିଷ୍ଟ ନୀତିନିୟମ ଦେଇଥାଆନ୍ତି, ଯଥା - ଯୁଦ୍ଧ ଅନ୍ତିମ ବିକଳ୍ପ ହେବ, ପ୍ରଥମେ ସନ୍ଧି ପାଇଁ ଉଦ୍ୟମ କରାଯିବ, ଯୁଦ୍ଧ ହେଲେ ସେଥିରେ କୌଣସି ଅନ୍ୟାୟ ବା ଅନୈତିକ ଉପାୟ ଅବଲମ୍ବନ କରାଯିବ ନାହିଁ, ଅନାବଶ୍ୟକୀୟ ରକ୍ତପାତ ହେବ ନାହିଁ, ଶତ୍ରୁ ଆତ୍ମସମର୍ପଣ କଲେ ଯୁଦ୍ଧ ବନ୍ଦ କରିଦିଆଯିବ, ଅଣସୈନିକମାନଙ୍କୁ ହତ୍ୟା କରାଯିବ ନାହିଁ । ବୃଦ୍ଧ, ଶିଶୁ, ମହିଳା, ସାଧୁସନ୍ଥଙ୍କ ଉପରେ ଆକ୍ରମଣ ହେବନାହିଁ, ଗଛପତ୍ର ବା ପଶୁସମ୍ପଦ ନଷ୍ଟ କରାଯିବ ନାହିଁ, ଉପାସନା ପୀଠ ଧ୍ୱଂସ କରାଯିବ ନାହିଁ, ଯୁଦ୍ଧବନ୍ଦୀମାନଙ୍କ ସହିତ ମାନବୀୟ ବ୍ୟବହାର କରାଯିବ ଏବଂ ସେମାନଙ୍କୁ କୌଣସି ନିର୍ଯ୍ୟାତନା ଦିଆଯିବ ନାହିଁ ଇତ୍ୟାଦି ।

---

**(୩୩)** କୁରଆନ (୪/୨୯-୩୦)

ଯୁଦ୍ଧନୀତିର ଶିକ୍ଷା କେବଳ କୁରାନରେ ନୁହେଁ, ବରଂ ବିଶ୍ୱର ମହାନ୍ ଗ୍ରନ୍ଥ ବେଦ, ବାଇବଲ, ଭଗବଦ୍‌ଗୀତା ଏବଂ ମହାଭାରତ ଆଦିରେ ମଧ୍ୟ ଦିଆଯାଇଛି । ଏହି ଗ୍ରନ୍ଥଗୁଡ଼ିକୁ ପଢ଼ିଲେ ଆମେ ଜାଣିପାରିବା ଯେ ବିଭିନ୍ନ ଯୁଗରେ ଧର୍ମପ୍ରାଣ ରାଜପୁରୁଷ ଓ ଈଶ୍ୱରଦୂତମାନେ ଅନ୍ୟାୟ-ଅତ୍ୟାଚାର ବିରୋଧରେ ଅସ୍ତ୍ର ପ୍ରୟୋଗ କରିଛନ୍ତି । ଦୁଷ୍ଟ ଦମନ ଓ ନ୍ୟାୟର ପ୍ରତିଷ୍ଠା ଏହାର ମୂଳ ଲକ୍ଷ୍ୟ ଥିଲା । ଧନ ବା ଯଶ ଅର୍ଜନ କରିବା ପାଇଁ, କିମ୍ବା କାହାରି ଧର୍ମ ପରିବର୍ତ୍ତନ କରିବା ପାଇଁ ଧର୍ମପ୍ରାଣ ବ୍ୟକ୍ତିମାନେ ଶକ୍ତି ପ୍ରୟୋଗ କରୁନଥିଲେ । ଧର୍ମ ମଣିଷର ଆସ୍ଥା ଓ ଭକ୍ତି ସହ ସଂପୃକ୍ତ । ଇଚ୍ଛାମତେ ଧର୍ମ ପାଳନ କରିବାର ଅଧିକାର ପ୍ରତ୍ୟେକ ବ୍ୟକ୍ତିର ଅଛି । ତେଣୁ ଧର୍ମରେ ବଳ ପ୍ରୟୋଗ ନିଷିଦ୍ଧ ।[୩୪] ମହାମାନ୍ୟ ମୁହମ୍ମଦ ତାଙ୍କ ସମ୍ପୂର୍ଣ୍ଣ ଜୀବନ କାଳରେ କାହାରିକୁ ବାଧ୍ୟ କରି ମୁସଲମାନ କରିନାହାନ୍ତି । କେବଳ ପ୍ରଜାଙ୍କ ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ପାଇଁ ବା ଅନ୍ୟାୟ ଅତ୍ୟାଚାରରୁ ସମାଜକୁ ରକ୍ଷା କରିବାପାଇଁ, ନିର୍ଦ୍ଧାରିତ ନିୟମାନୁଯାୟୀ ଯେଉଁ ସଂଘର୍ଷ ହେଉଥିଲା, ତାହାହିଁ 'ଧର୍ମଯୁଦ୍ଧ' ଥିଲା । ଆରବୀ ଭାଷାରେ ଏହାକୁ 'ଜିହାଦ୍' କୁହାଯାଇଛି ।

ଧର୍ମଯୁଦ୍ଧ ହେଉଛି ରାଜଧର୍ମ । ଏହା ପ୍ରଜାଙ୍କର ବ୍ୟକ୍ତିଗତ ଅଧିକାର ନୁହେଁ । ଧର୍ମଗ୍ରନ୍ଥରେ କୁହାଯାଇଛି ବୋଲି ଜଣେ ନାଗରିକ ଆଇନକୁ ହାତକୁ ନେଇପାରିବ ନାହିଁ । ଉଦାହରଣ ସ୍ୱରୂପ ବ୍ୟଭିଚାରର ନିରାକରଣ ପାଇଁ ଧର୍ମଗ୍ରନ୍ଥଗୁଡିକ ବ୍ୟଭିଚାରୀକୁ ପ୍ରାଣଦଣ୍ଡ ଦିଆଯାଉ ବୋଲି କହିଛନ୍ତି । ସନାତନ ଧର୍ମଶାସ୍ତ୍ର କହେ ଯେ ବ୍ୟଭିଚାରୀକୁ ତପ୍ତ ଲୌହଶଯ୍ୟାରେ ଶୁଆଇ ଦାହ କରିବ । [୩୫] ବାଇବଲ କହିଛି ଯେ ଏହି ଅପରାଧୀକୁ ସର୍ବସାଧାରଣଙ୍କ ଉପସ୍ଥିତିରେ ପ୍ରସ୍ତରାଘାତ କରି ବଧ କରିବ ।[୩୬] ପ୍ରାଚୀନ ଧର୍ମୀୟ ପରମ୍ପରା ଅନୁସାରେ ମହାମାନ୍ୟ ମୁହମ୍ମଦ ମଧ୍ୟ ବିବାହିତ ବ୍ୟକ୍ତିକୁ ବ୍ୟଭିଚାର ପାଇଁ ପ୍ରସ୍ତରାଘାତ ଦ୍ୱାରା ମୃତ୍ୟୁଦଣ୍ଡ ଦେବାର ଆଦେଶ ଦେଲେ ।[୩୭] ଏଠାରେ ପ୍ରଶ୍ନ ଉଠୁଛି ଯେ ଅପରାଧୀକୁ ମୃତ୍ୟୁଦଣ୍ଡ ଦେବ କିଏ ? ପ୍ରଜାଙ୍କ ପ୍ରତି ଦଣ୍ଡବିଧାନ କରିବା କୌଣସି ବ୍ୟକ୍ତି ବା ସଂଗଠନର ଅଧିକାର ନୁହେଁ । ଏହା ରାଷ୍ଟ୍ରମୁଖ୍ୟ ବା ଅଦାଲତର ଅଧିକାର । ସେହିପରି ଯୁଦ୍ଧ କରିବା ମଧ୍ୟ କେବଳ ରାଷ୍ଟ୍ରମୁଖ୍ୟଙ୍କର ଅଧିକାର । ଧର୍ମଯୁଦ୍ଧ ବିଷୟରେ କୁରଆନର ନୀତି ଅନ୍ୟ ଗ୍ରନ୍ଥମାନଙ୍କଠାରୁ କିଛି ଭିନ୍ନ ନୁହେଁ । 'ଜିହାଦ୍ ଓ ଆତଙ୍କବାଦ ପୁସ୍ତକ'ରେ ମୁଁ ଏ ବିଷୟରେ ବିଶଦ ଭାବରେ ଆଲୋଚନା କରିଛି ।

କିଛି ଅସହିଷ୍ଣୁ ସମାଲୋଚକ ଘୃଣା ଓ ବିଦ୍ୱେଷର ପ୍ରସାର ପାଇଁ କୁରଆନର କେତେକ ବାଣୀକୁ ସେଗୁଡ଼ିକର ପ୍ରସଂଗ ଓ ପୃଷ୍ଠଭୂମୀରୁ ଅଲଗା କରି ବ୍ୟବହାର କରନ୍ତି । ସେମାନେ କେତେକ ଯୁଦ୍ଧକାଳୀନ ଆଦେଶକୁ ଉଦ୍ଧାର କରି କହନ୍ତି ଯେ ଦେଖ, କୁରଆନ କେମିତି ଅଣମୁସଲମାନମାନଙ୍କୁ ହତ୍ୟା କରିବାର ଆଦେଶ ଦେଇଛି । ଯଦି ସେମାନେ କୁରଆନକୁ ବିଧିବଦ୍ଧ ଭାବରେ ଅଧ୍ୟୟନ କରନ୍ତେ, ତେବେ ଜାଣି ପାରନ୍ତେ ଯେ ଏଭଳି ଆଦେଶଗୁଡ଼ିକ ନୀତିବାଣୀ ନୁହେଁ, ବରଂ ଯୁଦ୍ଧ ସମୟରେ ଦିଆଯାଇଥିବା ସାମୟିକ ଆଦେଶ ଥିଲା ଏବଂ କେବଳ ସେହି ଶତ୍ରୁମାନଙ୍କ ବିଷୟରେ ଥିଲା,ଯେଉଁମାନଙ୍କ ସହ ଯୁଦ୍ଧ ହୋଇଥିଲା । ଏହାର ଉଦାହରଣ ଅନେକ ଗ୍ରନ୍ଥରେ ରହିଛି । ଭଗବଦ୍ ଗୀତାକୁ ଭଲରୂପେ ଅଧ୍ୟୟନ ନକରି, ସେଥିରୁ ମନଇଚ୍ଛା ବାଣୀଟିଏ ଉଦ୍ଧାର କରି ଯଦି କେହି ଦେଖାଏ ଯେ ଦେଖ, ଗୀତା ଆତ୍ମୀୟମାନଙ୍କୁ ହତ୍ୟା କରିବାର ଶିକ୍ଷା ଦେଉଛି, ତେବେ ତାକୁ କ'ଣ ଜ୍ଞାନୀ କୁହାଯିବ ? କୁରଆନ ଅନୁସାରେ ମାନବଜୀବନ ଅମୂଲ୍ୟ ।

---

**(୩୪)** କୁରଆନ ୨/୨୫୬ **(୩୫)** ମନୁ ସଂହିତା ୮/୩୭୨ **(୩୬)** ବାଇବଲ, ଦ୍ୱିତୀୟ ବିବରଣ ୨୨/୨୦-୨୨
**(୩୭)** ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ ୮୨୯

ଯଥାର୍ଥ କାରଣ ବିନା ଗୋଟିଏ ବହୁମୂଲ୍ୟ ଜୀବନକୁ ନଷ୍ଟ କରିଦେବା ମହାପାପ । ଯେଉଁ ପାପିଷ୍ଠମାନେ ଧର୍ମକୁ ଆଳ କରି ଜିହାଦ୍ ନାଁରେ ନିରୀହ ଲୋକମାନଙ୍କୁ ହତ୍ୟା କରନ୍ତି ସେମାନେ ମାନବସମାଜ ପାଇଁ ବିପଦ ଏବଂ ସେମାନଙ୍କ ଦୌରାତ୍ମ୍ୟରୁ ସମାଜକୁ ରକ୍ଷା କରିବା ଶାସକମାନଙ୍କର ପରମ କର୍ତ୍ତବ୍ୟ ।

## କୁରଆନ୍‌ର ଚମତ୍କାର

କୁରଆନ ମହାମାନ୍ୟ ମୁହମ୍ମଦଙ୍କ ଏକ ବିଶେଷ ଚମତ୍କାର । ଏହି ଗ୍ରନ୍ଥଟିର ଏଭଳି ଅସାଧାରଣ ବୈଶିଷ୍ଟ୍ୟ ରହିଛି ଯାହା ଏହାର ପାଠକକୁ ବିସ୍ମିତ କରେ । ଆସନ୍ତୁ, ବିଶ୍ୱର ଏହି ମହାନ ଗ୍ରନ୍ଥର କେତୋଟି ବୈଶିଷ୍ଟ୍ୟ ସଂପର୍କରେ ଆଲୋଚନା କରିବା ଯାହା ଏହାକୁ ମାନବ ରଚିତ ପୁସ୍ତକ ଠାରୁ ପୃଥକ କରେ ।

### ଏକ ଅସାଧାରଣ ଗ୍ରନ୍ଥ

ଏହି ଗ୍ରନ୍ଥଟି ଏକ ସାଧାରଣ ଗ୍ରନ୍ଥ ନୁହେଁ । ଏହି ଗ୍ରନ୍ଥ କେବଳ ପୂଜା-ଉପାସନାର ବିଧି ଦେଇନାହିଁ । ଏହା ମଣିଷର ଆଧ୍ୟାତ୍ମିକ, ନୈତିକ, ପାରିବାରିକ, ସାମାଜିକ ଓ ଆର୍ଥିକ ସମସ୍ୟାଗୁଡ଼ିକର ଉପଯୁକ୍ତ ସମାଧାନ ଦେଇଛି । ଈଶ୍ୱରଙ୍କ ପ୍ରତି ଓ ସମାଜ ପ୍ରତି, ପିତା-ମାତା, ଭାଇବନ୍ଧୁ, ପତି-ପତ୍ନୀ ଓ ସାହିପଡ଼ୋଶୀଙ୍କ ପ୍ରତି ମନୁଷ୍ୟର କର୍ତ୍ତବ୍ୟ କ'ଣ, ତାହା ବର୍ଣ୍ଣନା କରିବା ସତ୍ୟ, ନ୍ୟାୟ, ଦୟା, କ୍ଷମା ଓ ପରୋପକାରର ସଂଜ୍ଞା ନିରୂପଣ କରିଛି ଏବଂ ଯୁଦ୍ଧ ଓ ଶାନ୍ତିର ନୀତି ମଧ୍ୟ ନିର୍ଦ୍ଧାରଣ କରିଛି । ମାନବର ସୃଷ୍ଟିଠାରୁ ଆରମ୍ଭ କରି ବ୍ରହ୍ମାଣ୍ଡ ସୃଷ୍ଟିର ରହସ୍ୟ ଏହି ଗ୍ରନ୍ଥ ଉନ୍ମୋଚନ କରିଛି । ଜୀବବିଜ୍ଞାନ, ପ୍ରାଣୀବିଜ୍ଞାନ, ଉଦ୍ଭିଦବିଜ୍ଞାନ, ପଦାର୍ଥ ବିଜ୍ଞାନ, ସମୁଦ୍ର ବିଜ୍ଞାନ ଏବଂ ମହାକାଶ ବିଜ୍ଞାନ ପରିସରଭୁକ୍ତ ଅନେକ ସତ୍ୟ ଏହି ଗ୍ରନ୍ଥ ପ୍ରକାଶ କରିଛି, ଯାହା ସପ୍ତମ ଶତାବ୍ଦୀରେ କୌଣସି ମଣିଷ ପକ୍ଷରେ ଜାଣିବା ସମ୍ଭବପର ନଥିଲା । କେବଳ ଏତିକି ନୁହେଁ, ଏହି ଗ୍ରନ୍ଥ ବ୍ରହ୍ମାଣ୍ଡର ଅନେକ ଗୁପ୍ତ ରହସ୍ୟ ପ୍ରକାଶ କରିଛି ଏବଂ ସ୍ୱର୍ଗ, ନର୍କ ଓ ମହାପ୍ରଳୟ ସମ୍ପର୍କରେ ସୂଚନା ଦେଇଛି । ଏହା ବିବିଧ ଜ୍ଞାନର ଏକ ସମୁଦ୍ର । ଏହି ଗ୍ରନ୍ଥଟିକୁ ଯିଏ ମନଧ୍ୟାନ ଦେଇ ପଢ଼ିବ ସେ ହୃଦୟଙ୍ଗମ କରିପାରିବ ଯେ ଏଭଳି ଏକ ଗ୍ରନ୍ଥର ରଚନା କୌଣସି ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ।

### ମହାମାନ୍ୟ ମୁହମ୍ମଦ ନିରକ୍ଷର ଥିଲେ

ଏହି ଗ୍ରନ୍ଥଟି ଏଭଳି ଜଣେ ମହାନ ପୁରୁଷଙ୍କ ପ୍ରତି ପ୍ରକଟ ହେଲା, ଯାହାଙ୍କ ସାଧୁତା, ସତ୍ୟବାଦୀତା ଏବଂ ସଦାଚାରିତା ସଂପର୍କରେ ଉଭୟ ମୁସଲିମ ଓ ଅଣମୁସଲିମ ଐତିହାସିକ ଏକମତ । ମହାମାନ୍ୟ ମୁହମ୍ମଦ ବିଶ୍ୱ ଇତିହାସର ଜଣେ ଅନନ୍ୟ ପ୍ରତିଭା, ଯାହାଙ୍କ ଆଦର୍ଶରେ ପ୍ରାୟ ୧୫୭ କୋଟି ନରନାରୀ ଅନୁପ୍ରାଣିତ । ବିଶ୍ୱର ପ୍ରଖ୍ୟାତ ଅଣମୁସଲିମ ଐତିହାସିକ ମାନଙ୍କର କଲମ ମଧ୍ୟ ତାଙ୍କ ପ୍ରଶଂସାରେ ଶତମୁଖର । ଆଶ୍ଚର୍ଯ୍ୟର କଥା ହେଉଛି ଯେ ଯାହାଙ୍କ ମୁଖରୁ କୁରଆନ ଭଳି ଏକ ଉଚ୍ଚକୋଟୀର ଗ୍ରନ୍ଥ ନିସୃତ ହେଲା, ସେ ସଂପୂର୍ଣ୍ଣ ନିରକ୍ଷର ଥିଲେ । ଏହା ଏକ ଚମତ୍କାର ବ୍ୟତୀତ ଆଉ କ'ଣ ହୋଇପାରେ ? ଉଭୟ ମୁସଲିମ ଓ ଅଣମୁସଲିମ ଐତିହାସିକ ଏ ବିଷୟରେ ଏକମତ ଯେ ମହାମାନ୍ୟ ମୁହମ୍ମଦ ନିରକ୍ଷର ଥିଲେ । ନିଜର ନାଁ ମଧ୍ୟ ସେ ଲେଖିପାରୁ ନଥିଲେ । କୌଣସି ପତ୍ର ଲେଖିବାର ହେଲେ ସେ ଅନ୍ୟମାନଙ୍କଠାରୁ ଲେଖାଇ ନେଉଥିଲେ ଏବଂ ତଳେ ଦସ୍ତଖତ ଯାଗାରେ ନିଜ ମୁଦିରେ ଥିବା ମୋହର ମାରି ଦେଉଥିଲେ । ସେ ରୋମ, ଇରାନ, ବାହାରିନ୍, ଇଜିପ୍ଟ, ଇଥିଓପିଆ ଆଦି ଦେଶର ଶାସକମାନଙ୍କ ନିକଟକୁ ଅନେକ

ଚିଠି ଲେଖିଛନ୍ତି ଯାହା ଏବେ ସୁଦ୍ଧା ବିଭିନ୍ନ ମ୍ୟୁଜିୟମରେ ସଂରକ୍ଷିତ; କିନ୍ତୁ କୌଣସିଟିରେ ତାଙ୍କର ଦସ୍ତଖତ ନାହିଁ । ଏହା ତାଙ୍କ ନିରକ୍ଷରତାର ଜ୍ୱଳନ୍ତ ପ୍ରମାଣ । ବିଶିଷ୍ଟ ଐତିହାସିକ ଥୋମାସ କାର୍ଲାଇଲ କୁହନ୍ତି ଯେ ବିଦ୍ୟାଳୟର ଶିକ୍ଷା ତାଙ୍କର ଆଦୌ ନଥିଲା ।''[1] ଐତିହାସିକ ଏଡ୍‌ୱାର୍ଡ ଗୀବନ କୁହନ୍ତି— ''ବାଗ୍ମୀତାର ଏହି ଦକ୍ଷତା ସହ ମୁହମ୍ମଦ ଜଣେ ନିରକ୍ଷର ଗାଉଁଲି ଲୋକ ଥିଲେ । ତାଙ୍କ ଯୁବକାଳ ଲେଖାପଢ଼ାର କଳା ଦ୍ୱାରା ପ୍ରଶିକ୍ଷିତ ହୋଇନଥିଲା ।''[2]

ଐତିହାସିକ ଜନ୍ ଡାଭେନପୋର୍ଟ ମହାମାନ୍ୟ ମୁହମ୍ମଦଙ୍କ ଶିକ୍ଷା ବିଷୟରେ କୁହନ୍ତି ଯେ, ସେ ଆଦୌ ଅକ୍ଷର ଜାଣି ଥିଲେ ।[3] ମେରେଡିଥ ଟନସେଣ୍ଡ ମଧ୍ୟ ଲେଖିଛନ୍ତି ଯେ, ମହାମାନ୍ୟ ମୁହମ୍ମଦ ନିରକ୍ଷର ଥିଲେ ।[4] ସେହିପରି ଐତିହାସିକ ବୋସୱାର୍ଥ ସ୍ମିଥ୍ କୁର୍‌ଆନକୁ ନିରକ୍ଷର ଈଶ୍ୱରଦୂତଙ୍କର ଏକ ଚମତ୍କାର ବୋଲି କୁହନ୍ତି—

'ନିରକ୍ଷର ତଥା ଲେଖିବା ବା ପଢ଼ିବାକୁ ସମ୍ପୂର୍ଣ୍ଣ ଅସମର୍ଥ ଥିବା ସତ୍ତ୍ୱେ ସେ ଏଭଳି ଗୋଟିଏ ଗ୍ରନ୍ଥର ପ୍ରଣେତା, ଯାହାକି ଏକକାଳୀନ ଏକ କାବ୍ୟ, ଏକ ବିଧାନ, ସାଧାରଣ ପ୍ରାର୍ଥନା ଗ୍ରନ୍ଥ ଏବଂ ଏକ ଧର୍ମଗ୍ରନ୍ଥ, ଏବଂ ଆଜି ଏକ-ଷଷ୍ଠମାଂଶ ମାନବ ଜଗତ ଏହି ଗ୍ରନ୍ଥଟିକୁ ଶୁଦ୍ଧତା, ଶୈଳୀ, ଜ୍ଞାନ ଓ ସତ୍ୟର ଏକ ଚମତ୍କାର ରୂପେ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରନ୍ତି ଏବଂ ବାସ୍ତବରେ ଏହା ଏକ ଚମତ୍କାର ।'[5]

## କୁରଆନର ଚ୍ୟାଲେନ୍‌ଜ

ତଥାପି ଲୋକେ କୁରଆନକୁ ମହାମାନ୍ୟ ମୁହମ୍ମଦଙ୍କ ରଚନା ବୋଲି କହିଲେ । ତେଣୁ, କୁରଆନ ସମୁଦାୟ ମାନବଜଗତକୁ ଆହ୍ୱାନ କରି କହିଲା -

**ତୁମେ ସେମାନଙ୍କୁ କହିଦିଅ, 'ଯଦି ସମଗ୍ର ମାନବ ଓ ଦାନବ (ଅର୍ଥାତ୍ ଜିନ୍ନ) ସମୁଦାୟ ମିଶି ଏହି କୁରଆନ ପରି ଗ୍ରନ୍ଥଟିଏ ରଚନା କରିବାକୁ ଏକଜୁଟ ହୁଅନ୍ତି ଆଉ ସେମାନେ ପରସ୍ପରକୁ ଏଥିରେ ସାହାଯ୍ୟ ମଧ୍ୟ କରନ୍ତି, ତଥାପି ସେମାନେ ଏହାର ଅନୁରୂପ (ଗ୍ରନ୍ଥଟିଏ) ରଚନା କରି ପାରିବେ ନାହିଁ ।' (କୁର୍‌ଆନ ୧୭ / ୮୮)**

ସଂପୂର୍ଣ୍ଣ କୁରଆନ ତ ଦୂରର କଥା, କୁରଆନ କହୁଛି ଯେ ମଣିଷ ଏହାର ଗୋଟିଏ ଅଧ୍ୟାୟ ମଧ୍ୟ ରଚନା କରିପାରିବ ନାହିଁ, କାରଣ ଏହା ଈଶ୍ୱରବାଣୀ ।

**କ'ଣ ଏମାନେ କହୁଛନ୍ତି ଯେ ସେ (ମହାମାନ୍ୟ ମୁହମ୍ମଦ) ନିଜେ ଏହି କୁରଆନ ଲେଖିଦେଇଛନ୍ତି ? କହିଦିଅ, "ଯଦି ତୁମେମାନେ (ପ୍ରକୃତରେ) ସତ୍ୟବାଦୀ, ତେବେ ଏହାରି (ଅଧ୍ୟାୟ) ପରି ଗୋଟିଏ ଅଧ୍ୟାୟ ରଚନା କରିଆଣ ଏବଂ (ସହାୟତା କରିବା ପାଇଁ) ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଯାହାକୁ ଚାହଁ ଡାକିଆଣ । (କୁରଆନ ୧୦/୩୮)**

ଆସନ୍ତୁ, କୁରଆନର କେତୋଟି ବୈଶିଷ୍ଟ୍ୟ ସମ୍ପର୍କରେ ଜାଣିବା ।

---

(1) Thomas Carlyle, Heroes and Hero Worship. P.72

(2) Edward Gibbon, Life of Mahomet, 1735, p.68

(3) John Davenport, An Apology for Mohammed and the Koran, London, 1869, p.52.

(4) Meredith Townsend, Mahommed, The Great Arabian, Boston & New York 1912, p.17

(5) R.Bosworth Smith, Mohammed and Mohammedanism, London, p.237

## ୧. ଅନୁପମ ଶୈଳୀ

ଈଶ୍ୱରବାଣୀର ପ୍ରଥମ ବୈଶିଷ୍ଟ୍ୟ ହେଉଛି ଏହାର ଅନୁପମ ଭାଷାଶୈଳୀ, ଯାହା ସମାଜରେ ପ୍ରଚଳିତ ଭଷାଠାରୁ ଭିନ୍ନ ଥାଏ । କୁରଆନ ଗ୍ରନ୍ଥଟି ସଂପୂର୍ଣ୍ଣ ଗଦ୍ୟ ନୁହେଁ କି ପଦ୍ୟ ନୁହେଁ । ଏହା ଗଦ୍ୟ ଓ ପଦ୍ୟର ଏକ ଅପୂର୍ବ ସଂଯୋଜନା । ଭାଷାର ଲାଳିତ୍ୟ, ଶବ୍ଦର ମାଧୁର୍ଯ୍ୟ, ତାଳ ଓ ଲୟର ଅପୂର୍ବ ସମନ୍ୱୟ ସହ ଅଭୂତପୂର୍ବ ସାହିତ୍ୟିକ ଶୈଳୀରେ ରଚିତ ଏହା ଏକ ଆଦର୍ଶ ଜୀବନସଂହିତା । କମ୍ ଶବ୍ଦରେ ଅଧିକ ଭାବ ପ୍ରକାଶ କରିବା ଏହାର ଏକ ବୈଶିଷ୍ଟ୍ୟ । ଲଣ୍ଡନ୍‌ରୁ ପ୍ରକାଶିତ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା କର୍‌ଆନର ଅଦ୍ଭୁତ ଶୈଳୀର ପ୍ରଶଂସା କରି ଲେଖିଛି—

''ସୁନ୍ଦର ଲାଳିତ୍ୟ ଓ ଭାଷାର ଶୁଦ୍ଧତା ସହ କୁର୍‌ଆନ ଆରବର ସବୁଠାରୁ ଅଧିକ ଭଦ୍ର ଓ ଆଭିଜାତ୍ୟ ସମ୍ପନ୍ନ କୁରେଶ ସମ୍ପ୍ରଦାୟର ଭାଷାରେ ଲେଖାଯାଇଥିବା ସାର୍ବଜନୀନ ଭାବେ ସ୍ୱୀକୃତ ।''(6)

ସେ କାଳର ଆରବ ସମାଜ, ସାହିତ୍ୟରେ ଢ଼େର ଉନ୍ନତ ଥିଲା, କିନ୍ତୁ କୁରଆନର ଉଚ୍ଚକୋଟୀର ଭାଷା ଓ ଅନୁପମ ଶୈଳୀ ଆରବଜଗତକୁ ସ୍ତମ୍ଭୀଭୂତ କରି ଦେଇଥିଲା । ଯଦିଓ କୁରଆନ ଏବଂ ମହାମାନ୍ୟ ମୁହମ୍ମଦଙ୍କ ବାଣୀ, ଯାହାକୁ ଆରବୀରେ 'ହଦିସ୍' କୁହାଯାଏ, ଉଭୟ ମହାମାନ୍ୟ ମୁହମ୍ମଦଙ୍କ ମୁଖରୁ ନିସୃତ ହୋଇଛି, ତଥାପି ଏହି ଦୁଇ ପ୍ରକାରର ବାଣୀରେ ଅନେକ ପ୍ରଭେଦ ରହିଛି । ଆରବୀ ଭାଷା ଜାଣିଥିବା ଜଣେ ବ୍ୟକ୍ତି ଉଭୟ ବାଣୀ ମଧ୍ୟରେ ଥିବା ଏହି ପାର୍ଥକ୍ୟକୁ ସହଜରେ ଉପଲବ୍ଧି କରିପାରିବ । ଏହି କାରଣରୁ କୁର୍‌ଆନର ଆବୃତ୍ତି ହୋଇପାରେ କିନ୍ତୁ ମହାମାନ୍ୟ ମୁହମ୍ମଦଙ୍କ ବାଣୀର ଆବୃତ୍ତି ହୁଏନାହିଁ ।

## ୨. ରହସ୍ୟମୟ ଶବ୍ଦ

କୁରଆନରେ ଥିବା ରହସ୍ୟମୟ ଶବ୍ଦଗୁଡ଼ିକ ଏହାର ଅନ୍ୟତମ ବୈଶିଷ୍ଟ୍ୟ । ମଣିଷ କିଛି ଲେଖିଲେ ତାହା ନିଶ୍ଚୟ କିଛି ନା କିଛି ଅର୍ଥ ପ୍ରକାଶ କରେ । କୌଣସି କବି ବା ସାହିତ୍ୟିକ ନିଜର ରଚନାରେ ଏମିତି ଶବ୍ଦ ବ୍ୟବହାର କରନ୍ତି ନାହିଁ ଯାହା କୌଣସି ଭାବ ପ୍ରକାଶ କରେ ନାହିଁ । କୁର୍‌ଆନ ଗ୍ରନ୍ଥର ୨୯ଟି ସ୍ଥାନରେ ଏପ୍ରକାର ରହସ୍ୟମୟ ଶବ୍ଦ ବ୍ୟବହାର ହୋଇଛି । ଏକ ବା ଏକାଧିକ ଆରବୀ ଅକ୍ଷରକୁ ନେଇ ଏହି ଶବ୍ଦଗୁଡ଼ିକ ଗଠିତ, ଯଥା—କାଫ୍, ନୁନ୍, ହା-ମୀମ୍, ଅଲିଫ୍-ଲାମ୍-ମୀମ୍, ୟା-ସୀନ୍, ତା-ହା ଇତ୍ୟାଦି । କୌତୁହଳର କଥା, ଏହି ଶବ୍ଦଗୁଡ଼ିକ କୁର୍‌ଆନର ଅଂଶ ରୂପେ ପାଠ କରାଯାଉଥିଲେ ମଧ୍ୟ କୌଣସି ଭାବ ପ୍ରକାଶ କରନ୍ତି ନାହିଁ । ମହାମାନ୍ୟ ମୁହମ୍ମଦ ଏଗୁଡ଼ିକର କୌଣସି ବ୍ୟାଖ୍ୟା କରି ନାହାନ୍ତି । ଏହି ରହସ୍ୟମୟ ଶବ୍ଦଗୁଡ଼ିକ ମଧ୍ୟ ପବିତ୍ର କୁର୍‌ଆନର ଅନ୍ୟତମ ବୈଶିଷ୍ଟ୍ୟ ଯାହା ମାନବ ରଚନାରୁ ଏହାକୁ ପୃଥକ୍ କରେ ।

## ୩. କଥାର ଅଦ୍ଭୁତ ପୁନରାବୃତ୍ତି

କୌଣସି ଲେଖକ ନିଜ ପୁସ୍ତକରେ ଗୋଟିଏ କଥାକୁ ଶହ ଶହ ଥର ପୁନରାବୃତ୍ତି କରେନାହିଁ । କୁର୍‌ଆନରେ ଅନେକ ଶିକ୍ଷାର ଅଭୂତ ପୁନରାବୃତ୍ତି ଦେଖିବାକୁ ମିଳେ । କେବଳ ଜଣେ ଈଶ୍ୱରଙ୍କର ଉପାସନା କରିବା, ଦୈନିକ ନମାଜ ସଂପାଦନ କରିବା ଏବଂ ଦାନ କରିବାର ଉପଦେଶ ବିଭିନ୍ନ ଶୈଳୀରେ ଶହଶହ ଥର ପୁନରାବୃତ୍ତି କରାଯାଇଛି ।

---

(6) Encyclopedia Britannica or A Dictionary of Arts and Science, London,Vol.III, p.10

ସତ୍ୟ, ନ୍ୟାୟ, ଦୟା, କ୍ଷମା, ପରୋପକାର ଆଦିର ଶିକ୍ଷାର ବାରମ୍ବାର ପୁନରାବୃତ୍ତି ଘଟିଛି । ସେହିପରି, ପ୍ରଳୟ, ପୁନର୍ଜୀବନ, ସ୍ୱର୍ଗ ଓ ନର୍କ ଆଦି ବିଷୟର ମଧ୍ୟ ଶତାଧିକ ପୁନରାବୃତ୍ତି ହୋଇଛି । ଏ ପ୍ରକାର ଗୋଟିଏ କଥାର ବାରମ୍ବାର ପୁନରାବୃତ୍ତି କୌଣସି ମାନବ ରଚନାରେ ଦେଖାଯାଏ ନାହିଁ ।

## ୪. ଚମତ୍କାର ଶବ୍ଦ ସଂଯୋଜନା

ଏହି ପବିତ୍ର ଗ୍ରନ୍ଥଟିରେ କେତେକ ଶବ୍ଦର ଅଭୂତ ସଂଯୋଜନା ଦେଖିବାକୁ ମିଳେ ।[7] ଉଦାହରଣ ସ୍ୱରୂପ, 'ଦିନ' ଶବ୍ଦ ୩୬୫ ଥର ବ୍ୟବହାର କରାଯାଇଥିବା ବେଳେ 'ମାସ' ଶବ୍ଦ ଚମତ୍କାର ଭାବେ ୧୨ ଥର ବ୍ୟବହାର କରାଯାଇଛି । 'ଇହଲୋକ' (ଦୁନିଆ) ଶବ୍ଦଟିର ୩୩୨ ଥର ବ୍ୟବହାର ହୋଇଛି । ସେହିପରି ଏହାର ବିପରୀତ 'ପରଲୋକ' (ଆଖିରତ୍) ଶବ୍ଦଟିର ମଧ୍ୟ ୩୩୨ ଥର ବ୍ୟବହାର ହୋଇଛି । 'ସ୍ୱର୍ଗ' (ଜନ୍ନତ) ଏବଂ 'ନର୍କ' (ଜହନ୍ନମ) ଉଭୟ ଶବ୍ଦ ୭୭ ଥର ବ୍ୟବହାର କରାଯାଇଛି ଏବଂ 'ପୁରୁଷ' ଓ 'ସ୍ତ୍ରୀ' ଶବ୍ଦର ୨୩ ଥର ଲେଖାଏଁ ପୁନରାବୃତ୍ତି ଘଟିଛି । 'ଦେବ' ଏବଂ 'ଦାନବ' ଉଭୟ ଶବ୍ଦ ୮୮ ଥର ବ୍ୟବହାର କରାଯାଇଛି । ସେହିପରି 'କର୍ମ' ଓ 'କର୍ମଫଳ' ଶବ୍ଦ ପ୍ରତ୍ୟେକ ୧୦୮ ଥର ବ୍ୟବହାର କରାଯାଇଛି । ଦୀର୍ଘ ୨୩ବର୍ଷ ଧରି ପ୍ରକଟ ହୋଇଥିବା ଏହି ବିଶାଳ ଗ୍ରନ୍ଥଟିରେ ଶବ୍ଦଗୁଡ଼ିକର ଏଭଳି ଅଭୂତ ପ୍ରକାରର ବ୍ୟବହାର ମଧ୍ୟ କୌଣସି ଚମତ୍କାର ଠାରୁ କମ୍ ନୁହେଁ ।

## ୫. ଶାନ୍ତି ପ୍ରଦାୟକ ଗ୍ରନ୍ଥ

କୁରଆନର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଯେ ଏହି ଗ୍ରନ୍ଥର ପାଠ ଦ୍ୱାରା ମନକୁ ଶାନ୍ତି ମିଳେ । ସାହିତ୍ୟ, କବିତା, ଇତିହାସ, ଭୂଗୋଳ, ବିଜ୍ଞାନ ବା କୌଣସି କାହାଣୀ ପୁସ୍ତକ ହେଉ, ତାକୁ ପ୍ରତିଦିନ ବାରମ୍ବାର ପଢ଼ିବାକୁ ଇଚ୍ଛା ହୁଏନାହିଁ । ମାତ୍ର ବ୍ରହ୍ମବାଣୀର ଗୋଟିଏ ବିଶେଷତ୍ୱ ହେଉଛି ଯେ ତାକୁ ଯେତେ ପଢ଼ିଲେ ମଧ୍ୟ ଆହୁରି ପଢ଼ିବାକୁ ଇଚ୍ଛା ହୁଏ । ଏହି ଗ୍ରନ୍ଥପାଠ ଦ୍ୱାରା ଏକ ପ୍ରକାର ଅଲୌକିକ ଆନନ୍ଦ ମିଳେ, କାରଣ ଏହାକୁ ପାଠ କରୁଥିବା ବ୍ୟକ୍ତିକୁ ଈଶ୍ୱରଙ୍କର ସାନ୍ନିଧ୍ୟ ପ୍ରାପ୍ତ ହୋଇଥାଏ । କୋଟି କୋଟି ଲୋକ ଦୈନିକ କୁର୍ଆନ ପାଠ କରନ୍ତି ଏବଂ ଅନେକ ଭକ୍ତ ଏହାକୁ ପ୍ରତି ମାସରେ ମୂଳରୁ ଶେଷ ପର୍ଯ୍ୟନ୍ତ ପାଠ କରନ୍ତି, ତଥାପି ସେମାନଙ୍କୁ ବିରକ୍ତିବୋଧ ହୁଏନାହିଁ । ଏହା ବ୍ରହ୍ମବାଣୀର ଏକ ଆଧ୍ୟାତ୍ମିକ ଚମତ୍କାରିତା । ମାନବ ରଚନାରେ ଏହି ବିଶେଷତ୍ୱ ନଥାଏ ।

## ୬. କୁରଆନର ଦୈବୀ ସୁରକ୍ଷା

କୁର୍ଆନ ଈଶ୍ୱରଙ୍କର ଏକମାତ୍ର ଗ୍ରନ୍ଥ ନୁହେଁ । ଏହା ପୂର୍ବରୁ ଅନେକ ଦିବ୍ୟଗ୍ରନ୍ଥ ପ୍ରକଟ ହୋଇ ସାରିଛି, ଯେଉଁଥିରେ ମାନବକୃତ ଅନେକ ସଂଶୋଧନ ଓ ପ୍ରକ୍ଷେପଣ ହୋଇଛି । ପ୍ରାଚୀନ କାଳର ସୂଚନା ଓ ପ୍ରସାରଣର ସମସ୍ୟା ଥିଲା । ପ୍ରଚାର ଓ ପ୍ରସାରର ସୁବିଧା ନ ଥିବା ଯୋଗୁଁ ପୂର୍ବ ଗ୍ରନ୍ଥଗୁଡ଼ିକ ଏକ ସିମୀତ ଅଂଚଳରେ ସଂସ୍କାର ଆଣିବା ପାଇଁ ଉଦ୍ଦିଷ୍ଟ ଥିଲା । କୁରଆନର ସାର୍ବଜନୀନ ମହତ୍ୱ ଦୃଷ୍ଟିରୁ ଏହାର ଦୈବୀ ସୁରକ୍ଷା କରାଗଲା ଯେଉଁଥିରେ କୌଣସି ପ୍ରକାର ପରିବର୍ତ୍ତନ ସଂଭବ ନୁହେଁ ବୋଲି କୁରଆନ କହିଲା (କୁରଆନ ୬/୧୧୫) । କୁରଆନର ସଂରକ୍ଷଣ ସ୍ୱୟଂ ସ୍ରଷ୍ଟାଙ୍କ ନିଜ ଦାୟିତ୍ୱ ବୋଲି ସେ ଘୋଷଣା କରି କହନ୍ତି -

**ଏହି କୁରଆନକୁ ଆମ୍ଭେ ହିଁ ଅବତୀର୍ଣ୍ଣ କରିଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ । (୧୫/୯)**

---

[7] Harun Yahia, Learning form the Qur'an, Turkey, 2003, pp.535-536

ଚଉଦ ଶହ ବର୍ଷ ଧରି ଏହି ଗ୍ରନ୍ଥର ପ୍ରତିଟି ଅକ୍ଷର ସୁରକ୍ଷିତ ରହିଛି ଏବଂ ଭବିଷ୍ୟତରେ ମଧ୍ଯ ରହିବ । ଲିଖିତ ଓ କଣ୍ଠସ୍ଥ ରୂପରେ କୁରଆନ ଆଜି ମଧ୍ୟ ସେହିପରି ବିଶୁଦ୍ଧ ଅବସ୍ଥାରେ ରହିଛି, ଯେପରି ଏହା ପ୍ରକଟ ହେବା ସମୟରେ ଥିଲା । ବିଶ୍ୱର ସବୁ ଦେଶରେ ଗୋଟିଏ କୁର୍ଆନ ପ୍ରଚଳିତ ଏବଂ ପ୍ରତ୍ୟେକ ମସଜିଦରେ ଏକା କୁରଆନପାଠ ହୁଏ । ଏହାର ସଂଶୋଧିତ ସଂସ୍କରଣ ନାହିଁ । ଐତିହାସିକ ଗୀବନ କୁହନ୍ତି ଯେ, କୁର୍ଆନର ବିଭିନ୍ନ ସଂସ୍କରଣଗୁଡ଼ିକ ଚମତ୍କାର ଭାବରେ ସମାନତା ଓ ଶୁଦ୍ଧତା ରକ୍ଷା କରିଛି ।[8] ସାର୍ ଉଇଲିୟମ୍ ମୁର୍ ମଧ୍ୟ କୁର୍ଆନ ବିଷୟରେ କହନ୍ତି— ''ବୋଧହୁଏ ବିଶ୍ୱରେ ଅନ୍ୟ କୌଣସି ଲେଖା ଏତେ ବିଶୁଦ୍ଧ ରୂପେ ବାରଶହ ଶତାବ୍ଦୀ ଧରି ତିଷ୍ଠି ରହିପାରି ନାହିଁ ।''[9]

### ୭. କୁରଆନ ସହଜରେ କଣ୍ଠସ୍ଥ ହୋଇଯାଏ

ଇତିହାସ, ଭୁଗୋଳ, ସାହିତ୍ୟ ବା ନଭେଲ ହେଉ, ସଂପୂର୍ଣ୍ଣ ପୁସ୍ତକକୁ ନିର୍ଭୁଲ ଭାବରେ କଣ୍ଠସ୍ଥ କରିବା ସହଜ ନୁହେଁ । କୁରଆନ ୬୦୦୦ ରୁ ଊର୍ଦ୍ଧ୍ୱ ବାଣୀସମୂହର ଏକ ବିଶାଳ ଗ୍ରନ୍ଥ, ଯେଉଁଥିରେ ପରସ୍ପର ସହ ମିଶୁଥିବା ବାଣୀଗୁଡ଼ିକର ପୁନରାବୃତ୍ତି ହୋଇଛି । କୌତୂହଳ କଥା, ଜଣେ ଛଅ ବା ସାତ ବର୍ଷର ପିଲା, ଯିଏ ଆରବୀ ଭାଷା ବୁଝେନାହିଁ, ଅତି ସହଜରେ ସମ୍ପୂର୍ଣ୍ଣ କୁର୍ଆନକୁ କଣ୍ଠସ୍ଥ କରି ତାକୁ ନିର୍ଭୁଲ ଭାବରେ ମୂଳରୁ ଶେଷ ପର୍ଯ୍ୟନ୍ତ ପଢି ଶୁଣାଇଦିଏ । ଏତେ ବଡ଼ ଗ୍ରନ୍ଥର ଏତେ ସହଜରେ କଣ୍ଠସ୍ଥ ହେବା ଅବଶ୍ୟ ଏକ ଚମତ୍କାର । କୁର୍ଆନ ବର୍ତ୍ତମାନ ଲକ୍ଷ ଲକ୍ଷ ଭକ୍ତଙ୍କ ଦ୍ୱାରା ସମ୍ପୂର୍ଣ୍ଣ କଣ୍ଠସ୍ଥ, ଯେଉଁମାନଙ୍କୁ 'ହାଫିଜ୍' କୁହାଯାଏ । ପ୍ରତ୍ୟେକ ମୁସଲିମ ଜନବସତିରେ ଏଭଳି ଅନେକ ହାଫିଜ୍ ରହିଛନ୍ତି । ଏହା ବ୍ୟତୀତ ଦୈନିକ ନମାଜରେ କୁର୍ଆନପାଠ ଅନିବାର୍ଯ୍ୟ ହୋଇଥିବା ଯୋଗୁଁ ପ୍ରତ୍ୟେକ ମୁସଲମାନ ମଧ୍ୟ କୁରଆନରୁ ଅନେକ ଅଧ୍ୟାୟ କଣ୍ଠସ୍ଥ କରିଥାଆଏ ।

## ବୈଜ୍ଞାନିକ ଚମତ୍କାରିତା

କୁରଆନ ପଢ଼ିଲେ ଆଶ୍ଚର୍ଯ୍ୟ ଲାଗେ ଯେ ଏହି ଗ୍ରନ୍ଥଟି ସୃଷ୍ଟି ସଂପର୍କରେ ସପ୍ତମ ସତାବ୍ଦୀରେ ବିଶ୍ୱକୁ ଏଭଳି ସୂଚନା ଦେଇଛି ଯାହା ସେତେବେଳେ କୌଣସି ମଣିଷ ପକ୍ଷରେ ଜାଣିବା ସମ୍ଭବପର ନଥିଲା, କାରଣ ସେଗୁଡ଼ିକ ଆଧୁନିକ ବିଜ୍ଞାନର ସଦ୍ୟତମ ଆବିଷ୍କାର । ବିଶ୍ୱର ମହାନ ବୈଜ୍ଞାନିକମାନଙ୍କୁ କୁରଆନ ହତବାକ୍ କରିଦେଇଛି । ଆସନ୍ତୁ ଏହାର କେତୋଟି ଉଦାହରଣ ଦେଖିବା -

### ୧. ବ୍ରହ୍ମାଣ୍ଡର ଉତ୍ପତ୍ତି

ବ୍ରହ୍ମାଣ୍ଡର ଉତ୍ପତ୍ତି ବିଷୟରେ ପ୍ରସିଦ୍ଧ ବୈଜ୍ଞାନିକ ମତ ହେଉଛି ଯେ ନକ୍ଷତ୍ରପୁଞ୍ଜର ସୃଷ୍ଟି ପୂର୍ବରୁ ସମଗ୍ର ବ୍ରହ୍ମାଣ୍ଡ ଏକ ଧୂଆଁ ଭଳି ଗ୍ୟାସୀୟ ପିଣ୍ଡ (Nabula) ଥିଲା । ପରେ ଏହି ଗ୍ୟାସୀୟ ପିଣ୍ଡଟି ଫାଟିଯାଇ ଏକ ବିରାଟ ବିସ୍ଫୋରଣ ହୋଇଥିଲା ଯାହାକୁ Bigbang କୁହାଯାଏ । ଏହି ବିସ୍ଫୋରଣ ଫଳରେ ନକ୍ଷତ୍ରପୁଞ୍ଜ (Galaxies) ଗୁଡ଼ିକର ସୃଷ୍ଟି ହେଲା ଏବଂ ଏହି ନକ୍ଷତ୍ରପୁଞ୍ଜ ଗୁଡ଼ିକରୁ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ରଗୁଡ଼ିକର ସୃଷ୍ଟି । ବ୍ରହ୍ମାଣ୍ଡର ଉତ୍ପତ୍ତି ବିଷୟରେ ଏହା ବିଜ୍ଞାନର ସଦ୍ୟତମ ଆବିଷ୍କାର, କିନ୍ତୁ ଚଉଦଶହ ବର୍ଷ ପୂର୍ବେ ଏହାର ସୂଚନା ଦେଇ କୁରଆନ କହିଛି —

---

[8] Edward Gibbon, Life of Mahomet, pp. 86-87

[9] Sir William Muir, The Life of Mahomet, London, 1861, Vol.I, p.xv Introduction

**ତା'ପରେ ସେ ଆକାଶ ପ୍ରତି ଧ୍ୟାନ ଦେଲେ ଯାହା ସେତେବେଳେ ଧୂଆଁ ପରି (ଅର୍ଥାତ୍ ଗ୍ୟାସୀୟ ଅବସ୍ଥାରେ) ଥିଲା । (କୁରଆନ ୪୧/୧୧)**

ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ଏବଂ ନକ୍ଷତ୍ରପୁଞ୍ଜ ଆଦି ସମସ୍ତେ ଏହି ଗ୍ୟାସୀୟପିଣ୍ଡରୁ ସୃଷ୍ଟି ହୋଇଛନ୍ତି, ଯାହାକୁ କୁର୍ଆନ 'ଧୂଆଁ' ବୋଲି କହୁଛି । ସବୁଗୁଡ଼ିକ ମିଶି ପ୍ରଥମେ ଗୋଟିଏ ସୃଷ୍ଟି ଥିଲା ଏବଂ ଈଶ୍ୱର ସେଗୁଡ଼ିକୁ ଅଲଗା ଅଲଗା କରିଦେଲେ ବୋଲି ବର୍ଣ୍ଣନା କରି କୁର୍ଆନ କହିଛି—

**(ଆମ୍ଭଙ୍କୁ) ଅବିଶ୍ୱାସ କରୁଥିବା ଲୋକମାନେ କ'ଣ ଏହା ଜାଣନ୍ତି ନାହିଁ ଯେ (ଆରମ୍ଭରେ) ଉଭୟ ପୃଥିବୀ ଓ ଆକାଶ ପରସ୍ପର ସଂଯୁକ୍ତ ହୋଇ ରହିଥିଲା; ପରେ ଆମ୍ଭେ ସେଗୁଡ଼ିକୁ ପୃଥକ ପୃଥକ କଲୁ ଏବଂ ଆମ୍ଭେ ପ୍ରତ୍ୟେକ ସଜୀବକୁ ଜଳରୁ ସୃଷ୍ଟି କଲୁ । କ'ଣ ତଥାପି ଏମାନେ (ଆମ୍ଭର ଅସ୍ତିତ୍ୱକୁ) ମାନିବେ ନାହିଁ ? (କୁରଆନ ୨୧/୩୦)**

ପ୍ରଫେସର ଆଲ୍‌ଫ୍ରେଡ କ୍ରୋନର୍ ଜର୍ମାନୀରେ ଥିବା ମେଞ୍ଜ ବିଶ୍ୱବିଦ୍ୟାଳୟର ବିଖ୍ୟାତ ଭୂତତ୍ତ୍ୱବିଜ୍ଞାନୀ । ସେ କୁର୍ଆନରେ ଥିବା ଏହି ବିସ୍ମୟକର ତଥ୍ୟ ବିଷୟରେ ମତଦେଇ କହିଛନ୍ତି—

''ଯେଉଁ ପରିବେଶରୁ ମୁହମ୍ମଦ ଆସିଛନ୍ତି... ମୁଁ ଭାବୁଛି ଏହା ସମ୍ପୂର୍ଣ୍ଣ ଅସମ୍ଭବ ଯେ ବ୍ରହ୍ମାଣ୍ଡର ଗୋଟିଏ ଉତ୍ସ ଥିବାଭଳି ବିଷୟରେ ସେ ଜାଣିଥିବେ, କାରଣ ବୈଜ୍ଞାନିକମାନେ ବିଗତ କିଛିବର୍ଷ ପୂର୍ବେ ଅତି ଜଟିଳ ଏବଂ ଉନ୍ନତ ଯାନ୍ତ୍ରିକ କୌଶଳ ପ୍ରୟୋଗ କରି ଏହି ଘଟଣା ସମ୍ପର୍କରେ ଜାଣିଛନ୍ତି । ଚଉଦଶହ ବର୍ଷ ତଳର ଜଣେ ଲୋକ ଯିଏ ନ୍ୟୁକ୍ଲିୟାର୍ ପଦାର୍ଥବିଜ୍ଞାନ ବିଷୟରେ କିଛି ଜାଣେନାହିଁ, ମୋ ମତରେ ତା' ମନରୁ ପୃଥିବୀ ଓ ଆକାଶର ଏକା ଉତ୍ସ ବା ସେଇ ଧରଣର ଅନେକ ପ୍ରଶ୍ନ ବିଷୟରେ ଯାହା ଆମେ ଏଠାରେ ଆଲୋଚନା କଲୁ, ଜାଣିବାକୁ ସମର୍ଥ ହେବନାହିଁ ।''[(10)]

କୁରଆନରେ ଥିବା ଏହି ସୂଚନା ଏହାର ପ୍ରମାଣ ଦିଏ ଯେ କୁରଆନ କୌଣସି ମାନବ ରଚିତ ଗ୍ରନ୍ଥ ନୁହେଁ ।

## ୨. ମହାକାଶର କକ୍ଷପଥ

ମହାକାଶରେ ଅସଂଖ୍ୟ କକ୍ଷପଥ (Orbit) ଥିବା କଥା ପୂର୍ବେ ମାନବଜଗତକୁ ଜଣା ନଥିଲା । ଗ୍ରହଗୁଡ଼ିକ ନିଜ ନିଜ କକ୍ଷପଥରେ ବୁଲୁଥିବା ଏବେ ବିଜ୍ଞାନ ଆବିଷ୍କାର କରିଛି, କିନ୍ତୁ କୁର୍ଆନ ମହାକାଶରେ ଅନେକ କକ୍ଷପଥ ଥିବାର ଖବର ଚଉଦଶହ ବର୍ଷ ପୂର୍ବରୁ ଦେଇ କହିଛି -

**ଅନେକ ପଥବିଶିଷ୍ଟ ଆକାଶର ରାଣ । (କୁର୍ଆନ ୫୧/୭)**

## ୩. ଗ୍ରହଗୁଡ଼ିକ କକ୍ଷପଥରେ ବୁଲୁଛନ୍ତି

ପୂର୍ବେ ଏହା ବିଶ୍ୱାସ କରାଯାଉଥିଲା ଯେ, ପୃଥିବୀ ସ୍ଥିର ଏବଂ ସୂର୍ଯ୍ୟ ପୃଥିବୀ ଚାରିପଟେ ବୁଲୁଛି । ବିଜ୍ଞାନ ଏବେ ଆବିଷ୍କାର କଲା ଯେ କେବଳ ପୃଥିବୀ ନୁହେଁ, ସୂର୍ଯ୍ୟ, ଚନ୍ଦ୍ର ଓ ସମସ୍ତ ଗ୍ରହଗୁଡ଼ିକ ନିଜ ନିଜର ଅକ୍ଷ ଚାରିପଟେ ବୁଲିବା

---

(10) Prof. Alfred Kroner, Chairman, Department of Geosciences, University of Mainz, Germany. [Video clips can be watched in the website: www.Islam-guide.com]

ସହ ନିଜର କକ୍ଷପଥରେ ମଧ୍ୟ ବିଚରଣ କରୁଛନ୍ତି । ବ୍ରହ୍ମାଣ୍ଡରେ ପ୍ରାୟ ୨୦୦ ତାରକାପୁଞ୍ଜ (Galaxies) ଥିବା କଥା ବିଜ୍ଞାନ କହୁଛି । ପ୍ରତ୍ୟେକ ତାରକାପୁଞ୍ଜରେ ପ୍ରାୟ ୨୦୦କୋଟି ନକ୍ଷତ୍ର ଅଛନ୍ତି ଏବଂ ସମସ୍ତେ ନିଜ ନିଜର ନିର୍ଦ୍ଧାରିତ କକ୍ଷପଥରେ ବୁଲୁଛନ୍ତି । ମହାକାଶ ବିଷୟରେ ଏହି ବୈଜ୍ଞାନିକ ତଥ୍ୟର ଖବର କୁର୍‌ଆନ ସପ୍ତମ ଶତାବ୍ଦୀରେ ଦେଇ କହୁଛି—

**ସେ ହିଁ ଦିନ ଓ ରାତି ତଥା ସୂର୍ଯ୍ୟ ଓ ଚନ୍ଦ୍ର ସୃଷ୍ଟି କଲେ । ପ୍ରତ୍ୟେକ (ଗ୍ରହ ନକ୍ଷତ୍ର) ନିଜ ନିଜର କକ୍ଷପଥରେ ଭାସି ବୁଲୁଛନ୍ତି । (କୁର୍‌ଆନ ୨୧ / ୩୩)**

ମହାମାନ୍ୟ ମୁହମ୍ମଦଙ୍କ ଭଳି ଜଣେ ନିରକ୍ଷର ବ୍ୟକ୍ତିଙ୍କ ପକ୍ଷରେ ମହାକାଶରେ ଥିବା କକ୍ଷପଥ ଏବଂ ଗ୍ରହ ନକ୍ଷତ୍ରଗୁଡ଼ିକର ଗତିବିଧି ସମ୍ପର୍କରେ ସଠିକ୍ ରୂପେ ଜାଣିବା ଆଦିଷ୍ଟବାଣୀ ବିନା କିପରି ସମ୍ଭବ ?

### ୪. ସପ୍ତ ଆକାଶମଣ୍ଡଳ

ପୃଥିବୀପୃଷ୍ଠ ଉପରେ ଆକାଶର ସାତୋଟି ସ୍ତର ଥିବା ଆଧୁନିକ ବିଜ୍ଞାନର ଏକ ସଦ୍ୟତମ ଆବିଷ୍କାର । ବୈଜ୍ଞାନିକମାନେ କୁହନ୍ତି ଯେ, ଭୂମଣ୍ଡଳ ଉପରେ ଗୋଟିଗୋଟି କରି ସାତୋଟି ସ୍ତର ରହିଛି ।[11] ସେଗୁଡ଼ିକ ହେଲା—

(୧) ଟ୍ରପୋସ୍‌ଫିୟର୍ (Troposphere)
(୨) ଷ୍ଟ୍ରାଟୋସ୍‌ଫିୟର୍ (Stratosphere)
(୩) ଓଜୋନ୍‌ସ୍ଫିୟର୍ (Ozonesphere)
(୪) ମେସୋସ୍‌ଫିୟର୍ (Mesosphere)
(୫) ଥର୍ମୋସ୍‌ଫିୟର୍ (Thermosphere)
(୬) ଆଇଓନୋସ୍-ଫିୟର୍ (Ionosphere)
(୭) ଏକ୍‌ଜୋସ୍‌ଫିୟର୍ (Exosphere)

ଟ୍ରପୋସ୍‌ଫିୟର୍ ହେଉଛି ବାୟୁମଣ୍ଡଳର ସବୁଠାରୁ ନିମ୍ନଭାଗ । ଏହା ଭୂପୃଷ୍ଠରୁ ପ୍ରାୟ ୧୩ରୁ ୧୫କି.ମି. ଉପରକୁ ବ୍ୟାପି ରହିଛି । ଏହିଠାରେ ବରଫ ଓ ମେଘ ସୃଷ୍ଟି ହୁଏ । ଏହି ସ୍ତର ଭୂପୃଷ୍ଠରୁ ଉପରକୁ ଯାଉଥିବା ବାଷ୍ପକୁ ଘନୀଭୂତ କରି ବର୍ଷା ରୂପରେ ପୃଥିବୀକୁ ଫେରାଇଦିଏ । ଏହାର ଉପରେ ଓଜୋନ୍ ସ୍ତର ରହିଛି ଯାହାକି ଷ୍ଟ୍ରାଟୋସ୍‌ଫିୟର୍‌ର ଏକ ଅଂଶବିଶେଷ । ଏହି ସ୍ତର ଭୂପୃଷ୍ଠର ପ୍ରାୟ ୧୩ରୁ ୪୦କିଲୋମିଟର ଊର୍ଦ୍ଧ୍ୱରେ ଅବସ୍ଥିତ । ଏହା ମହାଶୂନ୍ୟରୁ ଆସୁଥିବା ଅନେକ କ୍ଷତିକାରକ ରଶ୍ମୀଗୁଡ଼ିକୁ ଅବରୋଧ କରି ପୁଣି ମହାଶୂନ୍ୟକୁ ପଠାଇଦିଏ । ଜୀବଜଗତ ପାଇଁ ଆବଶ୍ୟକ ହେଉଥିବା ଲାଭକାରୀ କିରଣ ଓଜୋନ୍‌ସ୍ତର ଦ୍ୱାରା ଛାଣି ହୋଇ ଭୂପୃଷ୍ଠକୁ ଆସେ । ଏହା ଉପରେ ଅନ୍ୟ ସ୍ତରଗୁଡ଼ିକ ରହିଛି । ପବିତ୍ର କୁର୍‌ଆନ ସାତୋଟି ଆକାଶମଣ୍ଡଳ ରହିଥିବା ବିଷୟରେ ବର୍ଣ୍ଣନା କରି କହିଛି—

**ତୁମମାନଙ୍କ ଉପରେ ଆମ୍ଭେ (ସ୍ତର ସ୍ତର କରି) ସାତଗୋଟି ଆକାଶ ସୃଷ୍ଟି କରିଛୁ ଆଉ ଆମ୍ଭେ ନିଜ ସୃଷ୍ଟିକୁ ଭୁଲିଯାଇ ନାହୁଁ । (କୁରଆନ ୨୩/୧୭)**

ଦୈବବାଣୀ ବିନା ସପ୍ତ ଆକାଶର ରହସ୍ୟ ଜାଣିବା ମହାମାନ୍ୟ ମୁହମ୍ମଦଙ୍କ ପକ୍ଷରେ ସମ୍ଭବପର ନଥିଲା । ତେଣୁ, କୁରଆନ ମାନବ ରଚନା ହୋଇ ନପାରେ ।

---

(11) Harun Yahya in 'Miracles of the Qur'an', Canada, 2000, p.29)

### ୫. ଆକାଶ ଜୀବଜଗତକୁ ସୁରକ୍ଷା ଦିଏ

ଘରର ଛାତ ଆମକୁ ଖରା ବର୍ଷା ଆଦିରୁ ସୁରକ୍ଷା ଦିଏ ବୋଲି ସମସ୍ତେ ଜାଣନ୍ତି; କିନ୍ତୁ ଆକାଶ କିପରି ସୁରକ୍ଷା ଦିଏ ଏହା ମଣିଷ ଜାଣି ନଥିଲା । ଏହି ସତ୍ୟକୁ ବିଜ୍ଞାନ ବିଂଶ ଶତାବ୍ଦୀରେ ଆବିଷ୍କାର କଲା ଯେ ଭୂପୃଷ୍ଠ ଉପରେ ଏକ ସୁସଙ୍ଗଠିତ ସୁରକ୍ଷା ବ୍ୟବସ୍ଥା କାର୍ଯ୍ୟ କରୁଛି ଯାହା ପୃଥିବୀକୁ ଅନେକ ବିପଦରୁ ରକ୍ଷା କରୁଛି । ପ୍ରଥମତଃ ଉଦ୍ଭିଦଗୁଡ଼ିକର ଫଟୋସିନ୍‌ଥେସିସ୍ ପ୍ରକ୍ରିୟା ପାଇଁ ଆବଶ୍ୟକ ହେଉଥିବା ଅଲଟ୍ରା ଭାଇଓଲେଟ୍ ରଶ୍ମି ସୂର୍ଯ୍ୟଠାରୁ ଓଜୋନ୍‌ସ୍ତର ଦ୍ୱାରା ଛାଣିହୋଇ ଭୂପୃଷ୍ଠକୁ ଆସେ । ଓଜୋନ୍‌ସ୍ତର ଉଦ୍ଭିଦ ଓ ଜୀବଜଗତ ପ୍ରତି କ୍ଷତିକାରକ କିରଣକୁ ଭୂପୃଷ୍ଠକୁ ଆସିବାକୁ ଦିଏନାହିଁ, ବରଂ ଏହାକୁ ବାଧାଦେଇ ପୁଣି ଉପରକୁ ପଠାଇଦିଏ । ଓଜୋନ୍ ସ୍ତର ୧୯୧୩ ଖ୍ରୀଷ୍ଟାବ୍ଦରେ ଫରାସୀ ବୈଜ୍ଞାନିକ Charles Fabry ଏବଂ Henri Buissonଙ୍କ ଦ୍ୱାରା ଆବିଷ୍କୃତ ହେଲା (ୱିକିପିଡ଼ିଆ) ।

ଦ୍ୱିତୀୟତଃ, ମହାକାଶରେ ଅସଂଖ୍ୟ ବୃହତ୍ତାକାର ଶିଳାଖଣ୍ଡ (Meteors) ବା ଉଲ୍‌କା ଭାସୁଛନ୍ତି ଯେଉଁମାନଙ୍କ ମଧ୍ୟରେ ସଂଘର୍ଷ ମଧ୍ୟ ହୁଏ । ଏହା ଫଳରେ ସେଗୁଡ଼ିକ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଆକର୍ଷିତ ହୋଇ ଦ୍ରୁତଗତିରେ ପୃଥିବୀ ଆଡ଼କୁ ଆସନ୍ତି, ଯାହାକି ଆମ ପୃଥିବୀ ପାଇଁ ଅତ୍ୟନ୍ତ ବିପଜ୍ଜନକ । କିନ୍ତୁ ଏହି ଶିଳାଖଣ୍ଡଗୁଡ଼ିକ ପୃଥିବୀରେ ପହଞ୍ଚିବା ପୂର୍ବରୁ ବାୟୁମଣ୍ଡଳର ଘର୍ଷଣଦ୍ୱାରା ନଷ୍ଟ ହୋଇଯାଆନ୍ତି । ଯଦି ଭୂପୃଷ୍ଠ ଉପରେ ବାୟୁମଣ୍ଡଳ ନଥାଆନ୍ତା, ତେବେ ଏହି ବିଶାଳକାୟ ଉଲ୍‌କାଖଣ୍ଡଗୁଡ଼ିକ ପୃଥିବୀପୃଷ୍ଠରେ ପଡ଼ନ୍ତା ।

ତୃତୀୟତଃ, ଉପରିସ୍ଥ ବାୟୁମଣ୍ଡଳ ସୂର୍ଯ୍ୟଠାରୁ ଆସୁଥିବା ଉତ୍ତାପକୁ ନିୟନ୍ତ୍ରଣ କରି ଭୂପୃଷ୍ଠକୁ ଛାଡ଼େ । ଯଦି ପୃଥିବୀକୁ ଏହି ବାୟୁମଣ୍ଡଳ ସ୍ତର ଘେରିହୋଇ ରହି ନଥାଆନ୍ତା, ତେବେ ସୂର୍ଯ୍ୟର ତେଜସ୍ୱୀ କିରଣ ସବୁକିଛି ପୋଡ଼ି ପାଉଁଶ କରିଦିଅନ୍ତା । ତେଣୁ, କୁର୍‌ଆନ ଆକାଶକୁ ଏକ 'ସୁରକ୍ଷା ପ୍ରଦାନକାରୀ ଛାତ' ବୋଲି କହିଛି—

**ଆମ୍ଭେ ଆକାଶକୁ (ଜୀବଜଗତ ପାଇଁ) ଏକ ସୁରକ୍ଷା ପ୍ରଦାନକାରୀ ଛାତ ରୂପେ ସୃଷ୍ଟି କଲୁ, ମାତ୍ର ଏମାନେ ଆମ୍ଭର ନିଦର୍ଶନ ଗୁଡ଼ିକ ପ୍ରତି ଧ୍ୟାନ ଦେଉ ନାହାନ୍ତି । (୨୧/୩୨)**

ସପ୍ତମ ଶତାବ୍ଦୀର ମାନବଜଗତ କୁରଆନର ଏହି ବାଣୀର ଅର୍ଥ ବୁଝିବାକୁ ସମର୍ଥ ନଥିଲା, କାରଣ ଏହା କେବଳ ବିଂଶ ଶତାବ୍ଦୀର ବିଜ୍ଞାନର ଆବିଷ୍କାର । ଆଦିଷ୍ଟବାଣୀ ବିନା ମହାକାଶ ବିଷୟରେ ଏଭଳି ସୂଚନା ଦେବା ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣୁ କୁର୍‌ଆନ ଈଶ୍ୱରଙ୍କ ବାଣୀ, ଏଥିରେ ସନ୍ଦେହର ଅବକାଶ ନାହିଁ ।

### ୬. ପାହାଡ଼ ସୃଷ୍ଟିର ରହସ୍ୟ

ଭୂତତ୍ତ୍ୱବିଦ୍‌ମାନେ କୁହନ୍ତି ଯେ ପୃଥିବୀର ବ୍ୟାସାର୍ଦ୍ଧ ପ୍ରାୟ ୩୭୫୦ ମାଇଲ୍ । ଏହାର ଉପରସ୍ତର ଯେଉଁଥିରେ ମଣିଷ ବସବାସ କରେ, କଠିନ ଶିଳାମୟ, ଯାହା ୬କି.ମି.ରୁ ୭୦କି.ମି. ପର୍ଯ୍ୟନ୍ତ ଗଭୀର । ଏହାକୁ Crust କୁହାଯାଏ । ଏହାର ନିମ୍ନ ସ୍ତରଗୁଡ଼ିକ କିନ୍ତୁ ଅତି ଉତ୍ତପ୍ତ ତରଳ ଲାଭା । ଉପର ସ୍ତର ପତଳା ହୋଇଥିବାରୁ ପୃଥିବୀ ହଲିବାର ସମ୍ଭାବନା ଥାଏ । ପାହାଡ଼ ପର୍ବତଗୁଡ଼ିକ ପୃଥିବୀପୃଷ୍ଠକୁ ସ୍ଥିର ରଖିବାର କାର୍ଯ୍ୟ କରେ । ଏଗୁଡ଼ିକର ମୂଳ ମାଇଲ ମାଇଲ ଗଭୀରକୁ ଯାଇଛି ଏବଂ ଭୂପୃଷ୍ଠରେ ଖିଲ ବା କୀଳା ପରି କାର୍ଯ୍ୟ କରେ, ଯାହାଫଳରେ ପୃଥିବୀ ହଲଚଲ ନ ହୋଇ ସ୍ଥିର ରହେ । ପର୍ବତଶୃଙ୍ଖଳା (Mountain Range)ଗୁଡ଼ିକର ପ୍ରସ୍ଥ ୧୦-୧୦୦କି.ମି. ଏବଂ ଦୈର୍ଘ୍ୟ ୧୦୦୦କି.ମି. ପର୍ଯ୍ୟନ୍ତ ବ୍ୟାପିଥାଏ ।

ଫ୍ରାଙ୍କ୍ ପ୍ରେସ୍ ବାରବର୍ଷ ଆମେରିକା ସାଇନ୍ସ ଏକାଡେମୀର ଅଧ୍ୟକ୍ଷ ଥିଲେ ଏବଂ ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜିମି କାର୍ଟର୍‌ଙ୍କ ବୈଜ୍ଞାନିକ ପରାମର୍ଶଦାତା ଥିଲେ । ଭୂତତ୍ତ୍ୱର ଏକ ପାଠ୍ୟପୁସ୍ତକ '"Earth" ର ସେ ଅନ୍ୟତମ ଲେଖକ । ସେ ଏହି ପୁସ୍ତକରେ ପାହାଡ଼ର ଚେର ଭୂପୃଷ୍ଠ ଭିତରକୁ ଗଭୀର ପର୍ଯ୍ୟନ୍ତ ଲମ୍ବିଥିବାର କହିଛନ୍ତି । ସେ ମତ ଦିଅନ୍ତି ଯେ, ଭୂପୃଷ୍ଠର ଉପରିଭାଗକୁ ସ୍ଥିର ରଖିବାରେ ପାହାଡ଼ଗୁଡ଼ିକ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି ।[12] କୁର୍‌ଆନ ମନୁଷ୍ୟକୁ ଏହାର ଖବର ଦେଇ କହୁଛି—

**କ'ଣ ଆମ୍ଭେ ଭୂପୃଷ୍ଠକୁ ଏକ (ସମତଳ) ଶଯ୍ୟା ରୂପେ ଗଢ଼ିନାହୁଁ ଏବଂ ପର୍ବତଗୁଡ଼ିକୁ କୀଳା ରୂପେ (ପୋତିନାହୁଁ) ? (କୁର୍‌ଆନ ୭୮/୬-୭)**

ପୁନଶ୍ଚ କହିଛି –

**ଆମ୍ଭେ ଭୂପୃଷ୍ଠରେ ସୁଦୃଢ଼ ପର୍ବତମାନ ସ୍ଥାପିତ କରିଅଛୁ ଯେପରିକି ଏହା ସେମାନଙ୍କୁ ନେଇ ହଲି ନଯାଉ । (କୁର୍‌ଆନ ୨୧ / ୩୧)**

କୁର୍‌ଆନ ସ୍ୱଷ୍ଟ କହୁଛି ଯେ, ପୃଥିବୀକୁ ସ୍ଥିର ରଖିବା ପାହାଡ଼ଗୁଡ଼ିକର କାର୍ଯ । ପାହାଡ଼ଗୁଡ଼ିକ ଯେ ତଳକୁ ଅନେକ ମାଇଲ ଗଭୀରକୁ ଯାଇଛି, ଏହା ୧୮୬୫ ମସିହାରେ Royal Siv George Airyଙ୍କ ଦ୍ୱାରା ଆବିଷ୍କୃତ ହେଲା । ଚଉଦଶହ ବର୍ଷ ପୂର୍ବେ ପାହାଡ଼ ପର୍ବତଗୁଡ଼ିକର କାର୍ଯ୍ୟ ସମ୍ପର୍କରେ ମହାମାନ୍ୟ ମୁହମ୍ମଦ କେଉଁ ସୂତ୍ରରୁ ଜାଣିଲେ ?

### ୭. ଜୀବଜଡ଼ର ଯୁଗଳ ସୃଷ୍ଟି

ପବିତ୍ର କୁର୍‌ଆନ କହେ ଯେ ସୃଷ୍ଟିର ପ୍ରତ୍ୟେକ ଜୀବଜଡ଼ ଯୋଡ଼ି ରୂପେ ସୃଷ୍ଟି କରାଯାଇଛି —

**ପରମ ପବିତ୍ର ସେଇ ସତ୍ତା ଯିଏ ଧରିତ୍ରୀରୁ ଜାତ ସମସ୍ତ ବସ୍ତୁକୁ ଯୋଡ଼ି ରୂପେ ସୃଷ୍ଟି କଲେ, ସେମାନଙ୍କୁ ତଥା ସେହି ବସ୍ତୁଗୁଡ଼ିକୁ ମଧ୍ୟ, ଯାହାକୁ ସେମାନେ ଜାଣି ନାହାନ୍ତି ।**

**(କୁର୍‌ଆନ ୩୬/୩୬)**

ମଣିଷ, ପଶୁପକ୍ଷୀ, ଉଦ୍ଭିଦ, କୀଟପତଙ୍ଗ ସମସ୍ତଙ୍କ ମଧ୍ୟରେ ଅଣ୍ଡିରା ଓ ମାଈ ଅଛନ୍ତି, ଏବିଷୟରେ ସମସ୍ତେ ଜାଣନ୍ତି, କିନ୍ତୁ ଅନ୍ୟ ସମସ୍ତ ଜୀବ-ଜଡ଼ ଗୁଡ଼ିକୁ ମଧ୍ୟ ଯୋଡ଼ି ରୂପେ ସୃଷ୍ଟି କରାଯାଇଛି । ଉଦାହରଣ ସ୍ୱରୂପ, ବିଦ୍ୟୁତ୍‌ଶକ୍ତିରେ ନେଗେଟିଭ ଓ ପଜିଟିଭ୍ ଉଭୟ ଚାର୍ଜ ରହିଛି । କୁରଆନ ପ୍ରକଟ ହେବା ସମୟରେ ବିଦ୍ୟୁତର ଉଦ୍ଭାବନ ହୋଇନଥିଲା । ପ୍ରତ୍ୟେକ ଅଣୁରେ ମଧ୍ୟ ଉଭୟ ଇଲୋକ୍ଟ୍ରୋନ୍ ଓ ପ୍ରୋଟନ୍ ରହିଛି ।

ବ୍ରିଟିଶ ବୈଜ୍ଞାନିକ Paul Dirac, ପଦାର୍ଥ ଯୁଗଳଭାବେ ସୃଷ୍ଟି ହୋଇଛି ବୋଲି ଆବିଷ୍କାର କରି ୧୯୩୩ରେ ନୋବେଲ ପୁରସ୍କାର ପାଇଥିଲେ । ତେଣୁ, ବିଚାର କରିବା କଥା ଯେ ଏଭଳି ସୂଚନା କୁରଆନରେ କିପରି ସ୍ଥାନ ପାଇଲା ?

କୁର୍‌ଆନରେ ଥିବା କେତୋଟି ବୈଜ୍ଞାନିକ ତଥ୍ୟ ସମ୍ପର୍କରେ ଆମେ ଏଠାରେ ଆଲୋଚନା କଲୁ । କୌଣସି ଘଟଣାର ବୈଜ୍ଞାନିକ ଆବିଷ୍କାରର ୧୪୦୦ ବର୍ଷ ପୂର୍ବରୁ କୁର୍‌ଆନରେ ତାହାର ଉଲ୍ଲେଖ ଆଶ୍ଚର୍ଯ୍ୟକର ନୁହେଁ କି ?

---

(12) "Earth", Press and Silver, p.453

ବିଶ୍ୱର ମହାନ ବୈଜ୍ଞାନିକମାନଙ୍କୁ ଏହା ଆଶ୍ଚର୍ଯ୍ୟଚକିତ କରିଛି ଏବଂ ସେମାନେ କୁର୍‌ଆନ ମାନବ ରଚନା ନୁହେଁ ବୋଲି ସ୍ୱୀକାର କରିଛନ୍ତି । ୧୯୮୧ରେ ସପ୍ତମ ମେଡିକାଲ କନ୍‌ଫରେନ୍ସରେ ଉଦବୋଧନ ଦେଇ କାନାଡ଼ାର ଟରେଣ୍ଟୋ ବିଶ୍ୱବିଦ୍ୟାଳୟର ଜୀବତତ୍ତ୍ୱବିତ୍ ପ୍ରଫେସର କିଥ୍ ମୁର୍ କହନ୍ତି—

''ମାନବର ବିକାଶ ପ୍ରକ୍ରିୟା ସମ୍ପର୍କରେ କୁର୍‌ଆନରେ ଥିବା ବକ୍ତବ୍ୟଗୁଡ଼ିକର ପୃଷ୍ଟିକରଣରେ ସହାୟତା କରିବା ମୋ ପାଇଁ ଅତି ଆନନ୍ଦର ବିଷୟ । ମୋ ପ୍ରତି ଏହା ସ୍ପଷ୍ଟ ହୋଇଯାଇଛି ଯେ ଏହି ବକ୍ତବ୍ୟଗୁଡ଼ିକ ନିଶ୍ଚୟ ଈଶ୍ୱର ବା ଅଲ୍ଲାହଙ୍କ ନିକଟରୁ ମୁହମ୍ମଦଙ୍କ ପାଖକୁ ଆସିଛି, କାରଣ ପ୍ରାୟ ସବୁଗୁଡ଼ିକର ଜ୍ଞାନ ପରବର୍ତ୍ତୀ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନଥିଲା । ଏହା ପ୍ରମାଣିତ କରେ ଯେ, ମୁହମ୍ମଦ ନିଶ୍ଚୟ ଈଶ୍ୱର ବା ଅଲ୍ଲାହଙ୍କର ଜଣେ ବାର୍ତ୍ତାବହ ।''(13)

କାନାଡ଼ାର ମାନିଟୋବା ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଟି.ଭି.ଏନ୍. ପରସଦ କୁହନ୍ତି—

''ମୋର ମନେହୁଏ ଯେ ମୁହମ୍ମଦ ଜଣେ ଅତି ସାଧାରଣ ବ୍ୟକ୍ତି ଥିଲେ, ଯିଏ ପଢ଼ି ବା ଲେଖି ପାରୁନଥିଲେ ଏବଂ ପ୍ରକୃତରେ ନିରକ୍ଷର ଥିଲେ । ... ଆମେ ୧୪୦୦ବର୍ଷ ପୂର୍ବକଥାର ଆଲୋଚନା କରୁଛୁ । ଆପଣ ଦେଖୁଛନ୍ତି ଯେ, ଜଣେ ନିରକ୍ଷର ବ୍ୟକ୍ତି ବିଜ୍ଞାନ ସମ୍ବନ୍ଧୀୟ ତଥ୍ୟଗୁଡ଼ିକ ବିଷୟରେ ଆଶ୍ଚର୍ଯ୍ୟଜନକ ରୂପେ ଅତି ନିର୍ଭୁଲ ଘୋଷଣା କରୁଛନ୍ତି । ମୁଁ ନିଜେ ଜାଣିପାରୁ ନାହିଁ ଯେ ଏହା କେବଳ ଆକସ୍ମିକ ଭାବରେ କିପରି ସମ୍ଭବ (କାରଣ) ବହୁତ ନିର୍ଭୁଲ ତଥ୍ୟ ରହିଛି ଏବଂ ଡକ୍ଟର ମୁର୍‌ଙ୍କ ପରି ମୋର ଏଥିରେ ସମ୍ମତ ହେବାରେ କୌଣସି ଅସୁବିଧା ନାହିଁ ଯେ ତାଙ୍କର (ମୁହମ୍ମଦଙ୍କର) ବକ୍ତବ୍ୟଗୁଡ଼ିକ ଦୈବୀପ୍ରେରଣ ବା ଦୈବୀବାଣୀ ବଳରେ ଦିଆଯାଇଛି ।''(14)

ସେହିପରି ଜାପାନର ମହାକାଶବିଜ୍ଞାନୀ ଡଃ ୟୋସିଦ୍ କୁସାନ୍ କୁହନ୍ତି—

''କୁର୍‌ଆନରେ ଜ୍ୟୋର୍ତିବିଜ୍ଞାନ ସମ୍ବନ୍ଧୀୟ ନିର୍ଭୁଲ ତଥ୍ୟଗୁଡ଼ିକ ଦେଖି ମୁଁ ଅତିଶୟ ପ୍ରଭାବିତ ହୋଇଛି ଏବଂ ଆମେ ଜାଣୁ ଯେ ଆଧୁନିକ ଜ୍ୟୋର୍ତିବିଜ୍ଞାନୀମାନେ ବ୍ରହ୍ମାଣ୍ଡର ଅତି କ୍ଷୁଦ୍ର ଅଂଶ ଉପରେ ଅଧ୍ୟୟନ କରିଆସୁଛନ୍ତି । ଆମ ପ୍ରଚେଷ୍ଟାକୁ ଆମେ ଅତି କ୍ଷୁଦ୍ରଭାଗ ମଧ୍ୟରେ କେନ୍ଦ୍ରୀଭୂତ କରିଛୁ, କାରଣ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଆମେ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡ ବିଷୟରେ କଳ୍ପନା ନକରି କେବଳ ଏହାର ଆକାଶର କିଛି ଅଂଶକୁ ଦେଖିପାରୁଛୁ । ତେଣୁ, ମୁଁ ଭାବୁଛି କୁର୍‌ଆନର ଅଧ୍ୟୟନ ଦ୍ୱାରା ଏବଂ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବାଦ୍ୱାରା ମୁଁ ଭବିଷ୍ୟତରେ ବ୍ରହ୍ମାଣ୍ଡ ବିଷୟରେ ଅନୁସନ୍ଧାନ କରିବାପାଇଁ ପଥ ପାଇପାରିବି ।''(15)

ଡକ୍ଟର ମରିସ୍ ବୁକାଏ ପ୍ୟାରିସ୍ ବିଶ୍ୱବିଦ୍ୟାଳୟର ଫ୍ରେଞ୍ଚ ଏକାଡେମୀ ଅଫ୍ ମେଡ଼ିସିନ୍‌ର ଜଣେ ସଭ୍ୟ । ନିଜର ପ୍ରସିଦ୍ଧ ପୁସ୍ତକ "The Bible, The Quran and Science" ରେ ଡଃ ବୁକାଏ କୁର୍‌ଆନ ଓ ବାଇବଲ୍ ଉପରେ ବିଭିନ୍ନ ଦିଗରୁ ବିଶେଷକରି ବୈଜ୍ଞାନିକ ଦୃଷ୍ଟିକୋଣରୁ ତୁଳନାତ୍ମକ ଆଲୋଚନା କରି ଏହା ପ୍ରମାଣିତ କରିଛନ୍ତି ଯେ କୁର୍‌ଆନ ସମ୍ପୂର୍ଣ୍ଣ ବିଜ୍ଞାନସମ୍ମତ ଏବଂ ଏଥିରେ କୌଣସି ବୈଜ୍ଞାନିକ ତ୍ରୁଟି ନାହିଁ । ଡକ୍ଟର ବୁକାଏ କହନ୍ତି—

---

(13) Prof. L.Keith Moore, Professor Emeritus, Department of Anatomy & Cell Biology, University of Toronto

(14) Prof. T.V.N.Persaud, Professor of Anatomy, and Professor of Paediatrics and Child Health, University of Manitoba, Winnipeg, Manitoba, Canada)

15) Dr. Yoshihide Kusan, Director of the National Astronomical Observatory, Tokyo, Japan

[Video clips of the scientists can be watched at the website www.Islam-guide.com]

''ବାଇବଲ୍‌ରେ ବଡ଼ ଧରଣର ତ୍ରୁଟି ରହିଥିବାବେଳେ ମୁଁ କୁର୍‌ଆନରେ ଗୋଟିଏ ହେଲେ ତ୍ରୁଟି ଖୋଜି ପାଇଲି ନାହିଁ । ଟିକିଏ ରହି ମୁଁ ନିଜକୁ ପଚାରିଲି—ଯଦି ଜଣେ ମଣିଷ କୁର୍‌ଆନର ସ୍ରଷ୍ଟା ହୁଏ, ତେବେ ସେ କିପରି ସପ୍ତମ ଶତାବ୍ଦୀରେ ଏଭଳି ତଥ୍ୟଗୁଡ଼ିକ ଲେଖିଥିବ ଯାହାକି ଆଜିର ଆଧୁନିକ ବିଜ୍ଞାନ ଦ୍ୱାରା ସମ୍ପୂର୍ଣ୍ଣ ସମର୍ଥିତ ? ମୁହମ୍ମଦଙ୍କୁ କୁର୍‌ଆନର ଲେଖକ ବୋଲି ମନେ କରୁଥିବା ଲୋକମାନଙ୍କର ଅନୁମାନ ଯଥାର୍ଥ ନୁହେଁ ବୋଲି ଉପରୋକ୍ତ ପର୍ଯ୍ୟବେକ୍ଷଣ ପ୍ରମାଣିତ କରୁଛି । ଜଣେ ନିରକ୍ଷର ବ୍ୟକ୍ତି କିପରି ସମଗ୍ର ଆରବ ସାହିତ୍ୟ ଜଗତରେ ସାହିତ୍ୟିକ ମୂଲ୍ୟବୋଧ ଭିତ୍ତିକ ଏକ ମହାନ ଗ୍ରନ୍ଥ ଲେଖିଦେଇପାରିବ ? କିପରି ସେ ବୈଜ୍ଞାନିକ ପ୍ରକୃତିର କୌଣସି ସତ୍ୟର ଘୋଷଣା କରିପାରିବ, ଯାହାକି ସେ ସମୟରେ କୌଣସି ମଣିଷ ଦ୍ୱାରା ଜାଣିବା ସମ୍ଭବ ନଥିଲା ଏବଂ ତାହା ମଧ୍ୟ ବିଷୟବସ୍ତୁରେ ଥରେ ହେଲେ ସାମାନ୍ୟ ତ୍ରୁଟି ନ କରି ?''[16]

'ମହାମାନ୍ୟ ମୁହମ୍ମଦ' ପୁସ୍ତକରେ ଏ ବିଷୟରେ ମୁଁ ବିଶଦ ଭାବରେ ଆଲୋଚନା କରିଛି । ସତ୍ୟ ସବୁ ଯୁଗରେ ସତ୍ୟ ରହେ । ଏହାକୁ ସାହିତ୍ୟିକ, ତାତ୍ତ୍ୱିକ, ନୈତିକ, ବୈଧାନିକ ବା ଯେକୌଣସି ଦୃଷ୍ଟିରୁ ପରୀକ୍ଷା କଲେ ମଧ୍ୟ ଏହା ନିଜର ସତ୍ୟତା ପ୍ରତିପାଦନ କରିବ । କୁରଆନର ଏହି ବୈଜ୍ଞାନିକ ତଥ୍ୟଗୁଡ଼ିକ ସ୍ୱଷ୍ଟ ରୂପେ ପ୍ରମାଣିତ କରେ ଯେ କୁର୍‌ଆନ କୌଣସି ମଣିଷର ସୃଷ୍ଟି ନୁହେଁ, ଏହା ଈଶ୍ୱରବାଣୀ ।

**ଶକୀଲ୍ ଅହମଦ**



---

[16] Dr. Maurice Bucaille, The Bible, the Qur'an and Science, Idara Isha'at-e-Diniyat, New Delhi, 2002, pp.119-125

# ବିଷୟ ସୂଚୀ

୭୪. ସମସ୍ତଙ୍କ ସହ ଉଚିତ ବ୍ୟବହାର କର
୭୫. ଲୋକଙ୍କୁ କୃପଣତା ଶିଖାଅ ନାହିଁ
୭୬. ଅଲ୍ଲାହ୍ କାହାରି ପ୍ରତି ଅନ୍ୟାୟ କରନ୍ତି ନାହିଁ
୭୭. ଅମାନତ ଫେରାଅ ଏବଂ ଉଚିତ ନ୍ୟାୟ କର
୭୮. ଈଶ୍ୱର ଓ ଈଶ୍ୱରଦୂତଙ୍କ ନିଷ୍ପତ୍ତି ହିଁ ଅନ୍ତିମ ନିଷ୍ପତ୍ତି
୭୯. କୁକର୍ମ ଯୋଗୁଁ ମଣିଷର ଅମଂଗଳ ହୁଏ
୮୦. ଈଶ୍ୱରଦୂତଙ୍କ ଆଜ୍ଞା ମଧ୍ୟ ଈଶ୍ୱରଙ୍କ ଆଜ୍ଞା
୮୧. କୁରଆନ ମାନବ ରଚନା ନୁହେଁ
୮୨. ଅସତକର୍ମର ଅନୁମୋଦନ ମଧ୍ୟ ପାପ
୮୩. ଶୁଭେଚ୍ଛାର ଉଚିତ ପ୍ରତ୍ୟୁତ୍ତର ଦିଅ
୮୪. ନିର୍ଦ୍ଧାରିତ ସମୟରେ ନମାଜପାଠ ଅପରିହାର୍ଯ୍ୟ
୮୫. କ୍ଷମାପ୍ରାର୍ଥନା କଲେ ନିଶ୍ଚୟ କ୍ଷମା କରିଦିଆଯିବ
୮୬. କାହାରି ପ୍ରତି ମିଥ୍ୟାରୋପ କରିବା ମହାପାପ
୮୭. ବୁଝାମଣା କରାଇଦେବା ଏକ ମହତ କାର୍ଯ୍ୟ
୮୮. ମଣିଷ ନିଜପାଇଁ ଯେଉଁ ରାସ୍ତା ବାଛେ, ସେଇ ରାସ୍ତାରେ ତାକୁ ଛାଡ଼ିଦିଆଯାଏ
୮୯. ଅନ୍ୟର ଉପାସନା ଅକ୍ଷମଣୀୟ ଅପରାଧ
୯୦. ତୁମର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ
୯୧. ନ୍ୟାୟ କରିବାରେ ପକ୍ଷପାତ କର ନାହିଁ
୯୨. ଧର୍ମର ମୌଳିକ ବିଶ୍ୱାସ
୯୩. ଈଶ୍ୱର ଅକାରଣରେ ଶାସ୍ତି ଦିଅନ୍ତି ନାହିଁ
୯୪. ପରନିନ୍ଦା କରନାହିଁ
୯୫. ଉପକାର କର ଏବଂ ଅପକାର କ୍ଷମା କରିଦିଅ
୯୬. ଈଶ୍ୱରଦୂତମାନଙ୍କ ଆବିର୍ଭାବର କାରଣ
୯୭. ବର୍ତ୍ତାବହଙ୍କୁ ମାନିନେଲେ ତୁମର ମଂଗଳ ହେବ
୯୮. ଧର୍ମକୁ ଅତିରଂଜିତ କରନାହିଁ
୯୯. ସତକାର୍ଯ୍ୟରେ ପରସ୍ପରକୁ ସହଯୋଗ କର
୧୦୦. ନିଷିଦ୍ଧ ଆଚାର
୧୦୧. ଶତ୍ରୁ ପ୍ରତି ମଧ୍ୟ ଅନ୍ୟାୟ କର ନାହିଁ
୧୦୨. ଈଶ୍ୱରବାଣୀକୁ ପ୍ରତ୍ୟାଖ୍ୟାନ କଲେ ନର୍କଦଣ୍ଡ
୧୦୩. ଈଶ୍ୱରଦୂତ ପୂର୍ବଗ୍ରନ୍ଥଗୁଡ଼ିକର ଶିକ୍ଷା ଦିଅନ୍ତି
୧୦୪. କେହି ଅଜ୍ଞତାର ବାହାନା କରିପାରିବ ନାହିଁ
୧୦୫. ମାନବ ଜୀବନର ମୂଲ୍ୟ
୧୦୬. ପ୍ରଭୁଙ୍କ ସାନ୍ନିଧ ଲାଭ କରିବାର ବାଟ ଖୋଜ
୧୦୭. ପୀଡ଼ିତର କ୍ଷମାଦାନ ତା' ପାପକ୍ଷୟ କରେ
୧୦୮. କୁରଆନ ପୂର୍ବଗ୍ରନ୍ଥଗୁଡ଼ିକର ସଂରକ୍ଷକ
୧୦୯. ଶାସ୍ତ୍ରଜ୍ଞମାନେ ଲୋକଙ୍କୁ ପାପରୁ ବିରତ ରଖନ୍ତୁ
୧୧୦. ଗ୍ରନ୍ଥଧାରୀମାନେ କୁରଆନର ଉପଦେଶ ମାନନ୍ତୁ
୧୧୧. ମାନବଜଗତକୁ କୁରଆନ ପହଁଚାଇଦିଅ
୧୧୨. କୁରଆନକୁ ଉପେକ୍ଷା କରନାହିଁ
୧୧୩. ମହାମାନ୍ୟ ଯିଶୁ ଜଣେ ଈଶ୍ୱରଦୂତ
୧୧୪. ଅନ୍ୟ କେହି ତୁମର ହାନୀ-ଲାଭ କରିବାକୁ ସମର୍ଥ ନୁହେଁ
୧୧୫. ବୈଧ ବସ୍ତୁକୁ ଅବୈଧ ଘୋଷଣା କରନାହିଁ
୧୧୬. ବଚନ ଭଂଗ କଲେ ପ୍ରାୟଶ୍ଚିତ କର
୧୧୭. ମଦ୍ୟପାନ ଓ ଜୁଆଖେଳ କୁତ୍ସିତ କର୍ମ
୧୧୮. ମଦ ଓ ଜୁଆ ଈଶ୍ୱରଚିନ୍ତନରେ ବାଧା ଦିଏ
୧୧୯. ଅବଜ୍ଞାକାରୀର ମାର୍ଗଦର୍ଶନ କରାଯାଏ ନାହିଁ
୧୨୦. ଅଲ୍ଲାହ୍ ସର୍ବବ୍ୟାପୀ ଓ ସର୍ବଜ୍ଞ
୧୨୧. ଅଲ୍ଲାହ ହିଁ ଆହାରଦାତା ଓ ତ୍ରାଣକର୍ତ୍ତା
୧୨୨. ସେ ହିଁ ଦୁଃଖହାରୀ
୧୨୩. ଗ୍ରନ୍ଥଧାରୀମାନେ କୁରଆନକୁ ଚିହ୍ନି ପାରନ୍ତି
୧୨୪. ସଂସାରଭୋଗ କେବଳ ଖେଳ-ତାମସା
୧୨୫. ମହାମାନ୍ୟ ମୁହମ୍ମଦ ଅଦୃଷ୍ଟର ଜ୍ଞାତା ନୁହନ୍ତି
୧୨୬. କୁରଆନ ଦ୍ୱାରା ଲୋକଙ୍କୁ ସାବଧାନ କର
୧୨୭. ଅଲ୍ଲାହ୍ ହିଁ ଅଦୃଷ୍ଟ କଥା ଜାଣନ୍ତି
୧୨୮. ସେ ରାତିରେ ଆତ୍ମାକୁ ହରଣ କରି ନିଅନ୍ତି
୧୨୯. ଅଲ୍ଲାହ୍ ହିଁ ସଂକଟହାରୀ
୧୩୦. କୁରଆନ ଦ୍ୱାରା ଉପଦେଶ ଦେଉଥାଅ
୧୩୧. ନିଜର ଭଗବତ୍-ଧାରଣାକୁ ବିଶୁଦ୍ଧ କର
୧୩୨. ଅଲ୍ଲାହ୍ କିଏ ?
୧୩୩. ଈଶ୍ୱରଙ୍କ ପତ୍ନୀ ବା ସନ୍ତାନ ନାହାନ୍ତି
୧୩୪. ଈଶ୍ୱର ଦୃଶ୍ୟମାନ ନୁହନ୍ତି
୧୩୫. କାହାରି ଉପାସ୍ୟର ଅପମାନ କର ନାହିଁ
୧୩୬. କୁରଆନରେ ପରିବର୍ତ୍ତନ ସମ୍ଭବ ନୁହେଁ
୧୩୭. ଅଧିକାଂଶ ଲୋକ ଅନୁମାନ ପଛରେ ଚାଲନ୍ତି
୧୩୮. ପ୍ରକାଶ୍ୟ ପାପ ଓ ଗୁପ୍ତ ପାପରୁ ବିରତ ରୁହ
୧୩୯. ଅସଂସ୍କୃତ ମାଂସ ଖାଅ ନାହିଁ
୧୪୦. ନିଜ ସନ୍ତାନର ହତ୍ୟା ମହାପାପ
୧୪୧. ଆମଦାନୀର ଗୋଟିଏ ଭାଗ ଦାନ କର
୧୪୨. ଧର୍ମର ମାର୍ଗ ସଳଖ
୧୪୩. ଧର୍ମରେ ବିଭାଜନ ଗୁରୁତର ଅପରାଧ
୧୪୪. କର୍ମଫଳର ନିୟମ
୧୪୫. ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କର
୧୪୬. କେହି କାହାରି ବୋଝ ମୁଣ୍ଡାଇବ ନାହିଁ

୧୪୭. କୁରଆନର ଉପଦେଶ ମାନି ଚଳ
୧୪୮. ଈଶ୍ୱରଦୂତମାନେ ମଧ୍ୟ ଉତ୍ତରଦାୟୀ
୧୪୯. ବିଚାର ଦିନ କର୍ମର ଓଜନ ହେବ
୧୫୦. ସେ ତୁମପାଇଁ ବସ୍ତ୍ର ସୃଷ୍ଟି କଲେ
୧୫୧. ଅଶ୍ଳୀଳତା, ଅନ୍ୟାୟ ଓ ଅତ୍ୟାଚାର ନିଷିଦ୍ଧ
୧୫୨. ଅନ୍ୟକୁ ଭୁଲ ବାଟରେ ନେଲେ ଦ୍ୱିଗୁଣ ଦଣ୍ଡ
୧୫୩. ଦୈବବାଣୀକୁ ପ୍ରତ୍ୟାଖ୍ୟାନ କଲେ ସ୍ୱର୍ଗପ୍ରାପ୍ତି ସମ୍ଭବ ନୁହେଁ
୧୫୪. ଆଜ୍ଞା ଦେବା କେବଳ ସ୍ରଷ୍ଟାଙ୍କ ଅଧିକାର
୧୫୫. ସମାଜରେ ବିଶୃଂଖଳା ସୃଷ୍ଟି କରନାହିଁ
୧୫୬. ମୃତମାନେ କିପରି ପୁନର୍ଜୀବିତ ହେବେ ?
୧୫୭. ପ୍ରଭୁଙ୍କ ପ୍ରକୋପକୁ ଭୟ କର
୧୫୮. ମହାମାନ୍ୟ ମୁହମ୍ମଦ ମାନବଜାତିର ମାର୍ଗଦର୍ଶକ
୧୫୯. ଦୃଢ଼ତାର ସହ କୁରଆନର ଅନୁପାଳନ କର
୧୬୦. ଇନ୍ଦ୍ରିୟ ବଶବର୍ତ୍ତୀ ହୁଅନାହିଁ
୧୬୧. ଅଲ୍ଲାହଙ୍କୁ ଉପଯୁକ୍ତ ନାମରେ ଡାକ
୧୬୨. ତୁମର ସବୁ ହାନିଲାଭ ଅଲ୍ଲାହଙ୍କ ହାତରେ
୧୬୩. ସୃଷ୍ଟିର ଉପାସନା କରନାହିଁ
୧୬୪. କ୍ଷମାର ନୀତି ଅବଲମ୍ବନ କର
୧୬୫. କୁଚିନ୍ତା ଆସିଲେ ଅଲ୍ଲାହଙ୍କୁ ସ୍ମରଣ କର
୧୬୬. କୁରଆନ୍‌ପାଠ ସମୟରେ ଧ୍ୟାନ ଦେଇ ଶୁଣ
୧୬୭. ସଂଜ ସକାଳେ ପ୍ରଭୁଙ୍କୁ ସ୍ମରଣ କର
୧୬୮. ପ୍ରକୃତ ଈଶ୍ୱରବିଶ୍ୱାସୀ କିଏ ?
୧୬୯. ଅଲ୍ଲାହ ବୁଦ୍ଧିହୀନ ଲୋକଙ୍କର ମାର୍ଗଦର୍ଶନ କରନ୍ତି ନାହିଁ
୧୭୦. ବିଶ୍ୱାସଘାତକତା କରନାହିଁ
୧୭୧. ଧନ ଓ ପରିବାର ତୁମ ପରୀକ୍ଷାର ମାଧ୍ୟମ
୧୭୨. ସଂଘର୍ଷ ବେଳେ ଦୃଢ଼ ଓ ଅବିଚଳିତ ରୁହ
୧୭୩. ଅର୍ନ୍ତଦ୍ୱନ୍ଦ ତୁମମାନଙ୍କୁ ଦୁର୍ବଳ କରିଦେବ
୧୭୪. ଯୁଦ୍ଧ ଅପେକ୍ଷା ସନ୍ଧି ଭଲ
୧୭୫. ଭକ୍ତକୁ ସବୁଠୁ ପ୍ରିୟ ତା' ପରମେଶ୍ୱର
୧୭୬. ଧର୍ମଗୁରୁ ବା ସାଧୁସନ୍ଥଙ୍କୁ ଈଶ୍ୱର କରିଦିଅ ନାହିଁ
୧୭୭. ଭଣ୍ଡ ଗୁରୁମାନେ ଲୋକଙ୍କ ଧନ ଖାଇଯାଆନ୍ତି
୧୭୮. ଧନ ସଂଚି ରଖିଲେ ନର୍କ ଯନ୍ତ୍ରଣା ଭୋଗିବ
୧୭୯. ଦାନ (ଜକାତ୍) କାହା ପାଇଁ ଉଦ୍ଦିଷ୍ଟ ?
୧୮୦. କପଟାଚାରୀମାନେ ନର୍କଦଣ୍ଡ ଭୋଗିବେ
୧୮୧. ବିପଦ ଟଳିଗଲେ ତୁମେ ଈଶ୍ୱରଙ୍କୁ ଭୁଲିଯାଅ
୧୮୨. ମାନବସମାଜ ଗୋଟିଏ ସଂପ୍ରଦାୟ ଥିଲା
୧୮୩. ପାର୍ଥିବ ବସ୍ତୁର ସୁଖ କ୍ଷଣସ୍ଥାୟୀ
୧୮୪. ପ୍ରକୃତ ଈଶ୍ୱର କିଏ ?
୧୮୫. କୁରଆନରେ ପୂର୍ବଗ୍ରନ୍ଥମାନଙ୍କର ଶିକ୍ଷା ରହିଛି
୧୮୬. ମାନବ ପକ୍ଷରେ କୁରଆନର ରଚନା ଅସମ୍ଭବ
୧୮୭. ଈଶ୍ୱର କାହାରି ପ୍ରତି ଅନ୍ୟାୟ କରନ୍ତି ନାହିଁ
୧୮୮. ଅଲ୍ଲାହ୍ ସର୍ବଦ୍ରଷ୍ଟା
୧୮୯. ଅଲ୍ଲାହଙ୍କ ମିତ୍ର କିଏ ?
୧୯୦. ଅନୁମାନ କରି ଉପାସନା କରନାହିଁ
୧୯୧. ମିଶରର ଶାସକ ଫ୍ୟାରୋର ଶବ ସୁରକ୍ଷିତ
୧୯୨. ଈଶ୍ୱର ଚାହିଁଲେ ସମଗ୍ର ବିଶ୍ୱ ମାନି ନିଅନ୍ତା
୧୯୩. ସେ ସଦ୍‌ବିଶ୍ୱାସୀମାନଙ୍କୁ ରକ୍ଷା କରନ୍ତି
୧୯୪. ଏକେଶ୍ୱରବାଦ ଏକ ପ୍ରାକୃତିକ ଧର୍ମଧାରଣା
୧୯୫. ଅଲ୍ଲାହ୍ ଅପ୍ରତିରୋଧ
୧୯୬. ଆହାର ଯୋଗାଇବା ଅଲ୍ଲାହଙ୍କ ଦାୟିତ୍ୱ
୧୯୭. ସୃଷ୍ଟିର ଉଦ୍ଦେଶ୍ୟ
୧୯୮. ସୁଖ ଓ ଦୁଃଖରେ ସ୍ଥିତପ୍ରଜ୍ଞ ରୁହ
୧୯୯. ନାସ୍ତିକମାନଙ୍କ ଭଲ କର୍ମର ଫଳ ସଂସାରରେ ମିଳିଯାଏ
୨୦୦. ସତ୍‌କର୍ମ ଅସତ୍ କର୍ମର ପ୍ରଭାବ ନଷ୍ଟ କରିଦିଏ
୨୦୧. ବିଶୃଂଖଳା ସୃଷ୍ଟିକାରୀମାନଙ୍କୁ ବାଧା ଦିଅ
୨୦୨. ଅକାରଣରେ ଜନବସତି ନଷ୍ଟ କରାଯାଏ ନାହିଁ
୨୦୩. ସମାଜରେ ବିଚାରଗତ ଭିନ୍ନତାର କାରଣ
୨୦୪. ଅଧିକାଂଶ ଲୋକ ଏକ ଈଶ୍ୱରଙ୍କୁ ମାନିବା ସତ୍ତ୍ୱେ ବହୁ ଈଶ୍ୱରଙ୍କ ଉପାସନା କରନ୍ତି
୨୦୫. ମହାମାନ୍ୟ ଈଶ୍ୱରଦୂତଗଣ ମାନବ ଥିଲେ
୨୦୬. ସୂର୍ଯ୍ୟ-ଚନ୍ଦ୍ର କକ୍ଷପଥରେ ପରିକ୍ରମା କରୁଛନ୍ତି
୨୦୭. ସୃଷ୍ଟିରେ ଈଶ୍ୱରଙ୍କର ବହୁ ନିଦର୍ଶନ ରହିଛି
୨୦୮. ତୁମ ସୁରକ୍ଷା ପାଇଁ ଦେବଦୂତ ନିଯୁକ୍ତ ଅଛନ୍ତି
୨୦୯. ମଣିଷର ଇଚ୍ଛା ନଥିଲେ ଅଲ୍ଲାହ ମାର୍ଗଦର୍ଶନ କରନ୍ତି ନାହିଁ
୨୧୦. କେବଳ ତାଙ୍କୁ ହିଁ ଡାକିବା ଠିକ୍
୨୧୧. ସକଳ ସୃଷ୍ଟି ତାଙ୍କର ଆଜ୍ଞାଧୀନ
୨୧୨. ବୈକୁଣ୍ଠବାସୀଙ୍କ ଲକ୍ଷଣ
୨୧୩. ରକ୍ତସଂପର୍କ କାଟିଲେ ନର୍କଦଣ୍ଡ ଭୋଗିବ
୨୧୪. ସଂସାରରେ ମଗ୍ନ ହୋଇଯାଅ ନାହିଁ
୨୧୫. ଅନୁତାପ କଲେ ଈଶ୍ୱର ମାର୍ଗଦର୍ଶନ କରନ୍ତି
୨୧୬. ପ୍ରଭୁଙ୍କୁ ସ୍ମରଣ କଲେ ମନକୁ ଶାନ୍ତି ମିଳିଥାଏ
୨୧୭. ପ୍ରତ୍ୟେକ ଯୁଗପାଇଁ ପୃଥକ ଗ୍ରନ୍ଥ ଦିଆ ଯାଇଥିଲା
୨୧୮. ବାର୍ତ୍ତାବହମାନେ ନିଜ ଭାଷାରେ ବାର୍ତ୍ତା ଦେଉଥିଲେ
୨୧୯. କୁରଆନ ସମଗ୍ର ମାନବଜଗତ ପାଇଁ ଉଦ୍ଦିଷ୍ଟ

୨୨୦. କୁରଆନର ସୁରକ୍ଷା ଈଶ୍ୱରଙ୍କ ଦାୟିତ୍ୱ
୨୨୧. ଅଲ୍ଲାହ ଜଗତପାଳକ
୨୨୨. ଏହି ସୃଷ୍ଟି ଉଦ୍ଦେଶ୍ୟହୀନ ନୁହେଁ
୨୨୩. ସତମାର୍ଗ ଦେଖାଇଦେବା ଈଶ୍ୱରଙ୍କ କର୍ତ୍ତବ୍ୟ
୨୨୪. ଉଭିଦଜଗତର ସୃଷ୍ଟି ତୁମରି ପାଇଁ
୨୨୫. ସୂର୍ଯ୍ୟ-ଚନ୍ଦ୍ର ତୁମରି ସେବାରେ ନିୟୋଜିତ
୨୨୬. ସାଗରଗୁଡ଼ିକ ତୁମରି ସେବାରତ
୨୨୭. ନଦୀ ଓ ପାହାଡ଼ର ସୃଷ୍ଟି ତୁମରି ପାଇଁ
୨୨୮. ସୃଷ୍ଟିର ଉପାସନା କରନାହିଁ
୨୨୯. ଲୋକମାନଙ୍କୁ କୁରଆନର ବାର୍ତ୍ତା ଦିଅ
୨୩୦. ତୁମକୁ ଯାହା ମିଳେ, ତାହା ପ୍ରଭୁଙ୍କ ଅନୁଗ୍ରହ
୨୩୧. ଈଶ୍ୱର ତୁରନ୍ତ ଦୋଷ ଧରନ୍ତି ନାହିଁ
୨୩୨. ପ୍ରଭୁଙ୍କ ଅନୁଗ୍ରହଗୁଡ଼ିକୁ ସ୍ୱୀକାର କର
୨୩୩. ଅନ୍ୟାୟ, ଅତ୍ୟାଚାର ଓ ଅଶ୍ଳୀଳତା ନିଷିଦ୍ଧ
୨୩୪. ନିଜର ପ୍ରତିଶ୍ରୁତି ପୂରଣ କର
୨୩୫. ସଦାଚାରୀଙ୍କ ପାର୍ଥିବ ଜୀବନ ମଧ ଆନନ୍ଦମୟ ହେବ
୨୩୬. ନିଷିଦ୍ଧ ଭୋଜନ
୨୩୭. ମନଇଚ୍ଛା ବିଧକୁ ଅବୈଧ ଆଖ୍ୟା ଦେଲେ ନର୍କଦଣ୍ଡ ଭୋଗିବ
୨୩୮. ବିଜ୍ଞତାର ସହ ଉପଦେଶ ଦିଅ
୨୩୯. କେହି ଅତ୍ୟାଚାର କଲେ ତାକୁ କ୍ଷମା କରିଦିଅ
୨୪୦. ଅଲ୍ଲାହ ପରୋପକାରୀମାନଙ୍କର ପରମ ମିତ୍ର
୨୪୧. ତୁମ କର୍ମକୁ ତୁମ ଗଳାର ହାର କରାଯାଇଛି
୨୪୨. ଯିଏ କର୍ମ କରେ ସେ ହିଁ ଫଳ ଭୋଗିବ
୨୪୩. ଈଶ୍ୱର ସାବଧାନ ନକରି ଦଣ୍ଡ ଦିଅନ୍ତି ନାହିଁ
୨୪୪. ପ୍ରଭୁଙ୍କର ଅବଜ୍ଞା ହେଲେ ଦୈବୀବିପତ୍ତି ଆସେ
୨୪୫. ପିତାମାତାଙ୍କୁ କଷ୍ଟ ଦିଅନାହିଁ
୨୪୬. ଆତ୍ମୀୟସ୍ୱଜନ ଓ ଦୀନଦୁଃଖୀଙ୍କୁ ସାହାଯ୍ୟ କର
୨୪୭. ମଧ୍ୟମ ମାର୍ଗ ଅବଲମ୍ବନ କର
୨୪୮. ଦାରିଦ୍ର୍ୟ ଭୟରେ ସନ୍ତାନର ହତ୍ୟା କର ନାହିଁ
୨୪୯. ବ୍ୟଭିଚାରର ପାଖ ମାଡ଼ ନାହିଁ
୨୫୦. କାହାରି ପ୍ରାଣ ନିଅନାହିଁ
୨୫୧. ଅନାଥମାନଙ୍କ ଧନ ଆତ୍ମସାତ କରନାହିଁ
୨୫୨. ମାପ-ଓଜନ ସଠିକ୍ ଭାବରେ କର
୨୫୩. ଅନୁମାନ ଆଧାରରେ କର୍ମ କରନାହିଁ
୨୫୪. ଅହଂକାର କର ନାହିଁ
୨୫୫. ପଥର ହୋଇଯାଅ ବା ଲୁହା, ପୁନର୍ଜୀବିତ ହେବ
୨୫୬. ଶିଷ୍ଟତା ପୂର୍ବକ କଥାବାର୍ତ୍ତା କର
୨୫୭. ମନୁଷ୍ୟ ସଂସାରର ସାରସୃଷ୍ଟି
୨୫୮. ପରମେଶ୍ୱରଙ୍କ ନୀତି ପରିବର୍ତ୍ତନଶୀଳ ନୁହେଁ
୨୫୯. ନିୟମିତ ଦୈନିକ ଉପାସନା କର
୨୬୦. ସମଗ୍ର ମାନବ ଜଗତ କୁରଆନ ପରି ଗ୍ରନ୍ଥ ରଚନା କରିବାକୁ ସମର୍ଥ ନୁହେଁ
୨୬୧. କୁରଆନ ବିଭିନ୍ନ ଶୈଳୀରେ ବୁଝାଇଛି
୨୬୨. କୌଣସି ଦେବତା ଈଶ୍ୱରଦୂତ ହୁଅନ୍ତି ନାହିଁ
୨୬୩. ଅଲ୍ଲାହ୍ ମଣିଷକୁ ପୁନର୍ଜୀବିତ କରିବାକୁ ସକ୍ଷମ
୨୬୪. ଅଲ୍ଲାହ୍‌ଙ୍କର ଭଲ ଭଲ ନାଁ ଅଛି
୨୬୫. ଅଲ୍ଲାହ୍ ଆବଶ୍ୟକତାରହିତ
୨୬୬. ସୃଷ୍ଟିତତ୍ତ୍ୱ
୨୬୭. ଭବିଷ୍ୟତ ତୁମ ହାତରେ ନାହିଁ
୨୬୮. କୁରଆନରେ ପରିବର୍ତ୍ତନ ହୋଇପାରିବ ନାହିଁ
୨୬୯. ସଜ୍ଜନମାନଙ୍କ ସଂଗରେ ରୁହ
୨୭୦. ଯାହାର ଇଚ୍ଛା କୁରଆନକୁ ମାନୁ ଏବଂ ଯାହାର ଇଚ୍ଛା ସେ ପ୍ରତ୍ୟାଖ୍ୟାନ କରିଦେଉ
୨୭୧. ପାର୍ଥିବ ଜୀବନର ଦୃଷ୍ଟାନ୍ତ
୨୭୨. କୁରଆନ ବିଭିନ୍ନ ଶୈଳୀରେ ବୁଝାଇଛି
୨୭୩. କର୍ମଫଳ ପାଇଁ ନିର୍ଦ୍ଦିଷ୍ଟ ସମୟ ଧାର୍ଯ୍ୟ ହୋଇଛି
୨୭୪. ଭକ୍ତମାନଙ୍କର ଆଶ୍ରୟ ନିଅନାହିଁ
୨୭୫. ଆସ୍ଥା ବିନା ତୁମ କର୍ମ ବୃଥା ହୋଇଯିବ
୨୭୬. ତାଙ୍କ ସମ ଜଗତରେ କେହି ନାହିଁ
୨୭୭. ମଣିଷ ନିଶ୍ଚୟ ପୁନର୍ଜୀବନ ପାଇବ
୨୭୮. ଧର୍ମହୀନ ବ୍ୟକ୍ତିର ସଂପତ୍ତି ଓ ଥାଟବାଟ ବୃଥା
୨୭୯. ପ୍ରଭୁଙ୍କ ସ୍ମରଣ ପାଇଁ ନମାଜ ପ୍ରତିଷ୍ଠା କର
୨୮୦. ପ୍ରଳୟ ଦିନ ଧରିତ୍ରୀ ସମତଳ ହୋଇଯିବ
୨୮୧. ପ୍ରଭୁଙ୍କ ଉପାସନା ଆତ୍ମସନ୍ତୋଷ ଦିଏ
୨୮୨. ଲୋକଙ୍କର ଥାଟବାଟ ପ୍ରତି ଦୃଷ୍ଟି ଦିଅନାହିଁ
୨୮୩. ନିଜ ପରିଜନଙ୍କୁ ନମାଜର ଆଦେଶ ଦିଅ
୨୮୪. ଈଶ୍ୱରଦୂତ ନ ଆସିଥିଲେ ଲୋକେ ଅଜ୍ଞତାର ବାହାନା କରନ୍ତେ
୨୮୫. ସବୁ ଈଶ୍ୱରଦୂତ ମନୁଷ୍ୟ ଥିଲେ
୨୮୬. ଦେବଗଣ ତାଙ୍କର ଉପାସନା କରନ୍ତି
୨୮୭. ଏକାଧିକ ଈଶ୍ୱର ଥିଲେ ବିଶୃଂଖଳା ହୁଅନ୍ତା
୨୮୮. କୁରଆନ୍ ପୂର୍ବ ଦିବ୍ୟଶିକ୍ଷାର ପୁନଃସ୍ଥାପକ
୨୮୯. ଧରିତ୍ରୀ ଓ ଆକାଶ ପରସ୍ପର ସଂଯୁକ୍ତ ରହିଥିଲା
୨୯୦. ଆକାଶ ଜୀବଜଗତକୁ ସୁରକ୍ଷା ଦିଏ

୨୯୧. ଗ୍ରହନକ୍ଷତ୍ର ଗୁଡ଼ିକ କକ୍ଷପଥରେ ବୁଲୁଛନ୍ତି
୨୯୨. ବିଭିନ୍ନ ପରିସ୍ଥିତିରେ ତୁମକୁ ପରୀକ୍ଷା କରାଯାଏ
୨୯୩. ମାନବସମାଜ ଗୋଟିଏ ଭ୍ରାତୃତ୍ୱ
୨୯୪. ସୃଷ୍ଟିର ପୁନଃନିର୍ମାଣ ହେବ
୨୯୫. ମହାମାନ୍ୟ ମୁହମ୍ମଦ ଜଗତ ପାଇଁ କରୁଣାସ୍ୱରୂପ
୨୯୬. ପାର୍ଥିବ ଫାଇଦା ପାଇଁ ଉପାସନା କରନାହିଁ
୨୯୭. କୁରଆନର ବାର୍ତ୍ତା ଖୁବ ସ୍ପଷ୍ଟ
୨୯୮. ଈଶ୍ୱର ତୁମର ନିଷ୍ଠା ଦେଖନ୍ତି
୨୯୯. କେତେ ସଭ୍ୟତା ଧ୍ୱଂସ କରିଦିଆ ଯାଇଛି
୩୦୦. ବିଭିନ୍ନ ସଂପ୍ରଦାୟ ପାଇଁ ପୃଥକ ଉପାସନା ବିଧି ନିର୍ଦ୍ଧାରିତ ଥିଲା
୩୦୧. ନିଜ ପ୍ରଭୁଙ୍କର ଉଚିତ ମୂଲ୍ୟାଙ୍କନ କର
୩୦୨. ଇସଲାମ ଏକ ଆଦିଧର୍ମ
୩୦୩. ବୈକୁଣ୍ଠବାସୀ ମାନଙ୍କର ସ୍ୱଭାବ
୩୦୪. ମାନବ ସର୍ଜନାର ବିଭିନ୍ନ ପର୍ଯ୍ୟାୟ
୩୦୫. ଅଲ୍ଲାହ ସପ୍ତ-ଆକାଶର ସ୍ରଷ୍ଟା
୩୦୬. ଗୋଟିଏ ଭ୍ରାତୃତ୍ୱ - ଗୋଟିଏ ଧର୍ମ
୩୦୭. ଧନସମ୍ପତ୍ତି ପ୍ରଭୁଙ୍କ ପ୍ରସନ୍ନତାର ମାନଦଣ୍ଡ ନୁହେଁ
୩୦୮. କୁରଆନ୍ ପ୍ରଥମ ଦିବ୍ୟଗ୍ରନ୍ଥ ନୁହେଁ
୩୦୯. ଦୁର୍ବ୍ୟବହାରର ଉତ୍ତର ସଦବ୍ୟବହାର ଦ୍ୱାରା ଦିଅ
୩୧୦. ମୃତ୍ୟୁ ପରେ ମଣିଷ ସଂସାରକୁ ଫେରିବ ନାହିଁ
୩୧୧.ସତୀନାରୀଙ୍କ ପ୍ରତି ମିଥ୍ୟାରୋପ ମହାପାପ
୩୧୨.କାହା ଘରେ ବିନା ଅନୁମତିରେ ପ୍ରବେଶ କରନାହିଁ
୩୧୩. ଦୃଷ୍ଟି ସଂଯତ ରଖିଲେ ମନ ପବିତ୍ର ରହିବ
୩୧୪. ନାରୀମାନେ ଅଂଗପ୍ରଦର୍ଶନ କରନ୍ତୁ ନାହିଁ
୩୧୫. ଅଲ୍ଲାହ୍ ଯାହାକୁ ଚାହାନ୍ତି ବଜ୍ରାଘାତ କରନ୍ତି
୩୧୬. କୁରଆନର ବାର୍ତ୍ତା ସ୍ପଷ୍ଟ
୩୧୭. କୁରଆନ ସତ୍ୟକୁ ପରଖିବାର କଷଟି
୩୧୮. ସୃଷ୍ଟିର ଉପାସନା କରନାହିଁ
୩୧୯. କୁରଆନକୁ ଛାଡ଼ିଲେ ପଥଭ୍ରଷ୍ଟ ହୋଇଯିବ
୩୨୦. ଇନ୍ଦ୍ରିୟ-ସେବା କରନାହିଁ
୩୨୧. ଅଲ୍ଲାହ୍ ଅବିନାଶୀ
୩୨୨. ପ୍ରକୃତ ଈଶ୍ୱରଭକ୍ତଙ୍କ ସ୍ୱଭାବ
୩୨୩. ସେ ହିଁ ତୁମର ଆବଶ୍ୟକତା ପୂରଣ କରନ୍ତି
୩୨୪. ବୃଥା ଅଟ୍ଟାଳିକା ନିର୍ମାଣ କରନାହିଁ
୩୨୫. ସଂସାରରେ ତୁମକୁ ରହିବାକୁ ଦିଆଯିବନାହିଁ
୩୨୬. କାହାରି କ୍ଷତି କରନାହିଁ
୩୨୭. ସମାଜରେ ବିଶୃଂଖଳା ସୃଷ୍ଟି କରନାହିଁ
୩୨୮. ନିଜର ଆତ୍ମୀୟ-ସ୍ୱଜନଙ୍କୁ ସାବଧାନ କରିଦିଅ
୩୨୯. ଅଦୃଷ୍ଟ କଥା ଅନ୍ୟ କେହି ଜାଣନ୍ତି ନାହିଁ
୩୩୦. ପୂର୍ବ ଗ୍ରନ୍ଥଧାରୀମାନେ ମଧ୍ୟ ମୁସଲିମ୍ ଥିଲେ
୩୩୧. ସଦାଚାରୀ ଦରିଦ୍ର ଦୁରାଚାରୀ ଧନୀଠାରୁ ଶ୍ରେଷ୍ଠ
୩୩୨. ଅନ୍ୟର ଉପକାର କର
୩୩୩. ଅହଂକାର କରନାହିଁ
୩୩୪. ଈଶ୍ୱରଙ୍କ ବ୍ୟତୀତ ସମସ୍ତେ ବିନାଶଶୀଳ
୩୩୫. ତୁମ ବିଶ୍ୱାସର ପରୀକ୍ଷା ନିଆଯିବ
୩୩୬. ପାପୀ ଈଶ୍ୱରଙ୍କ କବଳରୁ ଖସି ପାରିବ ନାହିଁ
୩୩୭. ବାପାମାଆଙ୍କର ଅନୁଚିତ କଥା ମାନନାହିଁ
୩୩୮. ନମାଜ ଅପକର୍ମରୁ ନିବୃତ୍ତ ରଖିଥାଏ
୩୩୯. ସର୍ବୋତ୍ତମ ଶୈଳୀରେ ଆଲୋଚନା କର
୩୪୦. ମହାମାନ୍ୟ ମୁହମ୍ମଦ ନିରକ୍ଷର ଥିଲେ
୩୪୧. କେବଳ ଜଗତକର୍ତ୍ତା ହିଁ ତୁମର ଆରାଧ୍ୟ
୩୪୨. ପାର୍ଥିବ ଜୀବନ ଏକ ଖେଳତାମସା
୩୪୩. ଈଶ୍ୱରଙ୍କ ପଥରେ ସଂଘର୍ଷ କଲେ ସେ ମାର୍ଗଦର୍ଶନ କରନ୍ତି
୩୪୪. ସଂଜ-ସକାଳେ ତାଙ୍କର ଗୁଣଗାନ କର
୩୪୫. ସେ ନିର୍ଜୀବ ମଧ୍ୟରୁ ସଜୀବ ଉତ୍ପନ୍ନ କରନ୍ତି
୩୪୬. ତାଙ୍କ ନିଦର୍ଶନ ପ୍ରତି ଧ୍ୟାନ ଦିଅ
୩୪୭. ମଣିଷର ପ୍ରାକୃତିକ ସ୍ୱଭାବ ହିଁ ଧର୍ମର ଆଧାର
୩୪୮. ସୁଖ ଓ ଦୁଃଖରେ ସମଭାବ ପୋଷଣ କର
୩୪୯. ଆତ୍ମୀୟ ଓ ଅଭାବୀଙ୍କୁ ସେମାନଙ୍କ ପ୍ରାପ୍ୟ ଦିଅ
୩୫୦. ଅଲ୍ଲାହ୍ ହିଁ ସୃଷ୍ଟି, ସ୍ଥିତି ଓ ବିଲୟର କାରଣ
୩୫୧. ପାପ ବଢ଼ିଲେ ବିଶୃଂଖଳା ଦେଖାଦିଏ
୩୫୨. ସଦ୍‌ବିଶ୍ୱାସୀଙ୍କ ସହାୟତା ଅଲ୍ଲାହଙ୍କର କର୍ତ୍ତବ୍ୟ
୩୫୩. ପାହାଡ଼ ସୃଷ୍ଟିର ରହସ୍ୟ
୩୫୪. ବାପାମାଆଙ୍କର ଅନୁଚିତ ଆଜ୍ଞା ମାନନାହିଁ
୩୫୫. ପିତାର ପୁତ୍ରକୁ ନୀତି ଉପଦେଶ
୩୫୬. ପୁନର୍ଜୀବିତ କରିବା ଏକ ମାମୁଲି କଥା
୩୫୭. ସଂସାରର ଆକର୍ଷଣ ତୁମକୁ ବିଭ୍ରାନ୍ତ ନ କରୁ
୩୫୮. ଅଲ୍ଲାହ୍ ହିଁ ଅଦୃଷ୍ଟ କଥା ଜାଣନ୍ତି
୩୫୯. ଈଶ୍ୱରଦୂତ ଆଦର୍ଶ ପୁରୁଷର ଏକ ନମୁନା
୩୬୦. ନାରୀମାନେ ସୌନ୍ଦର୍ଯ୍ୟର ପ୍ରଦର୍ଶନ ନ କରନ୍ତୁ
୩୬୧. ଘରେ ଯାହା କୁରଆନ୍ ପାଠ ହୁଏ, ମନେରଖ

୩୬୨. ଈଶ୍ୱର ଓ ଈଶ୍ୱରଦୂତଙ୍କ ନିଷ୍ପତ୍ତି ହିଁ ଅନ୍ତିମ
୩୬୩. ମହାମାନ୍ୟ ମୁହମ୍ମଦ ଅନ୍ତିମ ଈଶ୍ୱରଦୂତ
୩୬୪. ମହିଳାମାନେ ଓଢ଼ଣା ଦିଅନ୍ତୁ
୩୬୫. ଈଶ୍ୱରଙ୍କ ନୀତି ପରିବର୍ତ୍ତନଶୀଳ ନୁହେଁ
୩୬୬. ତୁମ ବଡ଼-ବଡ଼ିଆମାନେ ତୁମକୁ ପଥଭ୍ରଷ୍ଟ କରିଦେବେ
୩୬୭. ସର୍ବଦା ସତ କଥା କୁହ
୩୬୮. ମହାମାନ୍ୟ ମୁହମ୍ମଦ ମାନବଜାତିର ମାର୍ଗଦର୍ଶକ
୩୬୯. ଅଲ୍ଲାହ୍ ଅପ୍ରତିରୋଧ
୩୭୦. ପ୍ରତ୍ୟେକ ସଂପ୍ରଦାୟ ପାଇଁ ଈଶ୍ୱରଦୂତ ଆସିଛନ୍ତି
୩୭୧. ନିୟମିତ କୁରଆନପାଠ କରୁଥାଅ
୩୭୨. ବିଚାର ପାଇଁ ତୁମକୁ ଯଥେଷ୍ଟ ସମୟ ମିଳିଛି
୩୭୩. ଦିବ୍ୟଗ୍ରନ୍ଥ ବହୁଈଶ୍ୱରବାଦର ଶିକ୍ଷା ଦିଅନ୍ତି ନାହିଁ
୩୭୪. ଈଶ୍ୱର ତୁରନ୍ତ ଦୋଷ ଧରନ୍ତି ନାହିଁ
୩୭୫. ପ୍ରତ୍ୟକ୍ଷ ଓ ପରୋକ୍ଷ କର୍ମର ରେକର୍ଡ଼ ରହେ
୩୭୬. ଜୀବଜଡ଼ର ଯୁଗଳ ସୃଷ୍ଟି
୩୭୭. ସୂର୍ଯ୍ୟଚନ୍ଦ୍ର ନିଜନିଜ କକ୍ଷପଥରେ ବୁଲୁଛନ୍ତି
୩୭୮. କୁରଆନ ପ୍ରତ୍ୟେକ ଜୀବିତ ବ୍ୟକ୍ତିକୁ ସାବଧାନ କରୁ
୩୭୯. କ'ଣ ଈଶ୍ୱର ପୁନର୍ଜୀବିତ କରିବାକୁ ଅକ୍ଷମ ?
୩୮୦. ମାନବ ସୃଷ୍ଟି ଏକ ମାମୁଲି କାର୍ଯ୍ୟ
୩୮୧. ଏ ସୃଷ୍ଟି ନିରର୍ଥକ ନୁହେଁ
୩୮୨. କ'ଣ ସଦାଚାରୀ ଓ ଦୁରାଚାରୀ ସମାନ ?
୩୮୩. କୁରଆନର ବାଣୀ ଉପରେ ବିଚାର କର
୩୮୪. ଉପାସନା କେବଳ ସ୍ରଷ୍ଟାଙ୍କର ଅଧିକାର
୩୮୫. କୁରଆନ ଏକ ଅନୁପମ ଗ୍ରନ୍ଥ
୩୮୬. କୁରଆନରେ ବିଭିନ୍ନ ଉଦାହରଣ ଦିଆଯାଇଛି
୩୮୭. କୁରଆନ ଏକ ସରଳ ଗ୍ରନ୍ଥ
୩୮୮. ଜଣେ ମାଲିକର ଦାସ ହେବା ଭଲ
୩୮୯. ଅନ୍ୟ କେହି ତୁମର କାର୍ଯ୍ୟସିଦ୍ଧି କରିବାକୁ ସମର୍ଥ ନୁହେଁ
୩୯୦. କୁରଆନ ଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ
୩୯୧. ସେ ନିଦ୍ରା ଅବସ୍ଥାରେ ଆତ୍ମା ହରଣ କରନ୍ତି
୩୯୨. ଏକେଶ୍ୱରବାଦର ଚର୍ଚ୍ଚା ବହୁଦେବବାଦୀଙ୍କୁ  ଅପ୍ରିୟ ଲାଗେ
୩୯୩. ବିପଦ କଟିଗଲେ ମଣିଷ କହେ 'ବୁଦ୍ଧି ବଳରେ  ବଂଚିଗଲି'
୩୯୪. ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ
୩୯୫. ମୃତ୍ୟୁ ପୂର୍ବରୁ କୁରଆନର ଆଜ୍ଞା ମାନ
୩୯୬. ସବୁ ଈଶ୍ୱରଦୂତଙ୍କୁ ଏକା ଦୈବବାଣୀ
୩୯୭. ପ୍ରଳୟ ଦିନର ଦୃଶ୍ୟ
୩୯୮. ବିଶୁଦ୍ଧ ଏକେଶ୍ୱରବାଦୀ ହୁଅ
୩୯୯. ସେ ତୁମ ଆଖିର ଚୋରି ବିଷୟରେ ଜାଣନ୍ତି
୪୦୦. ସଦବିଶ୍ୱାସୀମାନଙ୍କର ଦୈବୀ ସହାୟତା ହୁଏ
୪୦୧. ତୁମକୁ ପୁନର୍ଜୀବିତ କରିବା ବଡ଼କଥା ନୁହେଁ
୪୦୨. କେବଳ ତାଙ୍କୁ ହିଁ ଡାକ
୪୦୩. ତୁମମାନଙ୍କର ଅଲ୍ଲାହ୍ କିଏ
୪୦୪. କୁରଆନକୁ ଜ୍ଞାନୀମାନେ ହିଁ ବୁଝନ୍ତି
୪୦୫. ଏକ ଗ୍ୟାସୀୟ ପିଣ୍ଡରୁ ତାରକାପୁଞ୍ଜର ସୃଷ୍ଟି
୪୦୬. ସ୍ୱର୍ଗରେ ଯାହା ଚାହିଁବ, ତାହା ପାଇବ
୪୦୭. ଲୋକଙ୍କୁ ସଦୁପଦେଶ ଦେଉଥାଅ
୪୦୮. ଦୁର୍ବ୍ୟବହାରର ଉତ୍ତର ସଦ୍‌ବ୍ୟବହାର ଦ୍ୱାରା ଦିଅ
୪୦୯. ଦୈବବାଣୀକୁ କଦର୍ଥ କଲେ ନର୍କଦଣ୍ଡ ଭୋଗିବ
୪୧୦. କୁରଆନରେ ପ୍ରକ୍ଷେପଣ ସମ୍ଭବ ନୁହେଁ
୪୧୧. ଈଶ୍ୱରଦୂତ ନୂଆ ଧର୍ମତତ୍ତ୍ୱ ଆଣି ନାହାନ୍ତି
୪୧୨. ଯିଏ କର୍ମ କରେ, ସେ ହିଁ ଫଳ ଭୋଗେ
୪୧୩. ସୁଖରେ ମଣିଷ ଈଶ୍ୱରଙ୍କୁ ଭୁଲିଯାଏ
୪୧୪. ବ୍ରହ୍ମାଣ୍ଡରେ ତାଙ୍କର ଉପମା ନାହିଁ
୪୧୫. ଏହି ଧର୍ମ ଏକ ପ୍ରାଚୀନ ଧର୍ମ
୪୧୬. ସମସ୍ତେ ଧନୀ ହୋଇଥିଲେ ଧରାବକ୍ଷରେ ଉପଦ୍ରବ ହୁଅନ୍ତା
୪୧୭. ତୁମର ସ୍ୱଅର୍ଜିତ କର୍ମ ଯୋଗୁଁ ବିପଦ ଆସେ
୪୧୮. ସଦାଚାରୀମାନଙ୍କର ସ୍ୱଭାବ
୪୧୯. କ୍ଷମା କରିଦେବା ଏକ ସାହସିକ କାର୍ଯ୍ୟ
୪୨୦. ସେ ହିଁ ସନ୍ତାନ ଦିଅନ୍ତି ବା ନିଃସନ୍ତାନ ରଖନ୍ତି
୪୨୧. ଈଶ୍ୱର ପ୍ରତ୍ୟକ୍ଷ କଥାବାର୍ତ୍ତା କରନ୍ତି ନାହିଁ
୪୨୨. ଧନୀ ଓ ଗରିବ ସୃଷ୍ଟିର ରହସ୍ୟ
୪୨୩. ବ୍ରହ୍ମାଣ୍ଡର ସୃଷ୍ଟି ଖେଳ ନୁହେଁ
୪୨୪. କୁରଆନର ଉପଦେଶ ପାଳନ କର
୪୨୫. ପୁଣ୍ୟାତ୍ମା ଓ ପାପୀ ସମାନ ହେବେ ନାହିଁ
୪୨୬. ନାସ୍ତିକମାନଙ୍କ ପାଇଁ ସଂସାର ହିଁ ସବୁକିଛି
୪୨୭. ଦିବ୍ୟଗ୍ରନ୍ଥ ସୃଷ୍ଟିପୂଜାର ଆଦେଶ ଦିଅନ୍ତିନାହିଁ
୪୨୮. କେବଳ ଅଲ୍ଲାହ ହିଁ ତୁମ ଡ଼ାକ ଶୁଣିପାରନ୍ତି
୪୨୯. ସ୍ୱର୍ଗ ଓ ନର୍କରେ ବିଭିନ୍ନ ଶ୍ରେଣୀ ଅଛି
୪୩୧. ଲୋକମାନଙ୍କ ମଧ୍ୟରେ ବୁଝାମଣା କରିଦିଅ
୪୩୨. କାହାରିକୁ ତାଚ୍ଛଲ୍ୟ ବା ବିଦ୍ରୂପ କରନାହିଁ
୪୩୩. ପରଛିଦ୍ର ଖୋଜନାହିଁ ବା ପରନିନ୍ଦା କରନାହିଁ
୪୩୪. ବଂଶ ଓ ସଂପ୍ରଦାୟ ସୃଷ୍ଟିର ରହସ୍ୟ

୪୩୫. ମୃତଶରୀର ସଂପୂର୍ଣ ଅବକ୍ଷୟ ହୁଏନାହିଁ
୪୩୬. ତୁମେ ଯାହା ଚିନ୍ତା କର, ସେ ଜାଣନ୍ତି
୪୩୭. ଧର୍ମ ବିଷୟରେ କାହାରିକୁ ବାଧ୍ୟ କରନାହିଁ
୪୩୮. ଧାର୍ମିକମାନେ ବ୍ରାହ୍ମମୂହୁର୍ତ୍ତରେ ପ୍ରାର୍ଥନା କରନ୍ତି
୪୩୯. ଧାର୍ମିକଙ୍କ ଧନରେ ଦୀନ-ଦୁଃଖୀଙ୍କ ଭାଗ ଥାଏ
୪୪୦. ପ୍ରତ୍ୟେକ ସୃଷ୍ଟିକୁ ଯୋଡ଼ି ରୂପେ ଗଢ଼ାଯାଇଛି
୪୪୧. ପ୍ରଭୁଙ୍କ ସେବା ପାଇଁ ମଣିଷର ସୃଷ୍ଟି
୪୪୨. କ'ଣ ମଣିଷ ନିଜେ ନିଜକୁ ସୃଷ୍ଟି କରିଛି ?
୪୪୩. ବଡ଼ ଧରଣର ପାପରୁ ବିରତ ରହିଲେ ସାମାନ୍ୟ ଦୋଷତ୍ରୁଟି କ୍ଷମା କରିଦିଆଯିବ
୪୪୪. ସେ ହିଁ ହସାଇ ଥାଆନ୍ତି ଏବଂ କନ୍ଦାଇ ଥାଆନ୍ତି
୪୪୫. କୁରଆନର ଶିକ୍ଷା ଗ୍ରହଣ କର
୪୪୬. ସେ ନିତ୍ୟ ନୂତନ ମହିମାରେ ମଣ୍ଡିତ
୪୪୭. ଗର୍ଭାଶୟ ମଧ୍ୟରେ କିଏ ଶିଶୁ ଗଢ଼େ ?
୪୪୮. ବୀଜରୁ ଶସ୍ୟ କିଏ ବାହାର କରେ ?
୪୪୯. କୁରଆନକୁ ହାଲୁକା ଭାବରେ ନିଅନାହିଁ
୪୫୦. ସେ ଆଦି ଓ ଅନ୍ତ ଏବଂ ବ୍ୟକ୍ତ ଓ ଅବ୍ୟକ୍ତ
୪୫୧. ସେ ସବୁବେଳେ ତୁମ ସହିତ ଥାଆନ୍ତି
୪୫୨. ପ୍ରଭୁଙ୍କୁ ସ୍ମରଣ କରିବାର ବେଳ ଆସିନାହିଁ ?
୪୫୩. ପାର୍ଥିବ ଜୀବନର ବାସ୍ତବତା
୪୫୪. କିଛି ହରାଇଲେ ଦୁଃଖ କରନାହିଁ ବା କିଛି ପାଇଲେ ଗର୍ବ କରନାହିଁ
୪୫୫. ପରଲୋକ ପ୍ରତି ସାବଧାନ ରୁହ
୪୫୬. ଅଲ୍ଲାହ୍ ମହିମାମୟ
୪୫୭. ସେ ନ୍ୟାୟପରାୟଣ ଲୋକଙ୍କୁ ଭଲ ପାଆନ୍ତି
୪୫୮. ଅନ୍ୟକୁ ଯାହା କୁହ, ତାହା ନିଜେ ମଧ୍ୟ କର
୪୫୯. ଈଶ୍ୱରଙ୍କ ମାର୍ଗରେ ସଂଘର୍ଷ କର
୪୬୦. ଶୁକ୍ରବାର ଦିନ ସାମୂହିକ ନମାଜ ପାଠ କର
୪୬୧. ତୁମ ଧନ ଓ ପରିବାର ଅଲ୍ଲାହଙ୍କ ମାର୍ଗରେ ବାଧା ସୃଷ୍ଟି ନ କରୁ
୪୬୨. ଈଶ୍ୱରଙ୍କ ଆଜ୍ଞା ବିନା ବିପଦ ଆସେନାହିଁ
୪୬୩. ତୁମ ଧନ ଓ ପରିଜନ ତୁମ ପରୀକ୍ଷାର ମାଧ୍ୟମ
୪୬୪. ଇନ୍ଦ୍ରିୟ ଲାଳସାକୁ ଦମନ କର
୪୬୫. ପ୍ରତୀକ୍ଷାକାଳ ସରିବା ପୂର୍ବରୁ ପତ୍ନୀମାନଙ୍କୁ ଘରୁ ବାହାର କରନାହିଁ
୪୬୬. ନିଜ ପରିବାରକୁ ନର୍କରୁ ରକ୍ଷା କର
୪୬୭. ଅଲ୍ଲାହ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ
୪୬୮. ସେ ଭୂମିକମ୍ପ ଦ୍ୱାରା ବିନାଶ କରି ପାରନ୍ତି
୪୬୯. ସେ ଜଳସ୍ତରକୁ ତଳକୁ ଖସାଇ ପାରନ୍ତି
୪୭୦. ମହାମାନ୍ୟ ମୁହମ୍ମଦ ନିଖୁଣ ଚରିତ୍ରର ସ୍ୱାମୀ
୪୭୧. ଦୁର୍ଜନ ସଂଗ ପରିତ୍ୟାଗ କର
୪୭୨. ସମସ୍ତଙ୍କ ପରିଣାମ ସମାନ ହେବ ନାହିଁ
୪୭୩. ବୈକୁଣ୍ଠବାସୀମାନଙ୍କର ସ୍ୱଭାବ
୪୭୪. ନିଜ ବସ୍ତ୍ରକୁ ଶୁଦ୍ଧ ରଖ
୪୭୫. ଦୈନିକ ନମାଜ ପାଠ ନ କଲେ ନର୍କଦଣ୍ଡ
୪୭୬. ମଣିଷ ନିଜକୁ ଠିକ୍ ଜାଣେ
୪୭୭. ଟୋପାଏ ଶୁକ୍ରରୁ ତୁମର ସୃଷ୍ଟି
୪୭୮. ଏକଦା ତୁମେ ଚର୍ଚ୍ଚାଯୋଗ୍ୟ ନଥିଲ
୪୭୯. ପରୋପକାର କେବଳ ଈଶ୍ୱରଙ୍କ ପାଇଁ କର
୪୮୦. ତୁମର ସୃଷ୍ଟି କଠିନ ବା ଅନ୍ତରୀକ୍ଷର ସୃଷ୍ଟି ?
୪୮୧. ବୈକୁଣ୍ଠ ପ୍ରାପ୍ତି ପାଇଁ ଇନ୍ଦ୍ରିୟଦମନ କର
୪୮୨. କର୍ମପଂଜିକା ଦେବଦୂତମାନେ ଲେଖନ୍ତି
୪୮୩. ମାପ ଓ ଓଜନ କମ୍ କରି ଦିଅନାହିଁ
୪୮୪. ଉପଦେଶ ଲାଭକାରୀ ହେଉଥିଲେ ଦିଅ
୪୮୫. ଯିଏ ଅନ୍ତଃଶୁଦ୍ଧି କରେ ସେ ହିଁ ସଫଳ ହୁଏ
୪୮୬. ଭଲ ଓ ମନ୍ଦ ଉଭୟ ପରିସ୍ଥିତିରେ ତୁମକୁ ପରୀକ୍ଷା କରାଯାଏ
୪୮୭. ଦୀନଦୁଃଖୀଙ୍କୁ ଭୋଜନ ଦିଅ
୪୮୮. ଭଲ ଓ ମନ୍ଦ କର୍ମ ବିଷୟରେ ମଣିଷ ଜାଣେ
୪୮୯. ଆତ୍ମଶୁଦ୍ଧି ପାଇଁ ଦାନପୁଣ୍ୟ କର
୪୯୦. ଭିକ୍ଷୁକକୁ ଭର୍ତ୍ସନା କରନାହିଁ
୪୯୧. ପ୍ରାକୃତିକ ଧର୍ମର ପାଳନ ଏକ ଆଦିସ୍ରୋତ
୪୯୨. ପ୍ରତ୍ୟେକ କର୍ମର ରେକର୍ଡ଼ ରହେ
୪୯୩. ଧନର ଲୋଭ ମଣିଷକୁ କୃତଘ୍ନ କରିଦିଏ
୪୯୪. ପୁଣ୍ୟଭାର ଅଧିକ ହେଲେ ସ୍ୱର୍ଗଲାଭ ଏବଂ ପାପଭାର ଅଧିକ ହେଲେ ନର୍କବାସ ହେବ
୪୯୫. ସଂସାରଭୋଗର ପ୍ରତିଦ୍ୱନ୍ଦିତାରେ ତୁମେ ପରଲୋକ ଭୁଲିଗଲ
୪୯୬. ସଦାଚାରୀ ଓ ସଦ୍‌ବିଶ୍ୱାସୀ ସଫଳ ହେବେ
୪୯୭. ପରନିନ୍ଦୁକ ଓ ଚୁଗୁଲିଆର ସର୍ବନାଶ ହେବ
୪୯୮. ନମାଜପାଠରେ ଅବହେଳା କରନାହିଁ
୪୯୯. ତୁମମାନଙ୍କ ଈଶ୍ୱର ଅଜନ୍ମା ଓ ଅନୁପମ
୫୦୦. ଦୁର୍ଭାବନା ଆସିଲେ ପ୍ରଭୁଙ୍କ ଆଶ୍ରୟ ନିଅ

# ଦୈନିକ ପ୍ରାର୍ଥନା

بِسْمِ اللّٰهِ الرَّحْمٰنِ الرَّحِيْمِ

ଅନନ୍ତ ଦୟାବାନ ଅସୀମ କୃପାଶୀଳ ଅଲ୍ଲାହ୍‌ଙ୍କ ନାମରେ

اَلْحَمْدُ لِلّٰهِ رَبِّ الْعٰلَمِيْنَ ۝١ الرَّحْمٰنِ الرَّحِيْمِ ۝٢
مٰلِكِ يَوْمِ الدِّيْنِ ۝٣ اِيَّاكَ نَعْبُدُ وَاِيَّاكَ
نَسْتَعِيْنُ ۝٤ اِهْدِنَا الصِّرَاطَ الْمُسْتَقِيْمَ ۝٥
صِرَاطَ الَّذِيْنَ اَنْعَمْتَ عَلَيْهِمْ ۙ غَيْرِ الْمَغْضُوْبِ
عَلَيْهِمْ وَلَا الضَّآلِّيْنَ ۝٧

ସକଳ ସ୍ତୁତି ଜଗତପାଳକ ଅଲ୍ଲାହ୍‌ଙ୍କ ପାଇଁ। ଅନନ୍ତ ଦୟାବାନ ଅସୀମ କୃପାଶୀଳ। ବିଚାର ଦିନର ଅଧୀଶ୍ୱର। ଆମେ ତୁମରି ଉପାସନା କରୁ ଏବଂ ତୁମରି ସହାୟତା ଭିକ୍ଷା କରୁ। ଆମକୁ ସଳଖ ମାର୍ଗରେ ପରିଚାଳିତ କର । ସେହିମାନଙ୍କ ମାର୍ଗରେ ଯେଉଁମାନଙ୍କ ପ୍ରତି ତୁମେ କୃପା କରିଛ। ସେମାନଙ୍କ ମାର୍ଗରେ ନୁହେଁ ଯେଉଁମାନେ ତୁମ କୋପର ଶିକାର ହେଲେ ବା ପଥଭ୍ରଷ୍ଟ ହୋଇଗଲେ।

(କୁର୍‌ଆନ ୧-୭)

بِسۡمِ اللّٰہِ الرَّحۡمٰنِ الرَّحِیۡمِ

ଅନନ୍ତ ଦୟାବାନ ଅସୀମ କୃପାଶୀଳ ଅଲ୍ଲାହ୍‌ଙ୍କ ନାମରେ

### ୧. କୁରଆନ ଈଶ୍ୱରଭକ୍ତଙ୍କର ମାର୍ଗଦର୍ଶନ କରେ

ନିଃସନ୍ଦେହରେ ଏହି ଗ୍ରନ୍ଥରେ ମାର୍ଗଦର୍ଶନ ରହିଛି (ଈଶ୍ୱରଙ୍କୁ) ଭୟ କରୁଥିବା ଲୋକମାନଙ୍କ ପାଇଁ, ଯେଉଁମାନେ ଅଦୃଷ୍ଟରେ ବିଶ୍ୱାସ କରନ୍ତି, ନମାଜ (ଦୈନିକ ଉପାସନା) ପ୍ରତିଷ୍ଠା କରନ୍ତି, ଯାହାକିଛି ସେମାନଙ୍କୁ ଆମ୍ଭେ ଦେଇଛୁ, ସେଥିରୁ ଖର୍ଚ୍ଚ କରନ୍ତି ଏବଂ ଯେଉଁମାନେ ଏହି ଦୈବବାଣୀ ପ୍ରତି ବିଶ୍ୱାସ କରନ୍ତି ଯାହା ତୁମ ପ୍ରତି ପ୍ରକଟ ହେଲା ଏବଂ ସେହି ଦୈବବାଣୀ ପ୍ରତି ମଧ୍ୟ ବିଶ୍ୱାସ କରନ୍ତି, ଯାହା ତୁମ ପୂର୍ବରୁ ପ୍ରକଟ ହୋଇଥିଲା, ଆଉ ପରଲୋକ ଯେ ନିଶ୍ଚିତ, ଏହା ମଧ୍ୟ ଜାଣନ୍ତି । ଏହି ଲୋକମାନେ ନିଜ ପ୍ରଭୁଙ୍କ ମାର୍ଗରେ ଅଛନ୍ତି ଏବଂ ଏଇମାନେ ସଫଳ ହେବେ । (୨/୨-୫)

ذٰلِکَ الۡکِتٰبُ لَا رَیۡبَ ۚۛ فِیۡہِ ۚۛ ھُدًی لِّلۡمُتَّقِیۡنَ ۙ﴿۲﴾ الَّذِیۡنَ یُؤۡمِنُوۡنَ بِالۡغَیۡبِ وَ یُقِیۡمُوۡنَ الصَّلٰوۃَ وَ مِمَّا رَزَقۡنٰہُمۡ یُنۡفِقُوۡنَ ۙ﴿۳﴾ وَ الَّذِیۡنَ یُؤۡمِنُوۡنَ بِمَاۤ اُنۡزِلَ اِلَیۡکَ وَ مَاۤ اُنۡزِلَ مِنۡ قَبۡلِکَ ۚ وَ بِالۡاٰخِرَۃِ ہُمۡ یُوۡقِنُوۡنَ ؕ﴿۴﴾ اُولٰٓئِکَ عَلٰی ہُدًی مِّنۡ رَّبِّہِمۡ ٭ وَ اُولٰٓئِکَ ہُمُ الۡمُفۡلِحُوۡنَ ﴿۵﴾

### ୨. ସ୍ରଷ୍ଟାଙ୍କ ଉପାସନା କଲେ ସଦାଚାରୀ ହେବ

ହେ ମନୁଷ୍ୟଗଣ ! ନିଜ ପ୍ରଭୁଙ୍କର ଉପାସନା କର ଯିଏ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ, ତା'ହେଲେ ତୁମେମାନେ ସଦାଚାରୀ ହେବ । (୨/୨୧)

یٰۤاَیُّہَا النَّاسُ اعۡبُدُوۡا رَبَّکُمُ الَّذِیۡ خَلَقَکُمۡ وَ الَّذِیۡنَ مِنۡ قَبۡلِکُمۡ لَعَلَّکُمۡ تَتَّقُوۡنَ ﴿ۙ۲۱﴾

### ୩. କାହାରିକୁ ତାଙ୍କର ସମକକ୍ଷ କରନାହିଁ

ସେ ତୁମମାନଙ୍କ ପାଇଁ ଧରିତ୍ରୀକୁ ଶେଯ ତଥା ଆକାଶକୁ ଛାତ ରୂପେ ଗଢ଼ିଛନ୍ତି ଏବଂ ଆକାଶରୁ ଜଳ ବର୍ଷା କରନ୍ତି ତଥା ସେଥିରୁ ତୁମମାନଙ୍କର ଆହାର ପାଇଁ ବିଭିନ୍ନ ପ୍ରକାରର ଫଳ ସୃଷ୍ଟି କରନ୍ତି । ତେଣୁ, ତୁମେ କାହାରିକୁ ଅଲ୍ଲାହ୍‌ଙ୍କ ସମକକ୍ଷ କର ନାହିଁ, ଆଉ ଏକଥା ତୁମେମାନେ (ଭଲ ରୂପେ) ଜାଣ । (୨/୨୨)

الَّذِیۡ جَعَلَ لَکُمُ الۡاَرۡضَ فِرَاشًا وَّ السَّمَآءَ بِنَآءً ۪ وَّ اَنۡزَلَ مِنَ السَّمَآءِ مَآءً فَاَخۡرَجَ بِہٖ مِنَ الثَّمَرٰتِ رِزۡقًا لَّکُمۡ ۚ فَلَا تَجۡعَلُوۡا لِلّٰہِ اَنۡدَادًا وَّ اَنۡتُمۡ تَعۡلَمُوۡنَ ﴿۲۲﴾

### ୪. ମାନବ ପକ୍ଷରେ କୁରଆନ ରଚନା ସମ୍ଭବ ନୁହେଁ

ନିଜ ଭକ୍ତ (ମୁହମ୍ମଦଙ୍କ) ପ୍ରତି ଯେଉଁ ଗ୍ରନ୍ଥଟି ଆମ୍ଭେ ପ୍ରକଟ କରିଛୁ, ତାହା ପ୍ରତି ଯଦି ତୁମମାନଙ୍କର ସନ୍ଦେହ ଥାଏ, ତେବେ ତାହାରି ଅଧ୍ୟାୟ ପରି ଗୋଟିଏ ଅଧ୍ୟାୟ (ରଚନା କରି) ଆଣ ଏବଂ ଅଲ୍ଲାହ୍‌ଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ ସହାୟକମାନଙ୍କୁ

وَ اِنۡ کُنۡتُمۡ فِیۡ رَیۡبٍ مِّمَّا نَزَّلۡنَا عَلٰی عَبۡدِنَا فَاۡتُوۡا بِسُوۡرَۃٍ مِّنۡ مِّثۡلِہٖ ۪ وَ ادۡعُوۡا شُہَدَآءَکُمۡ مِّنۡ دُوۡنِ اللّٰہِ اِنۡ کُنۡتُمۡ صٰدِقِیۡنَ ﴿۲۳﴾ فَاِنۡ لَّمۡ تَفۡعَلُوۡا وَ لَنۡ

ଡାକିଆଣ, ଯଦି ବାସ୍ତବରେ ତୁମେମାନେ ସତ୍ୟବାଦୀ । ଯଦି ତୁମେମାନେ ଏହା କରି ନପାର, ଏବଂ (ପ୍ରକୃତରେ) କଦାପି କରି ପାରିବ ନାହିଁ । ତେଣୁ, ସେହି ନର୍କାଗ୍ନିକୁ ଭୟ କର ଯାହା ଅବଜ୍ଞାକାରୀମାନଙ୍କ ପାଇଁ ପ୍ରସ୍ତୁତ ହୋଇ ରହିଛି ଏବଂ ଯାହାର ଇନ୍ଧନ ହେବେ ମଣିଷ ଓ ପଥର । (୨/୨୩-୨୪)

تَفۡعَلُوۡا فَاتَّقُوا النَّارَ الَّتِیۡ وَقُوۡدُهَا النَّاسُ وَ الۡحِجَارَۃُ ۚۖ اُعِدَّتۡ لِلۡکٰفِرِیۡنَ ﴿۲۴﴾

### ୫. ଦୈନିକ ନମାଜ ପ୍ରକୃତ ଭକ୍ତ ପାଇଁ କଠିନ ନୁହେଁ

ସଂଯମ ଓ ନମାଜ ଦ୍ୱାରା (ଆମ୍ଭର) ସହାୟତା ନିଅ । ଅବଶ୍ୟ ଏହା କଠିନ କାର୍ଯ୍ୟ, ମାତ୍ର (ଈଶ୍ୱରଙ୍କୁ) ଭୟ କରୁଥିବା ଲୋକମାନଙ୍କ ପାଇଁ ଏହା କଠିନ ନୁହେଁ, ଯେଉଁମାନେ ଜାଣନ୍ତି ଯେ ସେମାନେ (ଦିନେ) ନିଜ ପରମେଶ୍ୱରଙ୍କୁ ନିଶ୍ଚୟ ସାକ୍ଷାତ କରିବେ ଆଉ ତାଙ୍କ ନିକଟକୁ ଫେରିବେ । (୨/୪୫-୪୬)

وَ اسۡتَعِیۡنُوۡا بِالصَّبۡرِ وَ الصَّلٰوۃِ ؕ وَ اِنَّهَا لَکَبِیۡرَۃٌ اِلَّا عَلَی الۡخٰشِعِیۡنَ ﴿۴۵﴾ الَّذِیۡنَ یَظُنُّوۡنَ اَنَّهُمۡ مُّلٰقُوۡا رَبِّهِمۡ وَ اَنَّهُمۡ اِلَیۡهِ رٰجِعُوۡنَ ﴿۴۶﴾

### ୬. ଈଶ୍ୱରଙ୍କ ନାଁରେ ମିଥ୍ୟା ଗଢ଼ିଲେ ନର୍କବାସ ହେବ

ସେମାନଙ୍କ ମଧ୍ୟରେ କେତେକ ନିରକ୍ଷର ଅଛନ୍ତି, ଯେଉଁମାନଙ୍କର କିଛି କଳ୍ପିତ ଧାରଣା ବ୍ୟତୀତ ଗ୍ରନ୍ଥ ସଂପର୍କରେ କୌଣସି ଜ୍ଞାନ ନାହିଁ । ସେମାନେ କେବଳ ଅନୁମାନ ଉପରେ ନିର୍ଭର କରନ୍ତି । ସର୍ବନାଶ ହେବ ସେମାନଙ୍କର, ଯେଉଁମାନେ ସାମାନ୍ୟ ଫାଇଦା ପାଇଁ ନିଜ ହାତରେ ଗ୍ରନ୍ଥ ଲେଖନ୍ତି ଆଉ କୁହନ୍ତି ଯେ ଏହା ଅଲ୍ଲାହଙ୍କ ଠାରୁ ଆସିଛି । ଯେଉଁ ହାତ ଦ୍ୱାରା ସେମାନେ ଲେଖିଛନ୍ତି ଏବଂ ଯାହା ସେଥିରୁ ଅର୍ଜନ କରିଛନ୍ତି, ତାହା ସେମାନଙ୍କ ସର୍ବନାଶର କାରଣ ହେବ । (୨/୭୮-୭୯)

وَ مِنۡهُمۡ اُمِّیُّوۡنَ لَا یَعۡلَمُوۡنَ الۡکِتٰبَ اِلَّاۤ اَمَانِیَّ وَ اِنۡ هُمۡ اِلَّا یَظُنُّوۡنَ ﴿۷۸﴾ فَوَیۡلٌ لِّلَّذِیۡنَ یَکۡتُبُوۡنَ الۡکِتٰبَ بِاَیۡدِیۡهِمۡ ٭ ثُمَّ یَقُوۡلُوۡنَ هٰذَا مِنۡ عِنۡدِ اللّٰهِ لِیَشۡتَرُوۡا بِهٖ ثَمَنًا قَلِیۡلًا ؕ فَوَیۡلٌ لَّهُمۡ مِّمَّا کَتَبَتۡ اَیۡدِیۡهِمۡ وَ وَیۡلٌ لَّهُمۡ مِّمَّا یَکۡسِبُوۡنَ ﴿۷۹﴾

### ୭. ଇସ୍ରାଇଲ ସଂପ୍ରଦାୟକୁ ଦିଆ ଯାଇଥିବା ଆଦେଶ

(ସେମାନଙ୍କୁ କୁହ) ଯେତେବେଳେ ଆମ୍ଭେ ଇସରାଇଲ୍ ବଂଶଜଙ୍କ ଠାରୁ ଦୃଢ଼ ପ୍ରତିଶ୍ରୁତି ନେଇଥିଲୁ ଯେ, "ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରିବ ନାହିଁ, ପିତାମାତା, ଆତ୍ମୀୟ ସ୍ୱଜନ, ଅନାଥ ଓ ଦରିଦ୍ରମାନଙ୍କ ସହିତ ଉତ୍ତମ ବ୍ୟବହାର କରିବ, ଲୋକମାନଙ୍କ ସହ ଭଲ ଭାବରେ କଥାବାର୍ତ୍ତା କରିବ, ନମାଜ ପ୍ରତିଷ୍ଠା କରିବ ଏବଂ ଜକାତ୍ (ନିୟମିତ ଦାନ) ଦେବ"; କିନ୍ତୁ ଅଳ୍ପ କେତେଜଣଙ୍କ ବ୍ୟତୀତ ତୁମେ ସମସ୍ତେ ପ୍ରତିଶ୍ରୁତି ଭାଂଗି ଦେଲ । (ବାସ୍ତବରେ) ତୁମେମାନେ କଥା ଦେଇ ଫେରିଯିବା ଲୋକ । (୨/୮୩)

وَ اِذۡ اَخَذۡنَا مِیۡثَاقَ بَنِیۡۤ اِسۡرَآءِیۡلَ لَا تَعۡبُدُوۡنَ اِلَّا اللّٰهَ ۟ وَ بِالۡوَالِدَیۡنِ اِحۡسَانًا وَّ ذِی الۡقُرۡبٰی وَ الۡیَتٰمٰی وَ الۡمَسٰکِیۡنِ وَ قُوۡلُوۡا لِلنَّاسِ حُسۡنًا وَّ اَقِیۡمُوا الصَّلٰوۃَ وَ اٰتُوا الزَّکٰوۃَ ؕ ثُمَّ تَوَلَّیۡتُمۡ اِلَّا قَلِیۡلًا مِّنۡکُمۡ وَ اَنۡتُمۡ مُّعۡرِضُوۡنَ ﴿۸۳﴾

### ୮. ଅଲ୍ଲାହ୍ ପୃଥିବୀ ଓ ଅନ୍ତରୀକ୍ଷର ଅଧୀଶ୍ୱର

اَلَمۡ تَعۡلَمۡ اَنَّ اللّٰهَ لَهٗ مُلۡكُ السَّمٰوٰتِ وَالۡاَرۡضِ ؕ وَ
مَا لَـكُمۡ مِّنۡ دُوۡنِ اللّٰهِ مِنۡ وَّلِىٍّ وَّلَا نَصِيۡرٍ ﴿۱۰۷﴾

କ'ଣ ତୁମମାନଙ୍କୁ ଜଣା ନାହିଁ ଯେ ପୃଥିବୀ ଓ ଅନ୍ତରୀକ୍ଷରେ କେବଳ ଏକ ମାତ୍ର ଅଲ୍ଲାହଙ୍କର ଶାସନ ଚାଲେ? ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ବନ୍ଧୁ ବା ସାହାଯ୍ୟକାରୀ ନାହାନ୍ତି ।

(୨/୧୦୭)

### ୯. ସଂସାରରେ ମଣିଷର ପରୀକ୍ଷା ନିଆଯାଏ

وَلَنَبۡلُوَنَّكُمۡ بِشَىۡءٍ مِّنَ الۡخَـوۡفِ وَالۡجُـوۡعِ وَنَقۡصٍ
مِّنَ الۡاَمۡوَالِ وَالۡاَنۡفُسِ وَالثَّمَرٰتِ ؕ وَبَشِّرِ
الصّٰبِرِيۡنَ ﴿۱۵۵﴾ الَّذِيۡنَ اِذَاۤ اَصَابَتۡهُمۡ مُّصِيۡبَةٌ ۙ
قَالُوۡۤا اِنَّا لِلّٰهِ وَاِنَّاۤ اِلَيۡهِ رٰجِعُوۡنَ ﴿۱۵۶﴾ اُولٰٓٮِٕكَ
عَلَيۡهِمۡ صَلَوٰتٌ مِّنۡ رَّبِّهِمۡ وَرَحۡمَةٌ ۚ وَاُولٰٓٮِٕكَ
هُمُ الۡمُهۡتَدُوۡنَ ﴿۱۵۷﴾

ଆମ୍ଭେ ନିଶ୍ଚୟ ଭୟ ଓ କ୍ଷୁଧା ଦ୍ୱାରା ଏବଂ ଧନ-ଜୀବନ ବା ଫଳର ହାନୀ ଦ୍ୱାରା ତୁମମାନଙ୍କର ପରୀକ୍ଷା ନେବୁ । (ହେ ଈଶ୍ୱରଦୂତ!) ଧୈର୍ଯ୍ୟବାନ ଲୋକମାନଙ୍କୁ (ସ୍ୱର୍ଗର) ସୁସମାଚାର ଦିଅ, ଯେଉଁମାନେ ବିପଦ ପଡ଼ିଲେ (ଅଧୈର୍ଯ୍ୟ ନ ହୋଇ) କହନ୍ତି, "ଆମେ ଅଲ୍ଲାହଙ୍କର ଏବଂ ତାଙ୍କରି ନିକଟକୁ ଆମକୁ ଫେରିବାକୁ ହେବ ।" ଏହିମାନଙ୍କ ପ୍ରତି ସେମାନଙ୍କ ପ୍ରଭୁ ବିଶେଷ କୃପା ଓ କରୁଣା କରିଛନ୍ତି ଏବଂ ଏହିମାନେ ସତ୍‌ପଥରେ ଅଛନ୍ତି ।

(୨/୧୫୫-୧୫୭)

### ୧୦. ଦିବ୍ୟଗ୍ରନ୍ଥକୁ ଲୁଚାଇବା ମହାପାପ

اِنَّ الَّذِيۡنَ يَكۡتُمُوۡنَ مَاۤ اَنۡزَلۡنَا مِنَ الۡبَيِّنٰتِ وَ
الۡهُدٰى مِنۡۢ بَعۡدِ مَا بَيَّنّٰهُ لِلنَّاسِ فِى الۡكِتٰبِ ۙ
اُولٰٓٮِٕكَ يَلۡعَنُهُمُ اللّٰهُ وَيَلۡعَنُهُمُ اللّٰعِنُوۡنَ ۙ ﴿۱۵۹﴾

ଯେଉଁମାନେ ଆମ୍ଭେ ପଠାଇଥିବା ସେହି ପ୍ରମାଣ ଓ ଉପଦେଶଗୁଡ଼ିକୁ ଲୁଚାଇ ଦିଅନ୍ତି, ଯାହାକୁ ଆମ୍ଭେ (ନିଜ) ଗ୍ରନ୍ଥରେ ମାନବସମାଜ ପାଇଁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛୁ, ସେମାନଙ୍କୁ ଅଲ୍ଲାହଙ୍କର ଧିକ୍କାର ତଥା ଅନ୍ୟ ଶାପଦାତାଙ୍କର ମଧ୍ୟ ଧିକ୍କାର । (୨/୧୫୯)

### ୧୧. ତୁମମାନଙ୍କର ଈଶ୍ୱର ଜଣେ

وَاِلٰهُكُمۡ اِلٰهٌ وَّاحِدٌ ۚ لَاۤ اِلٰهَ اِلَّا هُوَ الرَّحۡمٰنُ
الرَّحِيۡمُ ﴿۱۶۳﴾

ତୁମମାନଙ୍କର ଈଶ୍ୱର, ଜଣେ ଈଶ୍ୱର । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । (ସେ) ଅତ୍ୟନ୍ତ ଦୟାବାନ ଅସୀମ କୃପାଶୀଳ । (୨/୧୬୩)

### ୧୨. ପିତୃପିତାମହଙ୍କ ଅନ୍ଧାନୁକରଣ କର ନାହିଁ

وَاِذَا قِيۡلَ لَهُمُ اتَّبِعُوۡا مَاۤ اَنۡزَلَ اللّٰهُ قَالُوۡا بَلۡ
نَتَّبِعُ مَاۤ اَلۡفَيۡنَا عَلَيۡهِ اٰبَآءَنَا ؕ اَوَلَوۡ كَانَ اٰبَآؤُهُمۡ

ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି ତାକୁ ମାନି ଚଳ, ସେମାନେ କୁହନ୍ତି "ନା! ଆମେ ଆମ ପିତୃପିତାମହଙ୍କ ପନ୍ଥାରେ ଚାଲିବୁ", ଯଦିଓ ସେମାନଙ୍କର

ପିତୃପିତାମହ କିଛି ବୁଝି ନଥିଲେ ବା ସତ୍‌ପଥରେ ନ ଥିଲେ (ତଥାପି ସେମାନଙ୍କୁ ଅନୁସରଣ କରିବେ) ? (୨/୧୭୦)

لَا يَعْقِلُوْنَ شَيْـًٔا وَّلَا يَهْتَدُوْنَ ﴿١٧٠﴾

### ୧୩. ପୁଣ୍ୟ କ'ଣ ?

ପୁଣ୍ୟ ଏହା ନୁହେଁ ଯେ ତୁମେମାନେ ନିଜ ମୁହଁ ପୂର୍ବ ବା ପଶ୍ଚିମ ଦିଗକୁ କରିନିଅ, ବରଂ (ପ୍ରକୃତ) ପୁଣ୍ୟ ହେଉଛି ଯେ, ମଣିଷ ବିଶ୍ୱାସ କରୁ ଅଲ୍ଲାହଙ୍କୁ, ପୁନର୍ଜନ୍ମ ଦିନକୁ, ଦେବଗଣଙ୍କୁ, ଦିବ୍ୟଗ୍ରନ୍ଥଗୁଡ଼ିକୁ ଏବଂ ଈଶ୍ୱରଦୂତଗଣଙ୍କୁ ଏବଂ ତାଙ୍କରି ପ୍ରେମରେ ଆତ୍ମୀୟ, ଅନାଥ, ଦରିଦ୍ର, ପଥଚାରୀ ଓ ଭିକ୍ଷୁକମାନଙ୍କ ପାଇଁ, ତଥା କ୍ରୀତଦାସମାନଙ୍କ ମୁକ୍ତି ପାଇଁ ଧନ ଖର୍ଚ୍ଚ କରୁ ତଥା ନମାଜ (ଅର୍ଥାତ୍ ଦୈନିକ ଉପାସନା) ପ୍ରତିଷ୍ଠା କରୁ ଏବଂ ଜକାତ (ଅର୍ଥାତ୍ ନିୟମିତ ଦାନ) ଦେଉ, ବଚନ ଦେଲେ ତାହା ରକ୍ଷା କରୁ ଏବଂ ଅଭାବ-ଅନାଟନରେ, ଦୁଃଖ-କଷ୍ଟରେ ତଥା ଯୁଦ୍ଧକାଳରେ ଧୈର୍ଯ୍ୟ ଅବଲମ୍ବନ କରୁ । ଏଇମାନେ ହିଁ ସଚ୍ଚୋଟ ଏବଂ ଏଇମାନେ ହିଁ ଧର୍ମନିଷ୍ଠ । (୨/୧୭୭)

لَيْسَ الْبِرَّ اَنْ تُوَلُّوْا وُجُوْهَكُمْ قِبَلَ الْمَشْرِقِ وَ
الْمَغْرِبِ وَلٰكِنَّ الْبِرَّ مَنْ اٰمَنَ بِاللّٰهِ وَ الْيَوْمِ
الْاٰخِرِ وَ الْمَلٰٓئِكَةِ وَ الْكِتٰبِ وَ النَّبِيّٖنَ ۚ وَ اٰتَى
الْمَالَ عَلٰى حُبِّهٖ ذَوِى الْقُرْبٰى وَ الْيَتٰمٰى وَ
الْمَسٰكِيْنَ وَ ابْنَ السَّبِيْلِ ۙ وَ السَّآئِلِيْنَ وَ فِى
الرِّقَابِ ۚ وَ اَقَامَ الصَّلٰوةَ وَ اٰتَى الزَّكٰوةَ ۚ وَ
الْمُوْفُوْنَ بِعَهْدِهِمْ اِذَا عٰهَدُوْا ۚ وَ الصّٰبِرِيْنَ فِى
الْبَاْسَآءِ وَ الضَّرَّآءِ وَ حِيْنَ الْبَاْسِ ؕ اُولٰٓئِكَ
الَّذِيْنَ صَدَقُوْا ؕ وَ اُولٰٓئِكَ هُمُ الْمُتَّقُوْنَ ﴿١٧٧﴾

### ୧୪. ରମଜାନ ମାସରେ ଉପବାସ ପାଳନ କର

ହେ ସଦ୍‌ବିଶ୍ୱାସୀଗଣ ! ତୁମମାନଙ୍କ ପାଇଁ ଉପବାସ ଅପରିହାର୍ଯ୍ୟ କରାଗଲା ଯେପରି ତୁମ ପୂର୍ବଜମାନଙ୍କ ପାଇଁ ଏହା ଅପରିହାର୍ଯ୍ୟ କରାଯାଇଥିଲା, ଯେପରିକି ତୁମେ ସଦାଚାରୀ ହେବ । (୨/୧୮୩)

يٰٓاَيُّهَا الَّذِيْنَ اٰمَنُوْا كُتِبَ عَلَيْكُمُ الصِّيَامُ
كَمَا كُتِبَ عَلَى الَّذِيْنَ مِنْ قَبْلِكُمْ لَعَلَّكُمْ
تَتَّقُوْنَ ۙ﴿١٨٣﴾

### ୧୫. ଅଲ୍ଲାହ୍ ଭକ୍ତମାନଙ୍କର ନିକଟରେ ଅଛନ୍ତି

(ହେ ଈଶ୍ୱରଦୂତ !) ଯଦି ମୋ' ଭକ୍ତମାନେ ତୁମକୁ ମୋ' ବିଷୟରେ ପଚାରନ୍ତି, ତେବେ (ସେମାନଙ୍କୁ କହିଦିଅ ) ମୁଁ ତ ସେମାନଙ୍କ ନିକଟରେ ଅଛି । ଯେତେବେଳେ ମୋତେ କେହି ଡାକେ, ମୁଁ ତା' ଗୁହାରୀ ଶୁଣେ । ସୁତରାଂ, ସେମାନେ ମୋ' ଆଜ୍ଞା ପାଳନ କରନ୍ତୁ ଏବଂ ମୋ' ପ୍ରତି ବିଶ୍ୱାସ ରଖନ୍ତୁ, ଯାହାଫଳରେ ସେମାନେ ସତ୍‌ପଥ ପାଇବେ । (୨/୧୮୬)

وَ اِذَا سَاَلَكَ عِبَادِىْ عَنِّىْ فَاِنِّىْ قَرِيْبٌ ؕ اُجِيْبُ
دَعْوَةَ الدَّاعِ اِذَا دَعَانِ ۙ فَلْيَسْتَجِيْبُوْا لِىْ وَ
لْيُؤْمِنُوْا بِىْ لَعَلَّهُمْ يَرْشُدُوْنَ ﴿١٨٦﴾

### ୧୬. ପରଧନ ଆତ୍ମସାତ କର ନାହିଁ

ତୁମେମାନେ ଅନ୍ୟାୟରେ ପରସ୍ପରର ଧନସଂପତ୍ତି ଖାଇଯାଅ ନାହିଁ କିମ୍ବା ଅସଦୁପାୟରେ କାହାରି ସଂପତ୍ତି ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ (ଲାଂଚ ରୂପେ) ଅଧିକାରୀଙ୍କୁ ଧନ ଦିଅ ନାହିଁ। ଏହା (ପାପ ବୋଲି) ତୁମେମାନେ ଜାଣ। (୨/୧୮୮)

وَ لَا تَاْكُلُوْٓا اَمْوَالَكُمْ بَيْنَكُمْ بِالْبَاطِلِ وَ تُدْلُوْا بِهَآ اِلَى الْحُكَّامِ لِتَاْكُلُوْا فَرِيْقًا مِّنْ اَمْوَالِ النَّاسِ بِالْاِثْمِ وَ اَنْتُمْ تَعْلَمُوْنَ ﴿۱۸۸﴾

### ୧୭. ତୁମ ଉପରେ ଆକ୍ରମଣ ହେଲେ ଆତ୍ମରକ୍ଷା କର

ଅଲ୍ଲାହଙ୍କ ମାର୍ଗରେ ସେଇମାନଙ୍କ ସହ ଯୁଦ୍ଧ କର ଯେଉଁମାନେ ତୁମ ସହ ଯୁଦ୍ଧ କରୁଛନ୍ତି, କିନ୍ତୁ (ଅତ୍ୟାଚାର କରି) ସୀମା ଲଂଘନ କରନାହିଁ। ନିଃସନ୍ଦେହ, ଅଲ୍ଲାହ୍ ସୀମାଲଂଘନକାରୀଙ୍କୁ ପସନ୍ଦ କରନ୍ତି ନାହିଁ। (୨/୧୯୦)

وَ قَاتِلُوْا فِيْ سَبِيْلِ اللّٰهِ الَّذِيْنَ يُقَاتِلُوْنَكُمْ وَ لَا تَعْتَدُوْا ؕ اِنَّ اللّٰهَ لَا يُحِبُّ الْمُعْتَدِيْنَ ﴿۱۹۰﴾

### ୧୮. ଅଲ୍ଲାହ୍ ପରୋପକାରୀଙ୍କୁ ପ୍ରେମ କରନ୍ତି

ଅଲ୍ଲାହଙ୍କ ମାର୍ଗରେ (ଧନ) ଖର୍ଚ୍ଚ କର ଆଉ ନିଜ ହାତରେ ନିଜର ସର୍ବନାଶ କରନାହିଁ। ପରୋପକାର କର। ବାସ୍ତବରେ ଅଲ୍ଲାହ୍ ପରୋପକାରୀମାନଙ୍କୁ ପ୍ରେମ କରନ୍ତି। (୨/୧୯୫)

وَ اَنْفِقُوْا فِيْ سَبِيْلِ اللّٰهِ وَ لَا تُلْقُوْا بِاَيْدِيْكُمْ اِلَى التَّهْلُكَةِ ۛۚ وَ اَحْسِنُوْا ۛۚ اِنَّ اللّٰهَ يُحِبُّ الْمُحْسِنِيْنَ ﴿۱۹۵﴾

### ୧୯. ହଜ୍ କାଳରେ ଅପକର୍ମ କରନାହିଁ

ହଜ୍‌ର ମାସ ନିର୍ଦ୍ଧାରିତ। ଯିଏ ଏହି ମାସରେ ହଜ୍‌ର ସଂକଳ୍ପ କରେ, ତା' ପକ୍ଷରେ ହଜ୍ କାଳରେ କୌଣସି ଅଶ୍ଲୀଳ କର୍ମ, ଅସଦାଚରଣ ଅଥବା କଳହ (ଆଦି) କରିବା ଉଚିତ ନୁହେଁ। ତୁମେମାନେ ଯାହା ସତ୍‌କର୍ମ କର ଅଲ୍ଲାହ ତାହା ଜାଣନ୍ତି। (ହଜ ଯାତ୍ରା ପାଇଁ) ସଂଗରେ ବାଟଖର୍ଚ୍ଚ ନିଅ, ମାତ୍ର ଧର୍ମପରାୟଣତା ହେଉଛି ସର୍ବୋତ୍ତମ ପାଥେୟ। ହେ ବୁଦ୍ଧିମାନମାନେ! ମୋ ପ୍ରତି ଭୟ ରଖ। (୨/୧୯୭)

اَلْحَجُّ اَشْهُرٌ مَّعْلُوْمٰتٌ ۚ فَمَنْ فَرَضَ فِيْهِنَّ الْحَجَّ فَلَا رَفَثَ وَ لَا فُسُوْقَ ۙ وَ لَا جِدَالَ فِي الْحَجِّ ؕ وَ مَا تَفْعَلُوْا مِنْ خَيْرٍ يَّعْلَمْهُ اللّٰهُ ؕ وَ تَزَوَّدُوْا فَاِنَّ خَيْرَ الزَّادِ التَّقْوٰى ۫ وَ اتَّقُوْنِ يٰٓاُولِي الْاَلْبَابِ ﴿۱۹۷﴾

### ୨୦. ଧନ କାହା ପାଇଁ ଖର୍ଚ୍ଚ କରିବ ?

ଲୋକେ ତୁମକୁ ପଚାରୁଛନ୍ତି ଯେ ସେମାନେ କ'ଣ ଖର୍ଚ୍ଚ କରିବେ। ସେମାନଙ୍କୁ କୁହ "ଯାହା (ଧନ) ତୁମେମାନେ ଖର୍ଚ୍ଚ କରିବ, ତାହା ତୁମ ପିତାମାତାଙ୍କ ପାଇଁ, ଆତ୍ମୀୟମାନଙ୍କ ପାଇଁ ତଥା ଅନାଥ, ଦରିଦ୍ର ଓ (ଅସହାୟ) ପଥଚାରୀମାନଙ୍କ ପାଇଁ (ଖର୍ଚ୍ଚ) ହେବା ଉଚିତ। ଯାହା ପୁଣ୍ୟକର୍ମ ତୁମେମାନେ କର, ତାହା ଅଲ୍ଲାହ୍ ଅବଶ୍ୟ ଜାଣନ୍ତି।" (୨/୨୧୫)

يَسْـَٔلُوْنَكَ مَاذَا يُنْفِقُوْنَ ؕ قُلْ مَآ اَنْفَقْتُمْ مِّنْ خَيْرٍ فَلِلْوَالِدَيْنِ وَ الْاَقْرَبِيْنَ وَ الْيَتٰمٰى وَ الْمَسٰكِيْنِ وَ ابْنِ السَّبِيْلِ ؕ وَ مَا تَفْعَلُوْا مِنْ خَيْرٍ فَاِنَّ اللّٰهَ بِهٖ عَلِيْمٌ ﴿۲۱۵﴾

### ୨୧. ମଦ ଓ ଜୁଆ ମହାପାପ

لِيَسْـَٔلُوْنَكَ عَنِ الْخَمْرِ وَ الْمَيْسِرِ ؕ قُلْ فِيْهِمَاۤ اِثْمٌ كَبِيْرٌ وَّ مَنَافِعُ لِلنَّاسِ ۫ وَ اِثْمُهُمَاۤ اَكْبَرُ مِنْ نَّفْعِهِمَا ؕ

ଲୋକମାନେ ତୁମକୁ ମଦ୍ୟପାନ ଓ ଜୁଆଖେଳ ବିଷୟରେ ପ୍ରଶ୍ନ କରୁଛନ୍ତି । କହିଦିଅ, "ଏଇ ଦୁଇଟି ଯାକ (କର୍ମ) ମହାପାପ ଏବଂ ଏଥିରୁ ଲୋକଙ୍କର କିଛି ଲାଭ ମଧ୍ୟ ହୁଏ, କିନ୍ତୁ ଲାଭ ତୁଳନାରେ ଏଗୁଡ଼ିକର ପାପ ଢ଼େର ବେଶୀ ।" (୨/୨୧୯)

### ୨୨. ବଳକା ଧନ ଦାନ କରିଦିଅ

وَ يَسْـَٔلُوْنَكَ مَاذَا يُنْفِقُوْنَ ؕ قُلِ الْعَفْوَ ؕ كَذٰلِكَ يُبَيِّنُ اللّٰهُ لَكُمُ الْاٰيٰتِ لَعَلَّكُمْ تَتَفَكَّرُوْنَ ﴿۲۱۹﴾

ସେମାନେ ତୁମକୁ ପଚାରୁଛନ୍ତି ଯେ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) କେତେ ଧନ ଖର୍ଚ୍ଚ କରିବେ? କହିଦିଅ, "ଯାହା (ତୁମ ଆବଶ୍ୟକତା ପୂରଣ ହେଲା ପରେ) ବଳକା ରହିଯାଏ ।" ଏହିପରି ଅଲ୍ଲାହ୍ ତୁମମାନଙ୍କ ପାଇଁ ଆଦେଶଗୁଡ଼ିକୁ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ଧ୍ୟାନ ଦେବ । (୨/୨୧୯)

### ୨୩. ଅନାଥମାନଙ୍କୁ ସହାୟ ହୁଅ

وَ يَسْـَٔلُوْنَكَ عَنِ الْيَتٰمٰى ؕ قُلْ اِصْلَاحٌ لَّهُمْ خَيْرٌ ؕ وَ اِنْ تُخَالِطُوْهُمْ فَاِخْوَانُكُمْ ؕ وَ اللّٰهُ يَعْلَمُ الْمُفْسِدَ مِنَ الْمُصْلِحِ ؕ وَ لَوْ شَآءَ اللّٰهُ لَاَعْنَتَكُمْ ؕ اِنَّ اللّٰهَ عَزِيْزٌ حَكِيْمٌ ﴿۲۲۰﴾

ତୁମକୁ ଅନାଥମାନଙ୍କ ବିଷୟରେ ପଚାରୁଛନ୍ତି । କହିଦିଅ ଯେ ଯେଉଁଥିରେ ସେମାନଙ୍କର ହିତ ଥାଏ, ତାହାହିଁ କରିବା ଉଚିତ । ଯଦି ତୁମେମାନେ ସେମାନଙ୍କ ସହିତ ମିଳିମିଶି ରୁହ, (ତେବେ ତ ଖୁବ୍ ଭଲ, କାରଣ) ସେମାନେ ବି ତୁମର ଭାଇ ! ଅଲ୍ଲାହ୍ ବେଶ୍ ଜାଣନ୍ତି ଯେ କିଏ ଶାନ୍ତି ଭଂଗ କରେ ଏବଂ କିଏ ଶାନ୍ତି ରକ୍ଷା କରେ । ଯଦି ଅଲ୍ଲାହ ଇଚ୍ଛା କରିଥାଆନ୍ତେ, ତୁମମାନଙ୍କ ପାଇଁ କଷ୍ଟକର ଆଦେଶ ଦେଇଥାଆନ୍ତେ । ଅଲ୍ଲାହ ଅବଶ୍ୟ ପରାକ୍ରମୀ ଓ ତତ୍ତ୍ୱଦର୍ଶୀ । (୨/୨୨୦)

### ୨୪. ବହୁଈଶ୍ୱରବାଦୀଙ୍କ ସହ ବିବାହ କରନାହିଁ

وَ لَا تَنْكِحُوا الْمُشْرِكٰتِ حَتّٰى يُؤْمِنَّ ؕ وَ لَاَمَةٌ مُّؤْمِنَةٌ خَيْرٌ مِّنْ مُّشْرِكَةٍ وَّ لَوْ اَعْجَبَتْكُمْ ۚ وَ لَا تُنْكِحُوا الْمُشْرِكِيْنَ حَتّٰى يُؤْمِنُوْا ؕ وَ لَعَبْدٌ مُّؤْمِنٌ خَيْرٌ مِّنْ مُّشْرِكٍ وَّ لَوْ اَعْجَبَكُمْ ؕ اُولٰٓئِكَ يَدْعُوْنَ اِلَى النَّارِ ۖۚ وَ اللّٰهُ يَدْعُوْۤا اِلَى الْجَنَّةِ وَ

ବହୁଈଶ୍ୱରବାଦୀ ମହିଳାମାନେ ଆସ୍ଥା ନ ରଖିବା ପର୍ଯ୍ୟନ୍ତ ସେମାନଙ୍କୁ ବିବାହ କରନାହିଁ । ଜଣେ ବହୁଈଶ୍ୱରବାଦିନୀ ମହିଳା ତୁମକୁ ଯେତେ ଭଲ ଲାଗିଲେ ମଧ୍ୟ ସଦ୍‌ବିଶ୍ୱାସିନୀ ଦାସୀ ତା'ଠାରୁ ଭଲ ଏବଂ ବହୁଈଶ୍ୱରବାଦୀ ପୁରୁଷମାନେ ଆସ୍ଥା ନ ରଖିବା ପର୍ଯ୍ୟନ୍ତ ସେମାନଙ୍କ ସହ ନିଜ ମହିଳାମାନଙ୍କର ବିବାହ ଦିଅ ନାହିଁ, କାରଣ ବହୁଈଶ୍ୱରବାଦୀ ପୁରୁଷ ତୁମକୁ ଯେତେ ଭଲ ଲାଗୁଥିଲେ ମଧ୍ୟ ଜଣେ ସଦ୍‌ବିଶ୍ୱାସୀ ଦାସ ତା' ଅପେକ୍ଷା ଭଲ । ସେମାନେ ନର୍କକୁ ଡାକନ୍ତି ଏବଂ ଅଲ୍ଲାହ ନିଜ ଆଦେଶ ଦ୍ୱାରା ସ୍ୱର୍ଗ ଓ ମୋକ୍ଷର

ଆମନ୍ତ୍ରଣ ଦିଅନ୍ତି । ସେ ନିଜ ଆଦେଶଗୁଡ଼ିକୁ ଲୋକମାନଙ୍କ ପାଇଁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ସେମାନେ ଶିକ୍ଷାଲାଭ କରିବେ । (୨/୨୨୧)

الْمَغْفِرَةِ بِإِذْنِهِ ۚ وَيُبَيِّنُ آيَاتِهِ لِلنَّاسِ لَعَلَّهُمْ
يَتَذَكَّرُونَ ﴿٢٢١﴾

## ୨୫. ରତୁକାଳରେ ସହବାସ କରନାହିଁ

ଲୋକମାନେ ତୁମକୁ ରତୁସ୍ରାବ ସଂପର୍କରେ ପଚାରୁଛନ୍ତି । କହିଦିଅ ଯେ ଏହା ଏକ ଅଶୁଦ୍ଧତା । ସୁତରାଂ, ରତୁସ୍ରାବ କାଳରେ ପତ୍ନୀମାନଙ୍କଠାରୁ ଦୂରେଇ ରୁହ ଏବଂ ସେମାନେ ଶୁଦ୍ଧ ନ ହେବା ପର୍ଯ୍ୟନ୍ତ ସେମାନଙ୍କ ପାଖକୁ ଯାଅ ନାହିଁ (ଅର୍ଥାତ୍ ସହବାସ କରନାହିଁ) । ପୁଣି ଯେତେବେଳେ ସେମାନେ (ରତୁସ୍ନାନ ପରେ) ଶୁଦ୍ଧ ହୋଇଯାଆନ୍ତି, ସେତେବେଳେ ଅଲ୍ଲାହଙ୍କ ଆଜ୍ଞା ଅନୁଯାୟୀ ସେମାନଙ୍କ ପାଖକୁ ଯାଅ । ଅଲ୍ଲାହ୍ ଅବଶ୍ୟ ସେମାନଙ୍କୁ ପ୍ରେମ କରନ୍ତି ଯେଉଁମାନେ ପଶ୍ଚାତାପ କରନ୍ତି ଏବଂ ଶୁଦ୍ଧ ଓ ପବିତ୍ର ରହନ୍ତି । (୨/୨୨୨)

وَيَسْأَلُونَكَ عَنِ الْمَحِيضِ ۖ قُلْ هُوَ أَذًى
فَاعْتَزِلُوا النِّسَاءَ فِي الْمَحِيضِ ۖ وَلَا تَقْرَبُوهُنَّ
حَتَّىٰ يَطْهُرْنَ ۖ فَإِذَا تَطَهَّرْنَ فَأْتُوهُنَّ مِنْ حَيْثُ
أَمَرَكُمُ اللَّهُ ۚ إِنَّ اللَّهَ يُحِبُّ التَّوَّابِينَ وَيُحِبُّ
الْمُتَطَهِّرِينَ ﴿٢٢٢﴾

## ୨୬. ତଲାକ୍ ନିୟମ ଉଲଂଘନ କରନାହିଁ

ତଲାକ୍ ନେଇଥିବା ମହିଳାମାନେ ତିନୋଟି ରତୁକାଳ ଅପେକ୍ଷା କରନ୍ତୁ । ଯଦି ଅଲ୍ଲାହ ଓ ପୁନର୍ଜନ୍ମ ଦିନ ପ୍ରତି ସେମାନଙ୍କର ବିଶ୍ୱାସ ଥାଏ, ତେବେ ଅଲ୍ଲାହ ସେମାନଙ୍କ ଗର୍ଭରେ ଯାହା ସୃଷ୍ଟି କରିଛନ୍ତି, ତାକୁ ଲୁଚାଇ ରଖିବା ସେମାନଙ୍କ ପାଇଁ ବୈଧ ନୁହେଁ । ଏହି ଅବଧିରେ ଯଦି ସେମାନଙ୍କ ସ୍ୱାମୀ ଆପୋଷ ସମାଧାନ ପାଇଁ ଇଚ୍ଛୁକ ହୁଅନ୍ତି, ତେବେ ପତ୍ନୀମାନଙ୍କୁ ଫେରାଇ ନେବାର ଅଧିକାର ସେମାନଙ୍କର ଅଛି । ପୁରୁଷମାନଙ୍କ ପରି ନାରୀମାନଙ୍କର ସମୁଚିତ ପନ୍ଥା ଅନୁଯାୟୀ ସମାନ ଅଧିକାର ରହିଛି ଏବଂ ସେମାନଙ୍କ ଉପରେ ପୁରୁଷମାନଙ୍କର କିଛି ପ୍ରାଧାନ୍ୟ ରହିଛି । ଅଲ୍ଲାହ ହିଁ ପରାକ୍ରମୀ ଓ ତତ୍ତ୍ୱଜ୍ଞ ।

وَالْمُطَلَّقَاتُ يَتَرَبَّصْنَ بِأَنْفُسِهِنَّ ثَلَاثَةَ قُرُوءٍ ۚ وَلَا
يَحِلُّ لَهُنَّ أَنْ يَكْتُمْنَ مَا خَلَقَ اللَّهُ فِي أَرْحَامِهِنَّ
إِنْ كُنَّ يُؤْمِنَّ بِاللَّهِ وَالْيَوْمِ الْآخِرِ ۚ وَبُعُولَتُهُنَّ
أَحَقُّ بِرَدِّهِنَّ فِي ذَٰلِكَ إِنْ أَرَادُوا إِصْلَاحًا ۚ وَلَهُنَّ
مِثْلُ الَّذِي عَلَيْهِنَّ بِالْمَعْرُوفِ ۚ وَلِلرِّجَالِ
عَلَيْهِنَّ دَرَجَةٌ ۗ وَاللَّهُ عَزِيزٌ حَكِيمٌ ﴿٢٢٨﴾

ତଲାକ୍ ଦୁଇଥର । ଏହାପରେ ନିୟମାନୁଯାୟୀ (ପତ୍ନୀକୁ) ଅଟକାଇ ନେବା ଉଚିତ କିମ୍ବା ବଦାନ୍ୟତାର ସହ ବିଦାୟ ଦେବା ଉଚିତ ଏବଂ ତୁମମାନେ ଯାହା ସେମାନଙ୍କୁ ଦେଇସାରିଛ, (ତଲାକ୍ ପରେ) ସେଥିରୁ କିଛି ଫେରାଇନେବା ତୁମମାନଙ୍କ ପାଇଁ ବୈଧ ନୁହେଁ । ହଁ, ଯଦି ଉଭୟଙ୍କର ଆଶଙ୍କା ହୁଏ ଯେ ସେମାନେ ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମା ମଧ୍ୟରେ ରହିପାରିବେ ନାହିଁ, ତେବେ

الطَّلَاقُ مَرَّتَانِ ۖ فَإِمْسَاكٌ بِمَعْرُوفٍ أَوْ تَسْرِيحٌ
بِإِحْسَانٍ ۗ وَلَا يَحِلُّ لَكُمْ أَنْ تَأْخُذُوا مِمَّا
آتَيْتُمُوهُنَّ شَيْئًا إِلَّا أَنْ يَخَافَا أَلَّا يُقِيمَا حُدُودَ

اللّٰهِ ؕ فَاِنۡ خِفۡتُمۡ اَلَّا يُقِيۡمَا حُدُوۡدَ اللّٰهِ ۙ فَلَا جُنَاحَ
عَلَيۡهِمَا فِيۡمَا افۡتَدَتۡ بِهٖ ؕ تِلۡكَ حُدُوۡدُ اللّٰهِ فَلَا
تَعۡتَدُوۡهَا ۚ وَمَنۡ يَّتَعَدَّ حُدُوۡدَ اللّٰهِ فَاُولٰٓـئِكَ هُمُ
الظّٰلِمُوۡنَ ﴿٢٢٩﴾

ଅଲ୍ଲାହଙ୍କ ନିରୂପିତ ସୀମାର ଉଲଂଘନର ଆଶଂକା ଥିଲେ, ପତ୍ନୀ ନିଜକୁ ମୁକ୍ତ କରିବାପାଇଁ ଯଦି କିଛି ଦେଇଦିଏ, ତେବେ ଉଭୟଙ୍କୁ କୌଣସି ପାପ ହେବ ନାହିଁ । ଏହା ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମା । ସୁତରାଂ ଏହାର ଉଲଂଘନ କରନାହିଁ । ଆଉ ଯେଉଁମାନେ ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମା ଲଂଘନ କରନ୍ତି ସେମାନେ ଅତ୍ୟାଚାରୀ ।

فَاِنۡ طَلَّقَهَا فَلَا تَحِلُّ لَهٗ مِنۡۢ بَعۡدُ حَتّٰى تَنۡكِحَ
زَوۡجًا غَيۡرَهٗ ؕ فَاِنۡ طَلَّقَهَا فَلَا جُنَاحَ عَلَيۡهِمَاۤ
اَنۡ يَّتَرَاجَعَاۤ اِنۡ ظَنَّاۤ اَنۡ يُّقِيۡمَا حُدُوۡدَ اللّٰهِ ؕ وَ
تِلۡكَ حُدُوۡدُ اللّٰهِ يُبَيِّنُهَا لِقَوۡمٍ يَّعۡلَمُوۡنَ ﴿٢٣٠﴾
وَاِذَا طَلَّقۡتُمُ النِّسَآءَ فَبَلَغۡنَ اَجَلَهُنَّ
فَاَمۡسِكُوۡهُنَّ بِمَعۡرُوۡفٍ اَوۡ سَرِّحُوۡهُنَّ بِمَعۡرُوۡفٍ ۖ وَ
لَا تُمۡسِكُوۡهُنَّ ضِرَارًا لِّتَعۡتَدُوۡا ۚ وَمَنۡ يَّفۡعَلۡ ذٰلِكَ
فَقَدۡ ظَلَمَ نَفۡسَهٗ ؕ وَلَا تَتَّخِذُوۡۤا اٰيٰتِ اللّٰهِ هُزُوًا ۚ وَّ
اذۡكُرُوۡا نِعۡمَتَ اللّٰهِ عَلَيۡكُمۡ وَمَاۤ اَنۡزَلَ عَلَيۡكُمۡ مِّنَ
الۡكِتٰبِ وَالۡحِكۡمَةِ يَعِظُكُمۡ بِهٖ ؕ وَاتَّقُوا اللّٰهَ وَ
اعۡلَمُوۡۤا اَنَّ اللّٰهَ بِكُلِّ شَىۡءٍ عَلِيۡمٌ ﴿٢٣١﴾

ଯଦି ପତି ପୁଣି (ତୃତୀୟ) ତଲାକ୍ ଦିଏ, ତେବେ ଯେପର୍ଯ୍ୟନ୍ତ ସେ ନାରୀ ଅନ୍ୟ ପୁରୁଷ ସହ ବିବାହ ନ କରେ, ସେ ତା' ପୂର୍ବ ସ୍ୱାମୀର ବିବାହଯୋଗ୍ୟା ନୁହେଁ । ଯଦି (କେତେବେଳେ) ଦ୍ୱିତୀୟ ପତି ତାକୁ ଛାଡ଼ପତ୍ର ଦେଇଦିଏ ଆଉ ଉଭୟଙ୍କର (ପ୍ରଥମ ପତିପତ୍ନୀଙ୍କର) ହୃଦବୋଧ ହୁଏ ଯେ ଏବେ ସେମାନେ ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମାର ଆଦର କରିବେ, ତେବେ ଉଭୟ ପୁନର୍ବାର (ବିବାହ କରି) ପରସ୍ପର ମିଶିବାରେ କୌଣସି ପାପ ନାହିଁ । ଏଗୁଡ଼ିକ ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମା, ଯାହାକୁ ସେ ବୁଦ୍ଧିମାନମାନଙ୍କ ପାଇଁ ବର୍ଣ୍ଣନା କରୁଅଛନ୍ତି । ଯଦି ତୁମେମାନେ ପତ୍ନୀମାନଙ୍କୁ ତଲାକ୍ ଦିଅ ଏବଂ ସେମାନଙ୍କର ନିର୍ଦ୍ଧାରିତ ପ୍ରତୀକ୍ଷା କାଳ (ଇଦ୍ଦତ୍) ପୂରିଯାଏ, ତେବେ ସମୁଚିତ ପନ୍ଥା ଅନୁଯାୟୀ ସେମାନଙ୍କୁ ଗ୍ରହଣ କର କିମ୍ବା ଭଲ ଭାବରେ ବିଦାୟ ଦିଅ । ସେମାନଙ୍କୁ କଷ୍ଟ ବା ନିର୍ଯ୍ୟାତନା ଦେବା ଉଦ୍ଦେଶ୍ୟରେ ଅଟକାଇ ରଖ ନାହିଁ । ଯିଏ ଏହା କରେ ସେ ପ୍ରକୃତରେ ନିଜ ପ୍ରତି ଅତ୍ୟାଚାର କରେ । ଅଲ୍ଲାହଙ୍କ ଆଦେଶ ପ୍ରତି ଉପହାସ କର ନାହିଁ ଏବଂ ନିଜ ପ୍ରତି ଅଲ୍ଲାହଙ୍କ ଅନୁଗ୍ରହଗୁଡ଼ିକୁ ମନେ ପକାଅ ଯେ ସେ ତୁମମାନଙ୍କ ମାର୍ଗଦର୍ଶନ ପାଇଁ ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ପ୍ରକଟ କରିଛନ୍ତି । ଅଲ୍ଲାହଙ୍କ ପ୍ରତି ଭୟ ରଖ ଏବଂ ଜାଣିରଖ ଯେ ଅଲ୍ଲାହ ସବୁକିଛି ଜାଣନ୍ତି ।

وَاِذَا طَلَّقۡتُمُ النِّسَآءَ فَبَلَغۡنَ اَجَلَهُنَّ فَلَا
تَعۡضُلُوۡهُنَّ اَنۡ يَّنۡكِحۡنَ اَزۡوَاجَهُنَّ اِذَا تَرَاضَوۡا
بَيۡنَهُمۡ بِالۡمَعۡرُوۡفِ ؕ ذٰلِكَ يُوۡعَظُ بِهٖ مَنۡ كَانَ

ଯଦି ତୁମେ ପତ୍ନୀମାନଙ୍କୁ (ପ୍ରଥମ ବା ଦ୍ୱିତୀୟ ଥର) ତଲାକ ଦିଅ ଆଉ ସେମାନେ ନିର୍ଦ୍ଧାରିତ ପ୍ରତୀକ୍ଷାକାଳ ପୂରଣ କରିନିଅନ୍ତି ଏବଂ ସମୁଚିତ ପନ୍ଥା ଅନୁଯାୟୀ ସହମତ ହୁଅନ୍ତି, ତେବେ (ହେ ଅଭିଭାବକମାନେ !) ପତିମାନଙ୍କ ସହିତ ସେମାନଙ୍କ ପୁନର୍ବିବାହରେ ପ୍ରତିବନ୍ଧକ ସୃଷ୍ଟି କରନାହିଁ । ଏହି ଉପଦେଶ

ସେଇମାନଙ୍କୁ ଦିଆଯାଉଛି ଯେଉଁମାନେ ଅଲ୍ଲାହ ଏବଂ ପରଲୋକ ପ୍ରତି ବିଶ୍ୱାସ କରନ୍ତି । ଏହା ତୁମମାନଙ୍କପାଇଁ ଅତି ବିଶୁଦ୍ଧ ଓ ପବିତ୍ର ପନ୍ଥା । ଅଲ୍ଲାହ ହିଁ ଜାଣନ୍ତି କିନ୍ତୁ ତୁମେମାନେ ଜାଣ ନାହିଁ ।
(୨/୨୨୮-୨୩୨)

مِنكُمْ يُؤْمِنُ بِاللَّهِ وَالْيَوْمِ الْآخِرِ ۗ ذَٰلِكُمْ
أَزْكَىٰ لَكُمْ وَأَطْهَرُ ۗ وَاللَّهُ يَعْلَمُ وَأَنتُمْ لَا
تَعْلَمُونَ ﴿٢٣٢﴾

## ୨୭. ଈଶ୍ୱରଙ୍କୁ ନିଦ ଆସେ ନାହିଁ

ଅଲ୍ଲାହ୍‌ଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି । ସେ ସଦା ଜୀବନ୍ତ ଏବଂ ସଭିଙ୍କର ଧାରଣକର୍ତ୍ତା, ଯାହାଙ୍କୁ ତନ୍ଦ୍ରା ଲାଗେ ନାହିଁ ବା ନିଦ ଆସେ ନାହିଁ । ଯାହା ଅନ୍ତରୀକ୍ଷରେ ଅଛି ଏବଂ ଯାହା ପୃଥିବୀରେ ଅଛି, ସବୁ ତାଙ୍କରି । କିଏ ଅଛି, ଯିଏକି ତାଙ୍କ ଅନୁମତି ବିନା ତାଙ୍କ ନିକଟରେ ସୁପାରିଶ କରିପାରିବ ? ସେ ଜାଣନ୍ତି, ଯାହା ସେମାନଙ୍କ ଆଗରେ ଅଛି ବା ପଛରେ ଅଛି ଏବଂ ସେମାନେ ତାଙ୍କ ବିନା ଇଛାରେ ତାଙ୍କ ଜ୍ଞାନରୁ କିଛି ଲାଭ କରିପାରିବେ ନାହିଁ । ତାଙ୍କର ଆଧିପତ୍ୟ ସମଗ୍ର ପୃଥିବୀ ଓ ଅନ୍ତରୀକ୍ଷରେ ପରିବ୍ୟାପ୍ତ ଏବଂ ସେଗୁଡିକର ସୁରକ୍ଷା ତାଙ୍କୁ କ୍ଲାନ୍ତ କରେନାହିଁ । ସେ ସର୍ବଶ୍ରେଷ୍ଠ ଏବଂ ସର୍ବମହାନ । (୨/୨୫୫)

اللَّهُ لَا إِلَٰهَ إِلَّا هُوَ الْحَيُّ الْقَيُّومُ ۚ لَا تَأْخُذُهُ سِنَةٌ
وَلَا نَوْمٌ ۚ لَّهُ مَا فِي السَّمَاوَاتِ وَمَا فِي الْأَرْضِ ۗ
مَن ذَا الَّذِي يَشْفَعُ عِندَهُ إِلَّا بِإِذْنِهِ ۚ يَعْلَمُ مَا
بَيْنَ أَيْدِيهِمْ وَمَا خَلْفَهُمْ ۖ وَلَا يُحِيطُونَ بِشَيْءٍ
مِّنْ عِلْمِهِ إِلَّا بِمَا شَاءَ ۚ وَسِعَ كُرْسِيُّهُ السَّمَاوَاتِ
وَالْأَرْضَ ۖ وَلَا يَئُودُهُ حِفْظُهُمَا ۚ وَهُوَ الْعَلِيُّ
الْعَظِيمُ ﴿٢٥٥﴾

## ୨୮. ଧର୍ମରେ ଜୋର-ଜବରଦସ୍ତି ନାହିଁ

ଧର୍ମରେ ଜୋର ଜବରଦସ୍ତି ନାହିଁ । ସତ୍‌ମାର୍ଗକୁ ଅସତ୍ ମାର୍ଗରୁ ପୃଥକ କରି ଦିଆ ଯାଇଛି । (୨/୨୫୬)

لَا إِكْرَاهَ فِي الدِّينِ ۖ قَد تَّبَيَّنَ الرُّشْدُ مِنَ
الْغَيِّ ۚ

## ୨୯. ଭିକ୍ଷୁକକୁ କଷ୍ଟ ଦିଅନାହିଁ

ଦାନ ଦେଇସାରି (ଭିକ୍ଷୁକକୁ) କଷ୍ଟ ଦେବା ଅପେକ୍ଷା ମିଠାକଥା ପଦେ କହି ଛାଡ଼ିଦେବା ଭଲ ଏବଂ (ଜାଣିରଖ) ଅଲ୍ଲାହ୍ ଆବଶ୍ୟକତାରହିତ ଏବଂ ସହନଶୀଳ । (୨/୨୬୩)

قَوْلٌ مَّعْرُوفٌ وَمَغْفِرَةٌ خَيْرٌ مِّن صَدَقَةٍ يَتْبَعُهَا
أَذًى ۗ وَاللَّهُ غَنِيٌّ حَلِيمٌ ﴿٢٦٣﴾

## ୩୦. ଲୋକଦେଖାଣିଆ ଦାନ ମୂଲ୍ୟହୀନ

ହେ ବିଶ୍ୱାସକାରୀମାନେ ! ଉପକାର ବଖାଣି ବା କ୍ଲେଶ ଦେଇ ନିଜ ଦାନକୁ ସେହି ବ୍ୟକ୍ତି ପରି ନଷ୍ଟ କରିଦିଅ ନାହିଁ, ଯିଏ ଲୋକ ଦେଖାଣିଆ ଖର୍ଚ୍ଚ କରେ ଏବଂ ଅଲ୍ଲାହଙ୍କୁ ଓ ପୁନର୍ଜନ୍ମ ଦିନକୁ ଅବିଶ୍ୱାସ କରେ । (୨/୨୬୪)

يَا أَيُّهَا الَّذِينَ آمَنُوا لَا تُبْطِلُوا صَدَقَاتِكُم
بِالْمَنِّ وَالْأَذَىٰ كَالَّذِي يُنفِقُ مَالَهُ رِئَاءَ النَّاسِ
وَلَا يُؤْمِنُ بِاللَّهِ وَالْيَوْمِ الْآخِرِ ۖ

### ୩୧. ଆମଦାନୀର ଉତ୍କୃଷ୍ଟ ଭାଗ ଦାନ କର

يَاَيُّهَا الَّذِيْنَ اٰمَنُوْٓا اَنْفِقُوْا مِنْ طَيِّبٰتِ مَا كَسَبْتُمْ وَمِمَّآ اَخْرَجْنَا لَكُمْ مِّنَ الْاَرْضِ ۗ وَلَا تَيَمَّمُوا الْخَبِيْثَ مِنْهُ تُنْفِقُوْنَ وَلَسْتُمْ بِاٰخِذِيْهِ اِلَّآ اَنْ تُغْمِضُوْا فِيْهِ ۗ وَاعْلَمُوْٓا اَنَّ اللّٰهَ غَنِيٌّ حَمِيْدٌ ﴿٢٦٧﴾

ହେ ବିଶ୍ୱାସକାରୀମାନେ ! ତୁମମାନଙ୍କର ଅର୍ଜିତ ଧନରୁ ଏବଂ ଆମ୍ଭେ ତୁମମାନଙ୍କପାଇଁ ଉତ୍ପନ୍ନ କରିଥିବା ଭୁମିଜ ଦ୍ରବ୍ୟରୁ ଉତ୍କୃଷ୍ଟ ଅଂଶ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) ଖର୍ଚ୍ଚ କର ଆଉ ନିକୃଷ୍ଟ ବସ୍ତୁ ଦାନ କରିବା କଥା ଚିନ୍ତା ମଧ୍ୟ କରନାହିଁ, ଯାହାକୁ ତୁମେ ନିଜେ ମଧ୍ୟ ନେବାକୁ ଲଜ୍ଜ୍ୟାବୋଧ କରିବ। ଜାଣିରଖ ଯେ ଅଲ୍ଲାହ୍ ଅଭାବରହିତ ଏବଂ ସକଳ ସ୍ତୁତିର ଯୋଗ୍ୟ। (୨/୨୬୭)

### ୩୨. ଦାନ ତୁମର ପାପକ୍ଷୟ କରେ

اِنْ تُبْدُوا الصَّدَقٰتِ فَنِعِمَّا هِيَ ۚ وَاِنْ تُخْفُوْهَا وَتُؤْتُوْهَا الْفُقَرَآءَ فَهُوَ خَيْرٌ لَّكُمْ ۗ وَيُكَفِّرُ عَنْكُمْ مِّنْ سَيِّاٰتِكُمْ ۗ وَاللّٰهُ بِمَا تَعْمَلُوْنَ خَبِيْرٌ ﴿٢٧١﴾

ଯଦି ତୁମେମାନେ ପ୍ରକାଶ୍ୟରେ ଦାନ କର ତେବେ ଭଲ, କିମ୍ବା ଯଦି ଗୋପନରେ ଅଭାବଗ୍ରସ୍ତ ଲୋକଙ୍କୁ ଦାନ କର ତେବେ ଏହା ତୁମମାନଙ୍କ ପାଇଁ ଆହୁରି ଭଲ। ଏହା ତୁମର ପାପ କ୍ଷୟ କରିବ। ତୁମେମାନେ ଯାହାକିଛି କର, ଅଲ୍ଲାହ୍ ସବୁ ଜାଣନ୍ତି। (୨/୨୭୧)

### ୩୩. ଗୁପ୍ତଦାନ ମହାପୁଣ୍ୟ

اَلَّذِيْنَ يُنْفِقُوْنَ اَمْوَالَهُمْ بِالَّيْلِ وَالنَّهَارِ سِرًّا وَّعَلَانِيَةً فَلَهُمْ اَجْرُهُمْ عِنْدَ رَبِّهِمْ ۚ وَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿٢٧٤﴾

ଯେଉଁମାନେ ଦିନ ଓ ରାତିରେ, ପ୍ରକାଶ୍ୟରେ ବା ଗୋପନରେ ନିଜ ଧନ ଖର୍ଚ୍ଚ କରନ୍ତି, ସେମାନଙ୍କ ପାଇଁ ସେମାନଙ୍କ ପ୍ରଭୁଙ୍କ ନିକଟରେ ଉଚିତ ପ୍ରତିଦାନ ରହିଛି। ସେମାନଙ୍କର କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ। (୨/୨୭୪)

### ୩୪.ଋଣୀଙ୍କୁ ମହଲତ ଦିଅ କିମ୍ବା ଋଣ କ୍ଷମା କରିଦିଅ

وَاِنْ كَانَ ذُوْ عُسْرَةٍ فَنَظِرَةٌ اِلٰى مَيْسَرَةٍ ۗ وَاَنْ تَصَدَّقُوْا خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ﴿٢٨٠﴾

ଯଦି କେହି ଅଭାବଗ୍ରସ୍ତ ଥାଏ, ତେବେ ଅବସ୍ଥା ସୁଧୁରିବା ପର୍ଯ୍ୟନ୍ତ ତାକୁ ଅବସର ଦିଅ ଆଉ ଯଦି ଦାନ ମନେକରି ଋଣ କ୍ଷମା କରିଦିଅ, ତେବେ ଏହା ତୁମମାନଙ୍କ ପକ୍ଷରେ ଏକ ମହତ କାର୍ଯ୍ୟ ହେବ, ଯଦି ତୁମେମାନେ ଏହା ବୁଝିପାର। (୨/୨୮୦)

### ୩୫. ଋଣ ଦିଆନିଆ ବେଳେ ଚୁକ୍ତିନାମା କର

يَاَيُّهَا الَّذِيْنَ اٰمَنُوْٓا اِذَا تَدَايَنْتُمْ بِدَيْنٍ اِلٰٓى اَجَلٍ مُّسَمًّى فَاكْتُبُوْهُ ۗ

ହେ ବିଶ୍ୱାସକାରୀମାନେ ! ଯଦି କୌଣସି ନିର୍ଦ୍ଦିଷ୍ଟ ସମୟ ପାଇଁ ଋଣ ଦିଆ ନିଆ କର, ତେବେ ତାକୁ ଲେଖି ରଖ। (୨/୨୮୨)

### ୩୬. ମଣିଷ ଯାହା ଅର୍ଜନ କରିବ ତାହାହିଁ ଭୋଗିବ

لَا يُكَلِّفُ اللّٰهُ نَفْسًا اِلَّا وُسْعَهَا ۗ لَهَا مَا كَسَبَتْ

ଅଲ୍ଲାହ୍ କାହାରିକୁ ତା' ସାମର୍ଥ୍ୟଠାରୁ ଅଧିକ ଦାୟିତ୍ୱ (ବୋଝ)

ଦିଅନ୍ତି ନାହିଁ । ଯାହା (ପୁଣ୍ୟ) ସେ ଅର୍ଜନ କଲା ତାହା ତା'ରି ପାଇଁ ଏବଂ ଯାହା (ପାପ) ସେ ଅର୍ଜନ କଲା ତା' ବୋଝ (ମଧ୍ୟ) ତା'ରି ଉପରେ । (୨/୨୮୬)

وَعَلَيْهَا مَا اكْتَسَبَتْ ؕ

### ୩୭. ଅଲ୍ଲାହ୍ ବ୍ରହ୍ମାଣ୍ଡର ଧାରଣକର୍ତ୍ତା

ଅଲ୍ଲାହ୍ - ତାଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି । ସେ ସଦା ଜୀବନ୍ତ ଏବଂ ସମସ୍ତଙ୍କର ଧାରଣକର୍ତ୍ତା । (୩ / ୨)

اَللّٰهُ لَاۤ اِلٰهَ اِلَّا هُوَ ۙ الْحَیُّ الْقَیُّوْمُ ؕ﴿۲﴾

### ୩୮. କୁରଆନର ସ୍ୱଷ୍ଟ ବାଣୀଗୁଡ଼ିକ ହିଁ ମୂଳଗ୍ରନ୍ଥ

(ହେ ମୁହମ୍ମଦ!) ସେ ହିଁ ତୁମ ପ୍ରତି (କୁରଆନ) ଗ୍ରନ୍ଥ ପ୍ରକଟ କଲେ ଯେଉଁଥିରେ ରହିଛି ସ୍ୱଷ୍ଟ ନିର୍ଣ୍ଣାୟକ ବାଣୀ ଏବଂ ଏହିଗୁଡ଼ିକ ହିଁ ମୂଳଗ୍ରନ୍ଥ । ଏହାର ଅନ୍ୟ କେତେକ ବାଣୀ ଅସ୍ୱଷ୍ଟ । ଯେଉଁମାନଙ୍କ ଅନ୍ତର କୁଟିଳତାପୂର୍ଣ୍ଣ, ସେମାନେ ସେହି ଅସ୍ୱଷ୍ଟ ବାଣୀଗୁଡ଼ିକ ପଛରେ ଲାଗି ଥାଆନ୍ତି, ସେଗୁଡ଼ିକ ମାଧ୍ୟମରେ ବିବାଦ ସୃଷ୍ଟି କରିବା ପାଇଁ ଆଉ ସେଗୁଡ଼ିକର ଅନ୍ତର୍ନିହିତ ଅର୍ଥ ଜାଣିବା ପାଇଁ । ଅଥଚ ସେଗୁଡ଼ିକର ସଠିକ୍ ଅର୍ଥ ଅଲ୍ଲାହ୍‌ଙ୍କ ବ୍ୟତୀତ କେହି ଜାଣନ୍ତି ନାହିଁ । ଯେଉଁମାନଙ୍କର ଜ୍ଞାନ ଗଭୀର, ସେମାନେ କହନ୍ତି, "ଆମେ ଏହାକୁ ବିଶ୍ୱାସ କରୁ । ସବୁତକ ଆମ ପରମେଶ୍ୱରଙ୍କ ପ୍ରଦତ୍ତ ବାଣୀ", କିନ୍ତୁ ଏକଥା କେବଳ ବୁଦ୍ଧିମାନ ଲୋକମାନେ ହିଁ ବୁଝି ପାରନ୍ତି । (୩/୭)

هُوَ الَّذِیْۤ اَنْزَلَ عَلَیْكَ الْكِتٰبَ مِنْهُ اٰیٰتٌ
مُّحْكَمٰتٌ هُنَّ اُمُّ الْكِتٰبِ وَ اُخَرُ مُتَشٰبِهٰتٌ ؕ
فَاَمَّا الَّذِیْنَ فِیْ قُلُوْبِهِمْ زَیْغٌ فَیَتَّبِعُوْنَ مَا تَشَابَهَ
مِنْهُ ابْتِغَآءَ الْفِتْنَةِ وَ ابْتِغَآءَ تَاْوِیْلِهٖ ؔۚ وَ مَا
یَعْلَمُ تَاْوِیْلَهٗۤ اِلَّا اللّٰهُ ؔۘ وَ الرّٰسِخُوْنَ فِی الْعِلْمِ
یَقُوْلُوْنَ اٰمَنَّا بِهٖ ۙ كُلٌّ مِّنْ عِنْدِ رَبِّنَا ۚ وَ مَا
یَذَّكَّرُ اِلَّاۤ اُولُوا الْاَلْبَابِ ﴿۷﴾

### ୩୯. ମଣିଷର ପ୍ରକୃତ ଧର୍ମ ଈଶ୍ୱରଶରଣ

ବାସ୍ତବରେ ଇସଲାମ୍ (ଅର୍ଥାତ୍ ଈଶ୍ୱରଶରଣ) ହିଁ ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ଧର୍ମ । ଯେଉଁମାନଙ୍କୁ ଦିବ୍ୟଗ୍ରନ୍ଥ ଦିଆଯାଇଥିଲା, ସେମାନେ ଏଥିରେ ଯେଉଁ ମତଭେଦ କଲେ, ତାହା ସେମାନଙ୍କ ନିକଟରେ ପ୍ରକୃତ ଜ୍ଞାନ ପହଁଚି ସାରିବା ପରେ, କେବଳ ନିଜ ନିଜର ଜିଦ୍ ଯୋଗୁଁ କଲେ । ଯିଏ ଅଲ୍ଲାହ୍‌ଙ୍କ ବାଣୀକୁ ଅସ୍ୱୀକାର କରେ, ଅଲ୍ଲାହ୍ ଶୀଘ୍ର ତାହାର ହିସାବ ନେବେ । (୩/୧୯)

اِنَّ الدِّیْنَ عِنْدَ اللّٰهِ الْاِسْلَامُ ۫ وَ مَا اخْتَلَفَ
الَّذِیْنَ اُوْتُوا الْكِتٰبَ اِلَّا مِنْۢ بَعْدِ مَا جَآءَهُمُ
الْعِلْمُ بَغْیًۢا بَیْنَهُمْ ؕ وَ مَنْ یَّكْفُرْ بِاٰیٰتِ اللّٰهِ فَاِنَّ
اللّٰهَ سَرِیْعُ الْحِسَابِ ﴿۱۹﴾

### ୪୦. କ୍ଷମତା ଓ ପ୍ରତିଷ୍ଠା ଅଲ୍ଲାହ୍‌ଙ୍କ ହାତରେ

ତୁମେ କୁହ "ହେ ଅଲ୍ଲାହ୍! ସକଳ ସାମ୍ରାଜ୍ୟର ଅଧୀଶ୍ୱର, ତୁମେ ଯାହାକୁ ଚାହଁ କ୍ଷମତା ଦିଅ ଏବଂ ଯାହାଠାରୁ ଚାହଁ କ୍ଷମତା ଛଡ଼ାଇ ନିଅ, ଯାହାକୁ ଚାହଁ ସମ୍ମାନ ଦିଅ ଏବଂ ଯାହାକୁ ଚାହଁ ଲାଂଛିତ

قُلِ اللّٰهُمَّ مٰلِكَ الْمُلْكِ تُؤْتِی الْمُلْكَ مَنْ تَشَآءُ وَ
تَنْزِعُ الْمُلْكَ مِمَّنْ تَشَآءُ ۫ وَ تُعِزُّ مَنْ تَشَآءُ وَ تُذِلُّ مَنْ

କର । ତୁମରି ହାତରେ ରହିଛି ସକଳ କଲ୍ୟାଣ । ଅବଶ୍ୟ ତୁମେ ସବୁକିଛି କରିବାକୁ ସକ୍ଷମ ।" (୩/୨୬)

تَشَآءُ ۚ بِيَدِكَ الْخَيْرُ ۚ اِنَّكَ عَلٰى كُلِّ شَىْءٍ قَدِيْرٌ ﴿٢٦﴾

**୪୧. ଈଶ୍ୱରଦୂତଙ୍କ ଆଜ୍ଞା ପାଳନ କର**

(ହେ ବାର୍ତ୍ତାବହ !) କହିଦିଅ, "ଯଦି ତୁମେମାନେ ଅଲ୍ଲାହ୍‌ଙ୍କୁ ପ୍ରେମ କରୁଥାଅ, ତେବେ ମୋ' କଥା ମାନି ଚଳ । ଅଲ୍ଲାହ୍ ତୁମମାନଙ୍କୁ ପ୍ରେମ କରିବେ ଏବଂ ତୁମମାନଙ୍କ ପାପ କ୍ଷମା କରିଦେବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ ।" (୩/୩୧)

قُلْ اِنْ كُنْتُمْ تُحِبُّوْنَ اللّٰهَ فَاتَّبِعُوْنِىْ يُحْبِبْكُمُ اللّٰهُ
وَيَغْفِرْ لَكُمْ ذُنُوْبَكُمْ ۚ وَاللّٰهُ غَفُوْرٌ رَّحِيْمٌ ﴿٣١﴾

**୪୨. ସବୁ ଗ୍ରନ୍ଥରେ ସମାନ ରହିଥିବା ଶିକ୍ଷା ମାନିନିଅ**

ସେମାନଙ୍କୁ କୁହ, "ହେ ଗ୍ରନ୍ଥଧାରୀମାନେ ! ଆସ ଏଭଳି କଥାଟିଏ ଗ୍ରହଣ କରିନେବା ଯାହା ତୁମ ଓ ଆମ ଭିତରେ ସମାନ ଭାବରେ ରହିଛି ଯେ, ଆମେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରି ସେବା-ଉପାସନା କରିବା ନାହିଁ କିମ୍ବା କାହାରିକୁ ଅଲ୍ଲାହ୍‌ଙ୍କ ଈଶ୍ୱରତ୍ୱରେ ଅଂଶୀଦାର କରିବା ନାହିଁ କିମ୍ବା ଅଲ୍ଲାହ୍‌ଙ୍କୁ ଛାଡ଼ି ଆମ ଭିତରୁ କେହି କାହାରିକୁ ଈଶ୍ୱର (ରୂପେ ଗ୍ରହଣ) କରିବା ନାହିଁ ।" ତା'ପରେ ଯଦି ସେମାନେ ନ ମାନନ୍ତି, ତେବେ କହିଦିଅ "ତୁମେମାନେ ସାକ୍ଷୀ ଥାଅ ଯେ ଆମେ ଅଲ୍ଲାହ୍‌ଙ୍କ ଆଜ୍ଞାକାରୀ ।" (୩/୬୪)

قُلْ يٰۤاَهْلَ الْكِتٰبِ تَعَالَوْا اِلٰى كَلِمَةٍ سَوَآءٍۭ بَيْنَنَا
وَبَيْنَكُمْ اَلَّا نَعْبُدَ اِلَّا اللّٰهَ وَلَا نُشْرِكَ بِهٖ شَيْـًٔا وَّلَا
يَتَّخِذَ بَعْضُنَا بَعْضًا اَرْبَابًا مِّنْ دُوْنِ اللّٰهِ ۚ فَاِنْ
تَوَلَّوْا فَقُوْلُوا اشْهَدُوْا بِاَنَّا مُسْلِمُوْنَ ﴿٦٤﴾

**୪୩. ସତ ସହିତ ମିଛକୁ ମିଶାଅ ନାହିଁ**

ହେ ଗ୍ରନ୍ଥଧାରୀମାନେ ! ତୁମେମାନେ କାହିଁକି ସତ୍ୟକୁ ମିଥ୍ୟା ସହିତ ମିଶାଇ ଦେଉଛ ଏବଂ ଜାଣିଶୁଣି ସତ୍ୟକୁ ଲୁଚାଉଛ ? (୩/୭୧)

يٰۤاَهْلَ الْكِتٰبِ لِمَ تَلْبِسُوْنَ الْحَقَّ بِالْبَاطِلِ وَ
تَكْتُمُوْنَ الْحَقَّ وَاَنْتُمْ تَعْلَمُوْنَ ﴿٧١﴾

**୪୪.ଦିବ୍ୟଗ୍ରନ୍ଥମାନଙ୍କ ମଧ୍ୟରେ ଭେଦଭାବ କରନାହିଁ**

କହିଦିଅ, "ଆମେ ଅଲ୍ଲାହ୍‌ଙ୍କୁ ବିଶ୍ୱାସ କରୁ ଏବଂ (ତାଙ୍କ ଗ୍ରନ୍ଥକୁ ମଧ୍ୟ) ଯାହା ଆମମାନଙ୍କ ପ୍ରତି ପ୍ରକଟ ହେଲା ଏବଂ ଯାହା ଇବ୍ରାହିମ୍, ଇସମାଇଲ୍, ୟାକୁବ୍ ଏବଂ ତାଙ୍କ ସଂତାନମାନଙ୍କ ପ୍ରତି ପ୍ରକଟ ହୋଇଥିଲା ଏବଂ ଯାହା ମୁସା, ଈସା (ଯିଶୁ) ଏବଂ ଅନ୍ୟ ଈଶ୍ୱରଦୂତମାନଙ୍କୁ ସେମାନଙ୍କ ପ୍ରଭୁଙ୍କ ତରଫରୁ ପ୍ରଦାନ କରାଯାଇ ଥିଲା, ସବୁଗୁଡ଼ିକୁ ବିଶ୍ୱାସ କରୁ ଏବଂ ଆମେ ସେମାନଙ୍କ ମଧ୍ୟରେ (କୌଣସି ପ୍ରକାର) ପ୍ରଭେଦ କରୁନାହୁଁ ଏବଂ ଆମେମାନେ ତାଙ୍କରିଠାରେ ନିଜକୁ ସମର୍ପଣ କରୁଛୁ ।" (୩/୮୪)

قُلْ اٰمَنَّا بِاللّٰهِ وَمَآ اُنْزِلَ عَلَيْنَا وَمَآ اُنْزِلَ عَلٰٓى
اِبْرٰهِيْمَ وَاِسْمٰعِيْلَ وَاِسْحٰقَ وَيَعْقُوْبَ وَالْاَسْبَاطِ وَ
مَآ اُوْتِىَ مُوْسٰى وَعِيْسٰى وَالنَّبِيُّوْنَ مِنْ رَّبِّهِمْ ۖ لَا
نُفَرِّقُ بَيْنَ اَحَدٍ مِّنْهُمْ ۖ وَنَحْنُ لَهٗ مُسْلِمُوْنَ ﴿٨٤﴾

### ୪୫. ପ୍ରଭୁଙ୍କୁ ନିଜର ପ୍ରିୟ ବସ୍ତୁ ଉତ୍ସର୍ଗ କର

ଯେପର୍ଯ୍ୟନ୍ତ ତୁମେମାନେ ଅଲ୍ଲାହଙ୍କ ମାର୍ଗରେ ସେହି ବସ୍ତୁଗୁଡ଼ିକୁ ତ୍ୟାଗ ନ କରିଛ, ଯାହା ତୁମମାନଙ୍କର (ଅତ୍ୟନ୍ତ) ପ୍ରିୟ, ତୁମେମାନେ କଦାପି ପୁଣ୍ୟଲାଭ କରି ପାରିବ ନାହିଁ। ଯାହା ତୁମେମାନେ ଖର୍ଚ୍ଚ କର, ଅଲ୍ଲାହ୍ ତାହା ଜାଣନ୍ତି । (୩/୯୨)

لَنْ تَنَالُوا الْبِرَّ حَتّٰى تُنْفِقُوْا مِمَّا تُحِبُّوْنَ ۬ؕ وَ مَا
تُنْفِقُوْا مِنْ شَیْءٍ فَاِنَّ اللّٰهَ بِهٖ عَلِیْمٌ ﴿۹۲﴾

### ୪୬. ପବିତ୍ର କାବାର ହଜ୍ ସଂପାଦନ କର

ବାସ୍ତବରେ ମନୁଷ୍ୟମାନଙ୍କ (ଉପାସନା) ପାଇଁ ଯେଉଁ ଗୃହଟି ସର୍ବପ୍ରଥମେ ନିର୍ମାଣ କରାଯାଇଥିଲା, ତାହା ମକ୍କାରେ ଅବସ୍ଥିତ । ଏହା ସମଗ୍ର ଜଗତ ପାଇଁ କଲ୍ୟାଣଦାୟକ ତଥା ସତପଥର ଉତ୍ସ । ଏଥିରେ ସ୍ୱଷ୍ଟ ନିଦର୍ଶନ ଅଛି, ଇବ୍ରାହିମଙ୍କ ଉପାସନାର ଆସ୍ଥାନ ଅଛି । ଯିଏ ଏଥିରେ ପ୍ରବେଶ କରେ, ସେ ନିରାପଦ ହୋଇଯାଏ । ଏହା ମନୁଷ୍ୟମାନଙ୍କ ଉପରେ ଅଲ୍ଲାହଙ୍କର ଅଧିକାର ଯେ ଯେଉଁମାନେ ଏଠାକୁ ଯାତ୍ରା କରିବା ପାଇଁ ସମର୍ଥ, ସେମାନେ ଅନିବାର୍ଯ୍ୟ ରୂପେ ଏହି ଗୃହର ହଜ୍ କରନ୍ତୁ । ଯଦି କେହି ଅମାନ୍ୟ କରେ, ତେବେ (ସେ ଜାଣି ରଖୁ ଯେ) ଅଲ୍ଲାହ୍ ବିଶ୍ୱବାସୀଙ୍କ ଉପରେ ନିର୍ଭର କରନ୍ତି ନାହିଁ। (୩/୯୬-୯୭)

اِنَّ اَوَّلَ بَیْتٍ وُّضِعَ لِلنَّاسِ لَلَّذِیْ بِبَكَّةَ مُبٰرَكًا
وَّ هُدًى لِّلْعٰلَمِیْنَ ﴿۹۶﴾ فِیْهِ اٰیٰتٌۢ بَیِّنٰتٌ مَّقَامُ
اِبْرٰهِیْمَ ۬ۚ وَ مَنْ دَخَلَهٗ كَانَ اٰمِنًا ؕ وَ لِلّٰهِ عَلَى
النَّاسِ حِجُّ الْبَیْتِ مَنِ اسْتَطَاعَ اِلَیْهِ سَبِیْلًا ؕ
وَ مَنْ كَفَرَ فَاِنَّ اللّٰهَ غَنِیٌّ عَنِ الْعٰلَمِیْنَ ﴿۹۷﴾

### ୪୭. ଅବଜ୍ଞାକାରୀ ଅବସ୍ଥାରେ ତୁମର ମୃତ୍ୟୁ ନ ହେଉ

ହେ ବିଶ୍ୱାସକାରୀମାନେ! ଅଲ୍ଲାହଙ୍କୁ ଏପରି ଭୟ କର ଯେପରି ତାଙ୍କୁ ଭୟ କରିବା ଉଚିତ ଏବଂ (ସାବଧାନ!) ମୁସଲିମ୍ (ଆଜ୍ଞାକାରୀ) ନଥିବା ଅବସ୍ଥାରେ ତୁମମାନଙ୍କର ମୃତ୍ୟୁ ନ ହେଉ । (୩/୧୦୨)

یٰۤاَیُّهَا الَّذِیْنَ اٰمَنُوا اتَّقُوا اللّٰهَ حَقَّ تُقٰتِهٖ وَ لَا
تَمُوْتُنَّ اِلَّا وَ اَنْتُمْ مُّسْلِمُوْنَ ﴿۱۰۲﴾

### ୪୮. ଭାଗଭାଗ ହୋଇଯାଅ ନାହିଁ

ସମସ୍ତେ ମିଶି ଅଲ୍ଲାହଙ୍କ ରଜ୍ଜୁକୁ ଦୃଢ଼ତାର ସହ ଧରିରଖ ଏବଂ ଭାଗ ଭାଗ ହୋଇଯାଅ ନାହିଁ । (୩/୧୦୩)

وَ اعْتَصِمُوْا بِحَبْلِ اللّٰهِ جَمِیْعًا وَّ لَا تَفَرَّقُوْا ۪

### ୪୯. ସଦୁପଦେଶ ଦେବାପାଇଁ ସ୍ୱତନ୍ତ୍ର ଗୋଷ୍ଠୀ ରହୁ

ହିତୋପଦେଶ ଦେବା ପାଇଁ ତୁମମାନଙ୍କ ମଧ୍ୟରେ ଅବଶ୍ୟ ଏକ ଗୋଷ୍ଠୀ ରହିବା ଉଚିତ, ଯେଉଁମାନେ (ଲୋକଙ୍କୁ) ସତକର୍ମ କରିବାର ଉପଦେଶ ଦେବେ ଏବଂ ଅସତ କର୍ମରୁ ବିରତ ରଖିବେ । ଏହି ଲୋକମାନେ ହିଁ ସଫଳ ହେବେ । (୩/୧୦୪)

وَلْتَكُنْ مِّنْكُمْ اُمَّةٌ یَّدْعُوْنَ اِلَى الْخَیْرِ وَ
یَاْمُرُوْنَ بِالْمَعْرُوْفِ وَ یَنْهَوْنَ عَنِ الْمُنْكَرِ ؕ وَ
اُولٰٓىِٕكَ هُمُ الْمُفْلِحُوْنَ ﴿۱۰۴﴾

### ୫୦. ସୁଧ ନେବା ମହାପାପ

هيَاَيُّهَا الَّذِيْنَ اٰمَنُوْا لَا تَاْكُلُوا الرِّبٰوا اَضْعَافًا مُّضٰعَفَةً ۪ وَّاتَّقُوا اللّٰهَ لَعَلَّكُمْ تُفْلِحُوْنَ ﴿١٣٠﴾ وَاتَّقُوا النَّارَ الَّتِيْٓ اُعِدَّتْ لِلْكٰفِرِيْنَ ﴿١٣١﴾

ହେ ବିଶ୍ୱାସକାରୀମାନେ ! ବହୁଗୁଣିତ କରି ସୁଧ ନିଅ ନାହିଁ ଏବଂ ଅଲ୍ଲାହଙ୍କୁ ଭୟ କର, ତାହେଲେ ତୁମମାନେ ସଫଳ ହେବ। ସେହି ନର୍କାଗ୍ନିକୁ ଭୟ କର ଯାହା ଅବଜ୍ଞାକାରୀମାନଙ୍କ ପାଇଁ ପ୍ରସ୍ତୁତ ରଖାଯାଇଛି। (୩/୧୩୦-୧୩୧)

### ୫୧.ସଦାଚାରୀ ବ୍ୟକ୍ତିମାନେ କ୍ରୋଧ ସମ୍ବରଣ କରନ୍ତି

الَّذِيْنَ يُنْفِقُوْنَ فِي السَّرَّآءِ وَالضَّرَّآءِ وَالْكٰظِمِيْنَ الْغَيْظَ وَالْعَافِيْنَ عَنِ النَّاسِ ۗ وَاللّٰهُ يُحِبُّ الْمُحْسِنِيْنَ ﴿١٣٤﴾

(ସଦାଚାରୀ ସେଇମାନେ) ଯେଉଁମାନେ ଉଭୟ ସ୍ୱଚ୍ଛଳ ଅବସ୍ଥାରେ ତଥା ଅଭାବ ଅନାଟନ ବେଳେ ଧନ ଖର୍ଚ୍ଚ କରନ୍ତି, କ୍ରୋଧ ସମ୍ବରଣ କରନ୍ତି ଏବଂ ଅନ୍ୟମାନଙ୍କୁ କ୍ଷମା କରିଦିଅନ୍ତି। ଏଭଳି ପରୋପକାରୀଙ୍କୁ ଅଲ୍ଲାହ୍ ପ୍ରେମ କରନ୍ତି। (୩/୧୩୪)

### ୫୨. ସଦାଚାରୀମାନେ କୁକର୍ମ ପାଇଁ ତୁରନ୍ତ କ୍ଷମାପ୍ରାର୍ଥନା କରନ୍ତି

وَالَّذِيْنَ اِذَا فَعَلُوْا فَاحِشَةً اَوْ ظَلَمُوْٓا اَنْفُسَهُمْ ذَكَرُوا اللّٰهَ فَاسْتَغْفَرُوْا لِذُنُوْبِهِمْ ۪ وَمَنْ يَّغْفِرُ الذُّنُوْبَ اِلَّا اللّٰهُ ۪۫ وَلَمْ يُصِرُّوْا عَلٰى مَا فَعَلُوْا وَهُمْ يَعْلَمُوْنَ ﴿١٣٥﴾

ଏମାନେ ଯଦି କୌଣସି ନିର୍ଲଜ କର୍ମ କରନ୍ତି ବା ନିଜ ପ୍ରତି କୌଣସି ପ୍ରକାର ଅନ୍ୟାୟ କରିବସନ୍ତି, ତେବେ ଅଲ୍ଲାହଙ୍କଠାରେ ଧ୍ୟାନମଗ୍ନ ହୋଇ କ୍ଷମା ପ୍ରାର୍ଥନା କରନ୍ତି। ଅଲ୍ଲାହଙ୍କ ବ୍ୟତୀତ ଆଉ କିଏ ଦୋଷ କ୍ଷମା କରିବ? ସେମାନେ ଜାଣିଶୁଣି ନିଜ କୁକର୍ମରେ ଅଡ଼ି ବସନ୍ତି ନାହିଁ। (୩/୧୩୫)

### ୫୩. ଈଶ୍ୱରଦୂତ ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦେଉଥିଲେ

لَقَدْ مَنَّ اللّٰهُ عَلَى الْمُؤْمِنِيْنَ اِذْ بَعَثَ فِيْهِمْ رَسُوْلًا مِّنْ اَنْفُسِهِمْ يَتْلُوْا عَلَيْهِمْ اٰيٰتِهٖ وَيُزَكِّيْهِمْ وَيُعَلِّمُهُمُ الْكِتٰبَ وَالْحِكْمَةَ ۚ وَاِنْ كَانُوْا مِنْ قَبْلُ لَفِيْ ضَلٰلٍ مُّبِيْنٍ ﴿١٦٤﴾

ଆସ୍ଥା ରଖିଥିବା ଲୋକମାନଙ୍କ ପ୍ରତି ଅଲ୍ଲାହ୍ ଅବଶ୍ୟ ଅନୁଗ୍ରହ କଲେ ଯେ ସେମାନଙ୍କ ପାଇଁ ସେଇମାନଙ୍କ ମଧ୍ୟରୁ ଜଣେ ଈଶ୍ୱରଦୂତ ନିଯୁକ୍ତ କଲେ ଯିଏ ସେମାନଙ୍କୁ ତାଙ୍କ ବାଣୀ ପାଠକରି ଶୁଣାନ୍ତି, ସେମାନଙ୍କର ଚିତ୍ତଶୁଦ୍ଧି କରନ୍ତି ଏବଂ ସେମାନଙ୍କୁ ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନର ଶିକ୍ଷା ଦିଅନ୍ତି । ପ୍ରକୃତରେ ଏହା ପୂର୍ବରୁ ସେମାନେ ସ୍ପଷ୍ଟ ବିଭ୍ରାନ୍ତି ମଧ୍ୟରେ ରହିଥିଲେ। (୩/୧୬୪)

### ୫୪. କୃପଣ ଲୋକମାନେ କଠୋର ଦଣ୍ଡ ଭୋଗିବେ

وَلَا يَحْسَبَنَّ الَّذِيْنَ يَبْخَلُوْنَ بِمَآ اٰتٰهُمُ اللّٰهُ مِنْ فَضْلِهٖ هُوَ خَيْرًا لَّهُمْ ۭ بَلْ هُوَ شَرٌّ لَّهُمْ ۭ سَيُطَوَّقُوْنَ مَا بَخِلُوْا بِهٖ يَوْمَ الْقِيٰمَةِ ۭ وَلِلّٰهِ مِيْرَاثُ السَّمٰوٰتِ وَ

ଯେଉଁମାନଙ୍କୁ ଅଲ୍ଲାହ୍ ଅନୁଗ୍ରହ କରି କିଛି ଦେଇଛନ୍ତି, ମାତ୍ର ସେମାନେ କୃପଣତା ପ୍ରଦର୍ଶନ କରନ୍ତି, ସେମାନେ ଏହା ଆଦୌ ମନେ କରନ୍ତୁ ନାହିଁ ଯେ ଏହି କୃପଣତା ସେମାନଙ୍କ ପକ୍ଷରେ ଭଲ, ବରଂ ଏହା ସେମାନଙ୍କ ପାଇଁ ଭାରି କ୍ଷତିକର। ଯେଉଁ ଧନ

ପାଇଁ ସେମାନେ କୃପଣତା କରୁଛନ୍ତି, ବିଚାର ଦିନ ଏହା ସେମାନଙ୍କ ବେକର ଶିକୁଳି ହେବ । ଧରିତ୍ରୀ ଓ ଆକାଶମଣ୍ଡଳର ଅଲ୍ଲାହ ହିଁ ମାଲିକ । ତୁମେମାନେ ଯାହା କରୁଛ ଅଲ୍ଲାହ ତାହାର ଖବର ରଖନ୍ତି । (୩/୧୮୦)

الْاَرْضِ ۗ وَاللّٰهُ بِمَا تَعْمَلُوْنَ خَبِيْرٌ ﴿١٨٠﴾

**୫୫. କର୍ମର ସମ୍ପୂର୍ଣ୍ଣ ପ୍ରତିଫଳ ପରଲୋକରେ ମିଳିବ**

ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଚାଖିବ ଏବଂ (କର୍ମର) ସଂପୂର୍ଣ୍ଣ ପ୍ରତିଫଳ ତୁମମାନଙ୍କୁ ପୁନର୍ଜୀବନ ଲାଭ କରିବା ଦିନ ହିଁ ମିଳିବ । ସୁତରାଂ ଯାହାକୁ ନର୍କରୁ ଦୂରେଇ ରଖାଯିବ ଏବଂ ସ୍ୱର୍ଗରେ ସ୍ଥାନ ଦିଆଯିବ, ସେହି କେବଳ ସଫଳ ହେବ । (୩/୧୮୫)

كُلُّ نَفْسٍ ذَآئِقَةُ الْمَوْتِ ۗ وَاِنَّمَا تُوَفَّوْنَ اُجُوْرَكُمْ يَوْمَ الْقِيٰمَةِ ۗ فَمَنْ زُحْزِحَ عَنِ النَّارِ وَ اُدْخِلَ الْجَنَّةَ فَقَدْ فَازَ ۗ

**୫୬. ଦୈବବାଣୀକୁ ଲୁଚାଇବା ମହାପାପ**

(ସ୍ମରଣ କରାଅ) ଯେତେବେଳେ ଅଲ୍ଲାହ୍ ଗ୍ରନ୍ଥଧାରୀମାନଙ୍କଠାରୁ ଏହି ବଚନ ନେଇଥିଲେ, "ତୁମେମାନେ ଅଲ୍ଲାହଙ୍କ ଗ୍ରନ୍ଥକୁ ଲୋକମାନଙ୍କ ନିକଟରେ ସ୍ପଷ୍ଟ ଭାବରେ ପ୍ରକାଶ କରିବ ଆଉ ତାକୁ ଲୁଚାଇବ ନାହିଁ" ତଥାପି ସେମାନେ ନିଜ ବଚନରୁ ଓହରି ଗଲେ ଏବଂ ତାକୁ ଅତି ସାମାନ୍ୟ ଫାଇଦା ପାଇଁ ବିକିଦେଲେ । କି ଜଘନ୍ୟ ବ୍ୟବସାୟ ସେମାନେ କଲେ ! (୩/୧୮୭)

وَ اِذْ اَخَذَ اللّٰهُ مِيْثَاقَ الَّذِيْنَ اُوْتُوا الْكِتٰبَ لَتُبَيِّنُنَّهٗ لِلنَّاسِ وَ لَا تَكْتُمُوْنَهٗ ۫ فَنَبَذُوْهُ وَرَآءَ ظُهُوْرِهِمْ وَ اشْتَرَوْا بِهٖ ثَمَنًا قَلِيْلًا ۗ فَبِئْسَ مَا يَشْتَرُوْنَ ﴿١٨٧﴾

**୫୭. ନାସ୍ତିକମାନଙ୍କ ଥାଟବାଟ ଦେଖି ବିଭ୍ରାନ୍ତ ହୁଅନାହିଁ**

ଯେଉଁମାନେ ସତ୍ୟକୁ ଅସ୍ୱୀକାର କରିଛନ୍ତି, ସହର ମଧ୍ୟରେ ସେମାନଙ୍କର ଥାଟବାଟ ତୁମମାନଙ୍କ ମନରେ ଭ୍ରମ ସୃଷ୍ଟି ନ କରୁ । ଏହା ତ କ୍ଷଣସ୍ଥାୟୀ ସୁଖ । ଏହା ପରେ ନର୍କ ସେମାନଙ୍କର ଅନ୍ତିମ ନିବାସ ହେବ । ଏହା ଏକ କଦର୍ଯ୍ୟ ସ୍ଥାନ । (୩/୧୯୬-୧୯୭)

لَا يَغُرَّنَّكَ تَقَلُّبُ الَّذِيْنَ كَفَرُوْا فِى الْبِلَادِ ﴿١٩٦﴾ مَتَاعٌ قَلِيْلٌ ۫ ثُمَّ مَاْوٰىهُمْ جَهَنَّمُ ۗ وَ بِئْسَ الْمِهَادُ ﴿١٩٧﴾

**୫୮. ଆତ୍ମୀୟଙ୍କ ଅଧିକାର ବିଷୟରେ ସାବଧାନ ରୁହ**

ହେ ମନୁଷ୍ୟଗଣ! ନିଜ ପାଳନକର୍ତ୍ତାଙ୍କୁ ଭୟ କର, ଯିଏ ତୁମମାନଙ୍କୁ ଗୋଟିଏ ପ୍ରାଣରୁ ସୃଷ୍ଟି କଲେ ଏବଂ ସେଥିରୁ ତା'ର ଯୋଡ଼ି ସୃଷ୍ଟି କଲେ ଏବଂ ଉଭୟଙ୍କ ମଧ୍ୟରୁ ବହୁ ସଂଖ୍ୟକ ପୁରୁଷ ଓ ନାରୀଙ୍କୁ ବିସ୍ତାରିତ କରିଦେଲେ । ଆତ୍ମୀୟସ୍ୱଜନଙ୍କ (ଅଧିକାର) ସଂପର୍କରେ ଅଲ୍ଲାହଙ୍କୁ ଭୟ କରୁଥାଅ, ଯାହାଙ୍କ ଦ୍ୱାହି ଦେଇ ତୁମେମାନେ ପରସ୍ପରଠାରୁ (ନିଜର ଅଧିକାର) ମାଗିଥାଅ । ଅଲ୍ଲାହ୍ ଅବଶ୍ୟ ତୁମମାନଙ୍କ ପ୍ରତି ନଜର ରଖିଛନ୍ତି । (୪/୧)

يٰۤاَيُّهَا النَّاسُ اتَّقُوْا رَبَّكُمُ الَّذِىْ خَلَقَكُمْ مِّنْ نَّفْسٍ وَّاحِدَةٍ وَّ خَلَقَ مِنْهَا زَوْجَهَا وَ بَثَّ مِنْهُمَا رِجَالًا كَثِيْرًا وَّ نِسَآءً ۚ وَ اتَّقُوا اللّٰهَ الَّذِىْ تَسَآءَلُوْنَ بِهٖ وَ الْاَرْحَامَ ۗ اِنَّ اللّٰهَ كَانَ عَلَيْكُمْ رَقِيْبًا ﴿١﴾

**୫୯. ଅନାଥଙ୍କ ଧନ ଆତ୍ମସାତ କରିବା ମହାପାପ**

ଅନାଥମାନଙ୍କୁ ସେମାନଙ୍କର ଧନସମ୍ପତ୍ତି ଫେରାଇଦିଅ । (ସେମାନଙ୍କ) ଉତ୍କୃଷ୍ଟ ଧନକୁ ନିକୃଷ୍ଟ ଧନ ଦ୍ୱାରା ବଦଳି ଦିଅନାହିଁ ଏବଂ ସେମାନଙ୍କ ଧନକୁ ନିଜ ଧନ ସହ ମିଶାଇ ଖାଇଯାଅ ନାହିଁ । ଅବଶ୍ୟ ଏହା ଏକ ଜଘନ୍ୟ ପାପ । (୪/୨)

وَ اٰتُوا الْيَتٰمٰٓى اَمْوَالَهُمْ وَ لَا تَتَبَدَّلُوا الْخَبِيْثَ بِالطَّيِّبِ ۪ وَلَا تَاْكُلُوْٓا اَمْوَالَهُمْ اِلٰٓى اَمْوَالِكُمْ ؕ اِنَّهٗ كَانَ حُوْبًا كَبِيْرًا ۝٢

**୬୦. ପତ୍ନୀମାନଙ୍କୁ ଖୁସି ମନରେ ସ୍ତ୍ରୀଧନ ଦିଅ**

ପତ୍ନୀମାନଙ୍କୁ ଖୁସି ମନରେ ସେମାନଙ୍କର ମେହେର୍ (ଅର୍ଥାତ୍ ବିବାହ କାଳୀନ ସ୍ତ୍ରୀଧନ) ଦିଅ । ତା'ପରେ ଯଦି ସେମାନେ ଏଥିରୁ କିଛି ନିଜ ଇଚ୍ଛାରେ (ତୁମ ପାଇଁ) ଛାଡ଼ି ଦିଅନ୍ତି, ତେବେ ତାହାକୁ ଆନନ୍ଦରେ ଭୋଗ କର । (୪/୪)

وَ اٰتُوا النِّسَآءَ صَدُقٰتِهِنَّ نِحْلَةً ؕ فَاِنْ طِبْنَ لَكُمْ عَنْ شَیْءٍ مِّنْهُ نَفْسًا فَكُلُوْهُ هَنِيْٓـًٔا مَّرِيْٓـًٔا ۝٤

**୬୧. ପୈତୃକ ସଂପତ୍ତିରେ ପୁରୁଷ ଓ ନାରୀର ଭାଗ ଅଛି**

ପିତାମାତା ଓ ଆତ୍ମୀୟମାନେ ଛାଡ଼ି ଯାଇଥିବା ସଂପତ୍ତି ଅଳ୍ପ ହେଉ ବା ବେଶୀ, ସେଥିରେ ପୁରୁଷମାନଙ୍କର ଭାଗ ଅଛି ଏବଂ ନାରୀମାନଙ୍କର ମଧ୍ୟ ଭାଗ ଅଛି । ଏକ ନିର୍ଦ୍ଧାରିତ ଭାଗ । (୪/୭)

لِلرِّجَالِ نَصِيْبٌ مِّمَّا تَرَكَ الْوَالِدٰنِ وَ الْاَقْرَبُوْنَ ۪ وَلِلنِّسَآءِ نَصِيْبٌ مِّمَّا تَرَكَ الْوَالِدٰنِ وَ الْاَقْرَبُوْنَ مِمَّا قَلَّ مِنْهُ اَوْ كَثُرَ ؕ نَصِيْبًا مَّفْرُوْضًا ۝٧

**୬୨. ସତ୍ତ୍ୱବଣ୍ଟନ ବେଳେ ଗରିବଲୋକଙ୍କୁ ମଧ୍ୟ କିଛି ଦିଅ**

(ମୃତ ଆତ୍ମୀୟଙ୍କ) ସଂପତ୍ତି ବଣ୍ଟନ ବେଳେ ଯଦି ଅନାଥ, ସଂପର୍କୀୟ ବା ଦୀନଦୁଃଖୀ ଉପସ୍ଥିତ ଥାଆନ୍ତି, ତେବେ ସେହି ଧନରୁ ସେମାନଙ୍କୁ ମଧ୍ୟ କିଛି ଦିଅ ଏବଂ ସେମାନଙ୍କ ସହ ବିନମ୍ର ବ୍ୟବହାର କର । (୪/୮)

وَ اِذَا حَضَرَ الْقِسْمَةَ اُولُوا الْقُرْبٰى وَ الْيَتٰمٰى وَ الْمَسٰكِيْنُ فَارْزُقُوْهُمْ مِّنْهُ وَ قُوْلُوْا لَهُمْ قَوْلًا مَّعْرُوْفًا ۝٨

**୬୩. ଉତ୍ତରାଧିକାର ସତ୍ତ୍ୱରେ ପରିଜନଙ୍କର ଭାଗ**

ଅଲ୍ଲାହ ତୁମ ସନ୍ତାନମାନଙ୍କ ସଂପର୍କରେ ଆଦେଶ ଦେଉଛନ୍ତି ଯେ ଜଣେ ପୁରୁଷର ଭାଗ ଦୁଇଜଣ ନାରୀଙ୍କ ଭାଗ ସହ ସମାନ । ନାରୀ ଯଦି ଦୁଇଜଣରୁ ଅଧିକ ଥାଆନ୍ତି, ତେବେ ସେମାନଙ୍କ ଭାଗ ମୃତକ ଛାଡ଼ି ଯାଇଥିବା ସଂପତ୍ତିର ଦୁଇ-ତୃତୀୟାଂଶ ଆଉ ଯଦି ସେ ଜଣେ ଥାଏ, ତେବେ ସେ ଅର୍ଦ୍ଧାଂଶ ପାଇବ । ମୃତ ବ୍ୟକ୍ତିର ପିତାମାତାଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ମୃତକର ସଂପତ୍ତିରେ ଷଷ୍ଠ ଭାଗ, ଯଦି ମୃତକର ସନ୍ତାନ ଥାଆନ୍ତି । ଆଉ ଯଦି ତାର ସଂତାନ ନ ଥାଆନ୍ତି ଏବଂ ତା' ପିତା ମାତା ହିଁ ତା' ଉତ୍ତରାଧିକାରୀ, ତେବେ ତା'

يُوْصِيْكُمُ اللّٰهُ فِیْٓ اَوْلَادِكُمْ ۗ لِلذَّكَرِ مِثْلُ حَظِّ الْاُنْثَيَيْنِ ۚ فَاِنْ كُنَّ نِسَآءً فَوْقَ اثْنَتَيْنِ فَلَهُنَّ ثُلُثَا مَا تَرَكَ ۚ وَ اِنْ كَانَتْ وَاحِدَةً فَلَهَا النِّصْفُ ؕ وَلِاَبَوَيْهِ لِكُلِّ وَاحِدٍ مِّنْهُمَا السُّدُسُ مِمَّا تَرَكَ اِنْ كَانَ لَهٗ وَلَدٌ ۚ فَاِنْ لَّمْ يَكُنْ لَّهٗ وَلَدٌ وَّ

وَرِثَهٗۤ اَبَوٰهُ فَلِاُمِّهِ الثُّلُثُ ۚ فَاِنْ كَانَ لَهٗۤ اِخْوَةٌ
فَلِاُمِّهِ السُّدُسُ مِنْۢ بَعْدِ وَصِيَّةٍ يُّوْصِيْ بِهَاۤ اَوْ
دَيْنٍ ؕ اٰبَآؤُكُمْ وَ اَبْنَآؤُكُمْ لَا تَدْرُوْنَ اَيُّهُمْ اَقْرَبُ
لَكُمْ نَفْعًا ؕ فَرِيْضَةً مِّنَ اللّٰهِ ؕ اِنَّ اللّٰهَ كَانَ
عَلِيْمًا حَكِيْمًا ﴿١١﴾
وَ لَكُمْ نِصْفُ مَا تَرَكَ اَزْوَاجُكُمْ اِنْ لَّمْ يَكُنْ
لَّهُنَّ وَلَدٌ ۚ فَاِنْ كَانَ لَهُنَّ وَلَدٌ فَلَكُمُ الرُّبُعُ
مِمَّا تَرَكْنَ مِنْۢ بَعْدِ وَصِيَّةٍ يُّوْصِيْنَ بِهَاۤ اَوْ دَيْنٍ ؕ
وَ لَهُنَّ الرُّبُعُ مِمَّا تَرَكْتُمْ اِنْ لَّمْ يَكُنْ لَّكُمْ وَلَدٌ ۚ
فَاِنْ كَانَ لَكُمْ وَلَدٌ فَلَهُنَّ الثُّمُنُ مِمَّا تَرَكْتُمْ
مِّنْۢ بَعْدِ وَصِيَّةٍ تُوْصُوْنَ بِهَاۤ اَوْ دَيْنٍ ؕ وَ اِنْ كَانَ
رَجُلٌ يُّوْرَثُ كَلٰلَةً اَوِ امْرَاَةٌ وَّ لَهٗۤ اَخٌ اَوْ اُخْتٌ
فَلِكُلِّ وَاحِدٍ مِّنْهُمَا السُّدُسُ ۚ فَاِنْ كَانُوْۤا
اَكْثَرَ مِنْ ذٰلِكَ فَهُمْ شُرَكَآءُ فِي الثُّلُثِ مِنْۢ بَعْدِ
وَصِيَّةٍ يُّوْصٰى بِهَاۤ اَوْ دَيْنٍ ۙ غَيْرَ مُضَآرٍّ ۚ وَصِيَّةً
مِّنَ اللّٰهِ ؕ وَ اللّٰهُ عَلِيْمٌ حَلِيْمٌ ﴿١٢﴾ تِلْكَ حُدُوْدُ اللّٰهِ ؕ
وَمَنْ يُّطِعِ اللّٰهَ وَرَسُوْلَهٗ يُدْخِلْهُ جَنّٰتٍ تَجْرِيْ
مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا ؕ وَذٰلِكَ الْفَوْزُ
الْعَظِيْمُ ﴿١٣﴾ وَمَنْ يَّعْصِ اللّٰهَ وَ رَسُوْلَهٗ وَيَتَعَدَّ

ମାଆର ଭାଗ ଏକତୃତୀୟାଂଶ ଏବଂ ଯଦି ତା'ର ଭାଇ ଭଉଣୀ ଥାଆନ୍ତି, ତେବେ ମାଆର ଏକ ଷଷ୍ଠାଂଶ । (ଏହି ଭାଗବଣ୍ଟନ) ତା' ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ କରାଯିବ, ଯାହା ସେ କରି ଯାଇଥିବ । ତୁମେ ଜାଣନା ଯେ ତୁମ ପିତା ବା ପୁତ୍ରଙ୍କ ମଧ୍ୟରୁ କିଏ ତୁମମାନଙ୍କର ସର୍ବାଧିକ ହିତକାରୀ । ଏହା ଅଲ୍ଲାହଙ୍କ ଦ୍ୱାରା (ତୁମମାନଙ୍କ ପାଇଁ) ନିର୍ଦ୍ଧାରିତ କରା ଯାଇଥିବା କର୍ତ୍ତବ୍ୟ । (ଜାଣି ରଖ ଯେ) ଅଲ୍ଲାହ ସର୍ବଜ୍ଞ ଓ ତତ୍ତ୍ୱଜ୍ଞ ।

ତୁମମାନଙ୍କ ପତ୍ନୀମାନେ ଯାହା ଛାଡ଼ି ଯାଆନ୍ତି, ଯଦି ସେମାନଙ୍କର ସନ୍ତାନ ନଥିବେ, ତେବେ ତୁମେ ତାର ଅର୍ଦ୍ଧାଂଶ ପାଇବ, ଆଉ ଯଦି ସେମାନଙ୍କର ସନ୍ତାନ ଥିବେ, ତେବେ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ ସେହି ସଂପତ୍ତିର ଏକ ଚତୁର୍ଥାଂଶ ତୁମମାନଙ୍କର । ଆଉ ତୁମେମାନେ ଯାହା ଛାଡ଼ି ଯାଅ, ତାର ଏକଚତୁର୍ଥାଂଶ ତୁମ ପତ୍ନୀମାନଙ୍କର, ଯଦି ତୁମର ସନ୍ତାନ ନାହାନ୍ତି । ଆଉ ଯଦି ତୁମମାନଙ୍କର ସନ୍ତାନ ଥିବେ, ତେବେ ତୁମ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ ତୁମ ସଂପତ୍ତିର ଏକ ଅଷ୍ଟମାଂଶ ସେମାନଙ୍କୁ ମିଳିବ । ଆଉ ଯଦି ସେହି ମୃତ ପୁରୁଷ ବା ମହିଳାର ପିତାମାତା ବା ସନ୍ତାନସନ୍ତତି (ଜୀବିତ) ନ ଥାଆନ୍ତି ଏବଂ କେବଳ ଗୋଟିଏ ଭାଇ ଓ ଗୋଟିଏ ଭଉଣୀ ଥାଆନ୍ତି, ତେବେ ଉଭୟଙ୍କ ମଧ୍ୟରୁ ପ୍ରତ୍ୟେକ ଏକଷଷ୍ଠାଂଶର ଅଧିକାରୀ ହେବେ । ଏବଂ ଯଦି (ଭାଇ ଭଉଣୀ) ଅଧିକ ହୁଅନ୍ତି, ତେବେ ସେମାନେ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ (ଅବଶିଷ୍ଟ ସଂପତ୍ତିର) ଏକତୃତୀୟାଂଶରେ ଅଂଶୀଦାର ହେବେ, ଏହି ସର୍ତ୍ତରେ ଯେ ଅନ୍ୟ କାହାରି କ୍ଷତି ନ ହୁଏ । ଏହା ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ଆଦେଶ ଏବଂ ଅଲ୍ଲାହ ସର୍ବଜ୍ଞ ଏବଂ ସହନଶୀଳ । ଏଗୁଡ଼ିକ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା । ଯେ କେହି ଅଲ୍ଲାହ ଓ ତାଙ୍କ ଧର୍ମଦୂତଙ୍କ ଆଜ୍ଞା ପାଳନ କରିବ, ତାକୁ ସେ ଏଭଳି ଉଦ୍ୟାନରେ ସ୍ଥାନ ଦେବେ ଯାହା ପାଦତଳେ ଝରଣା ପ୍ରବାହିତ ହୁଏ । ଏଭଳି ବ୍ୟକ୍ତିମାନେ ସେଠାରେ ସର୍ବଦା ରହିବେ ଏବଂ ଏହାହିଁ ବଡ଼ ସଫଳତା । ଯିଏ ଅଲ୍ଲାହ ଏବଂ ତାଙ୍କ ବାର୍ତ୍ତାବହଙ୍କର ଅବଜ୍ଞା

କରିବ ଏବଂ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମାଗୁଡ଼ିକୁ ଉଲଂଘନ କରିବ, ସେ ତାକୁ ନର୍କରେ ନିକ୍ଷେପ କରିବେ ଯେଉଁଠାରେ ସେ ସର୍ବଦା ରହିବ ଏବଂ (ସେଠାରେ) ତା' ପାଇଁ ଲାଂଛନାଦାୟକ ଶାସ୍ତି (ପ୍ରସ୍ତୁତ) ରହିଛି । (୪/୧୧-୧୪)

حُدُوْدَهٗ يُدْخِلْهُ نَارًا خَالِدًا فِيْهَا ۪ وَلَهٗ عَذَابٌ
مُّهِيْنٌ ﴿١٤﴾

### ୬୪. ସମଲିଂଗୀ ଯୌନ ସମ୍ବନ୍ଧ ଏକ ଜଘନ୍ୟ କାର୍ଯ୍ୟ

ତୁମମାନଙ୍କ ମଧ୍ୟରୁ ଯଦି ଦୁଇଜଣ ପୁରୁଷ ସେହିପରି ଦୁଷ୍କର୍ମ (ପରସ୍ପର ଯୌନକ୍ରିୟା) କରନ୍ତି, ତେବେ ଉଭୟଙ୍କୁ ଦଣ୍ଡ ଦିଅ ଏବଂ ଯଦି ସେମାନେ ଅନୁତାପ କରନ୍ତି ଏବଂ ନିଜ ଆଚରଣ ସଂଶୋଧନ କରି ନିଅନ୍ତି, ତେବେ ସେମାନଙ୍କ ପିଛା ଛାଡ଼ିଦିଅ । ବାସ୍ତବରେ ଅଲ୍ଲାହ କ୍ଷମାଶୀଳ ଏବଂ କୃପାଶୀଳ । (୪/୧୬)

وَالَّذٰنِ يَاْتِيٰنِهَا مِنْكُمْ فَاٰذُوْهُمَا ۚ فَاِنْ تَابَا وَ
اَصْلَحَا فَاَعْرِضُوْا عَنْهُمَا ؕ اِنَّ اللّٰهَ كَانَ تَوَّابًا
رَّحِيْمًا ﴿١٦﴾

### ୬୫. କେଉଁମାନଙ୍କର ପଶ୍ଚାତାପ ଗ୍ରହଣୀୟ

ବାସ୍ତବରେ ଅଲ୍ଲାହ୍ କେବଳ ସେହି ଲୋକମାନଙ୍କର ଅନୁତାପ ଗ୍ରହଣ କରନ୍ତି ଯେଉଁମାନେ ଅଜ୍ଞାନତା ବଶତଃ କୁକର୍ମ କରିବସନ୍ତି ଆଉ ଶୀଘ୍ର ଅନୁତାପ କରନ୍ତି (ଅର୍ଥାତ୍ କୁକର୍ମରୁ କ୍ଷାନ୍ତ ହୁଅନ୍ତି) । ଏହିମାନଙ୍କର ଅନୁତାପ ଅଲ୍ଲାହ୍ ଗ୍ରହଣ କରନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । (୪/୧୭)

اِنَّمَا التَّوْبَةُ عَلَى اللّٰهِ لِلَّذِيْنَ يَعْمَلُوْنَ السُّوْٓءَ
بِجَهَالَةٍ ثُمَّ يَتُوْبُوْنَ مِنْ قَرِيْبٍ فَاُولٰٓئِكَ يَتُوْبُ
اللّٰهُ عَلَيْهِمْ ؕ وَكَانَ اللّٰهُ عَلِيْمًا حَكِيْمًا ﴿١٧﴾

### ୬୬. ମୃତ୍ୟୁକାଳୀନ ପଶ୍ଚାତାପ ଗ୍ରହଣୀୟ ନୁହେଁ

ଏଭଳି ଲୋକମାନଙ୍କର ପଶ୍ଚାତାପ ଗ୍ରହଣୀୟ ନୁହେଁ ଯେଉଁମାନେ ନିରନ୍ତର କୁକର୍ମ କରୁଥାଆନ୍ତି, ଏପରିକି ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ଆସି ପହଁଚିଯାଏ, ସେ କହେ, "ମୁଁ ଏବେ ଅନୁତାପ କରୁଛି" କିମ୍ବା ସେମାନଙ୍କର ପଶ୍ଚାତାପ ମଧ ଗ୍ରହଣୀୟ ନୁହେଁ ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କ ପ୍ରତି) ଅବିଶ୍ୱାସ କରିଥିବା ଅବସ୍ଥାରେ ମରିଯାଆନ୍ତି । ଏଭଳି ଲୋକମାନଙ୍କ ପାଇଁ ଆମ୍ଭେ ପୀଡ଼ାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଛୁ । (୪/୧୮)

وَلَيْسَتِ التَّوْبَةُ لِلَّذِيْنَ يَعْمَلُوْنَ السَّيِّاٰتِ ۚ
حَتّٰٓى اِذَا حَضَرَ اَحَدَهُمُ الْمَوْتُ قَالَ اِنِّيْ تُبْتُ الْـٰٔنَ
وَلَا الَّذِيْنَ يَمُوْتُوْنَ وَهُمْ كُفَّارٌ ؕ اُولٰٓئِكَ اَعْتَدْنَا
لَهُمْ عَذَابًا اَلِيْمًا ﴿١٨﴾

### ୬୭. ପତ୍ନୀମାନଙ୍କ ସହ ଭଲରୂପେ ବସବାସ କର

ହେ ବିଶ୍ୱାସକାରୀମାନେ! ବଳପୂର୍ବକ ନାରୀମାନଙ୍କର ମାଲିକ ହୋଇଯିବା ତୁମମାନଙ୍କ ପାଇଁ ବୈଧ ନୁହେଁ କିମ୍ବା ସେମାନଙ୍କୁ କଷ୍ଟ ଦେବା ଉଦ୍ଦେଶ୍ୟରେ ଏଥିପାଇଁ ଅଟକାଇ ରଖନାହିଁ ଯେ, ଯାହା (ଧନ) ଦେଇଛ ସେଥିରୁ କିଛି ଛଡ଼ାଇନେବ । ହଁ, ଯଦି ସେମାନେ

يٰٓاَيُّهَا الَّذِيْنَ اٰمَنُوْا لَا يَحِلُّ لَكُمْ اَنْ تَرِثُوا
النِّسَآءَ كَرْهًا ؕ وَلَا تَعْضُلُوْهُنَّ لِتَذْهَبُوْا بِبَعْضِ
مَآ اٰتَيْتُمُوْهُنَّ اِلَّآ اَنْ يَّاْتِيْنَ بِفَاحِشَةٍ مُّبَيِّنَةٍ ۚ

ଖୋଲା ବ୍ୟଭିଚାର କରନ୍ତି, ତେବେ ଭିନ୍ନ କଥା । ସେମାନଙ୍କ ସହିତ ଭଲରୂପେ ବସବାସ କର । ଯଦି ସେମାନେ ତୁମକୁ ପସନ୍ଦ ଆସୁ ନାହାନ୍ତି, ତେବେ ଏହା ମଧ୍ୟ ସମ୍ଭବ ଯେ ହୁଏତ ଗୋଟିଏ ଜିନିଷ ତୁମମାନଙ୍କୁ ଭଲ ଲାଗୁନାହିଁ, ଅଥଚ ଅଲ୍ଲାହ ସେଥିରେ ତୁମର ଅଶେଷ କଲ୍ୟାଣ ରଖିଛନ୍ତି । (୪/୧୯)

وَعَاشِرُوْهُنَّ بِالْمَعْرُوْفِ ۚ فَاِنْ كَرِهْتُمُوْهُنَّ فَعَسٰى اَنْ تَكْرَهُوْا شَيْـًٔا وَّ يَجْعَلَ اللّٰهُ فِيْهِ خَيْرًا كَثِيْرًا ۝١٩

## ୬୮. ନିଷିଦ୍ଧ ବିବାହ

ତୁମମାନଙ୍କ (ବିବାହ) ପାଇଁ ନିଷିଦ୍ଧ ତୁମମାନଙ୍କର ମାଆ, ତୁମ କନ୍ୟା, ତୁମ ଭଉଣୀ, ତୁମ ପିଉସୀ, ତୁମ ମାଉସୀ, ତୁମ ଝିଆରୀ, ତୁମ ଭାଣିଜୀ ଏବଂ ତୁମମାନଙ୍କର ସେହି ମା' ଯେଉଁମାନେ ତୁମକୁ ସ୍ତନ୍ୟପାନ କରାଇଛନ୍ତି ଏବଂ ତୁମର ଦୁଗ୍ଧ-ସଂପର୍କୀୟା ଭଉଣୀ ଏବଂ ତୁମ ପତ୍ନୀମାନଙ୍କର ମା' ଏବଂ ତୁମର ସେହି କନ୍ୟା ଯେଉଁମାନଙ୍କର ତୁମେ ପ୍ରତିପୋଷଣ କରୁଛ ଆଉ ସେମାନେ ତୁମର ସେହି ପତ୍ନୀଙ୍କ ଗର୍ଭରୁ ଜାତ ଯାହାଙ୍କ ସହିତ ତୁମେ ସହବାସ କରି ସାରିଛ । କିନ୍ତୁ ଯଦି ତୁମେମାନେ ସେମାନଙ୍କ ସହିତ ସହବାସ କରି ନଥାଅ, ତେବେ (ସେମାନଙ୍କ କନ୍ୟାମାନଙ୍କ ସହିତ ବିବାହ କରିବାରେ) ତୁମମାନଙ୍କର କୌଣସି ଦୋଷ ହେବ ନାହିଁ । ତୁମ ଔରସରୁ ଜାତ ପୁତ୍ରମାନଙ୍କର ପତ୍ନୀ (ସହିତ ତୁମର ବିବାହ ଅବୈଧ) ଏବଂ ଏକକାଳୀନ ଦୁଇ ଭଉଣୀଙ୍କୁ ବିବାହ କରି ଏକତ୍ରିତ କରିବା ମଧ୍ୟ (ଅବୈଧ କରାଯାଇଛି) । ପୂର୍ବରୁ ଯାହା ହୋଇ ଯାଇଛି, ତାହା ହୋଇ ଯାଇଛି । ଅଲ୍ଲାହ ଅବଶ୍ୟ କ୍ଷମାଶୀଳ ଏବଂ ଦୟାମୟ । ବିବାହିତା ନାରୀମାନଙ୍କ ସହ ତୁମମାନଙ୍କର ବିବାହ ନିଷିଦ୍ଧ କେବଳ ଯଦି (ଯୁଦ୍ଧ ବନ୍ଦୀ ଭାବରେ) ସେମାନେ ତୁମର ହସ୍ତଗତ ହୁଅନ୍ତି । ଏହା ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ଆଦେଶ । ଏମାନଙ୍କ ବ୍ୟତୀତ ଅନ୍ୟ ନାରୀମାନେ ତୁମମାନଙ୍କ ପାଇଁ ବୈଧ, ଯଦି ତୁମେମାନେ ଧନ ଖର୍ଚ୍ଚ କରି ଦୁଷ୍କର୍ମରୁ ସୁରକ୍ଷିତ ରହିବା ପାଇଁ ସେମାନଙ୍କୁ (ରୀତିମତେ) ବିବାହ ଦ୍ୱାରା ଲାଭ କର, ମାତ୍ର ବ୍ୟଭିଚାର କରିବା ପାଇଁ ନୁହେଁ । ଏହା ପରେ ଯଦି ତୁମେମାନେ ସେହି ନାରୀମାନଙ୍କଠାରୁ ଉପକାର ପାଅ, ତେବେ ସେମାନଙ୍କୁ ସେମାନଙ୍କ ନିର୍ଦ୍ଧାରିତ ସ୍ତ୍ରୀଧନ (ମେହେର) ଅବଶ୍ୟ ଦିଅ । ସ୍ତ୍ରୀଧନ ନିର୍ଦ୍ଧାରିତ ହେଲା ପରେ ଯଦି ତୁମେମାନେ ପରସ୍ପର ମଧ୍ୟରେ ଏ

حُرِّمَتْ عَلَيْكُمْ اُمَّهٰتُكُمْ وَ بَنٰتُكُمْ وَ اَخَوٰتُكُمْ وَ عَمّٰتُكُمْ وَ خٰلٰتُكُمْ وَ بَنٰتُ الْاَخِ وَ بَنٰتُ الْاُخْتِ وَ اُمَّهٰتُكُمُ الّٰتِيْٓ اَرْضَعْنَكُمْ وَ اَخَوٰتُكُمْ مِّنَ الرَّضَاعَةِ وَ اُمَّهٰتُ نِسَآىِٕكُمْ وَ رَبَآىِٕبُكُمُ الّٰتِيْ فِيْ حُجُوْرِكُمْ مِّنْ نِّسَآىِٕكُمُ الّٰتِيْ دَخَلْتُمْ بِهِنَّ ۫ فَاِنْ لَّمْ تَكُوْنُوْا دَخَلْتُمْ بِهِنَّ فَلَا جُنَاحَ عَلَيْكُمْ ۫ وَ حَلَآىِٕلُ اَبْنَآىِٕكُمُ الَّذِيْنَ مِنْ اَصْلَابِكُمْ ۙ وَ اَنْ تَجْمَعُوْا بَيْنَ الْاُخْتَيْنِ اِلَّا مَا قَدْ سَلَفَ ؕ اِنَّ اللّٰهَ كَانَ غَفُوْرًا رَّحِيْمًا ۝٢٣

وَّ الْمُحْصَنٰتُ مِنَ النِّسَآءِ اِلَّا مَا مَلَكَتْ اَيْمَانُكُمْ ۚ كِتٰبَ اللّٰهِ عَلَيْكُمْ ۚ وَ اُحِلَّ لَكُمْ مَّا وَرَآءَ ذٰلِكُمْ اَنْ تَبْتَغُوْا بِاَمْوَالِكُمْ مُّحْصِنِيْنَ غَيْرَ مُسٰفِحِيْنَ ؕ فَمَا اسْتَمْتَعْتُمْ بِهٖ مِنْهُنَّ فَاٰتُوْهُنَّ اُجُوْرَهُنَّ فَرِيْضَةً ؕ وَ لَا جُنَاحَ

ବିଷୟରେ କୌଣସି ବୁଝାମଣା କରିନିଅ, ସେଥିରେ ତୁମର ପାପ ହେବ ନାହିଁ । ଅଲ୍ଲାହ ଅବଶ୍ୟ ସର୍ବଜ୍ଞ ଏବଂ ତତ୍ୱଜ୍ଞ । (୪/୨୩-୨୪)

عَلَيْكُمْ فِيْمَا تَرٰضَيْتُمْ بِهٖ مِنْۢ بَعْدِ الْفَرِيْضَةِ ؕ اِنَّ اللّٰهَ كَانَ عَلِيْمًا حَكِيْمًا ۝٢٤

## ୬୯.ଅସଦୁପାର୍ଜନ ଓ ନରହତ୍ୟା ପାଇଁ ନର୍କଦଣ୍ଡ ହେବ

ହେ ବିଶ୍ୱାସକାରୀମାନେ! ପରସ୍ପରର ଧନ ଅସଦୁପାୟରେ ଖାଅନାହିଁ, ମାତ୍ର ପରସ୍ପର ସହମତି କ୍ରମେ କିଣାବିକା ହେଉ । ପରସ୍ପରକୁ ହତ୍ୟା କରନାହିଁ । ଅଲ୍ଲାହ୍ ତୁମମାନଙ୍କ ପ୍ରତି ସଦା କରୁଣାଶୀଳ । ଯିଏ (ଅନ୍ୟ ପ୍ରତି) ଅନ୍ୟାୟ-ଅତ୍ୟାଚାର କରି ଏଭଳି କାର୍ଯ୍ୟ କରିବ, ଆମ୍ଭେ ନିକଟରେ ତାକୁ ନର୍କାଗ୍ନିରେ ନିକ୍ଷେପ କରିବୁ ଏବଂ ଏହା ଅଲ୍ଲାହଙ୍କ ପକ୍ଷରେ ଅତି ମାମୁଲି କଥା । (୪/୨୯-୩୦)

يٰۤاَيُّهَا الَّذِيْنَ اٰمَنُوْا لَا تَاْكُلُوْۤا اَمْوَالَكُمْ بَيْنَكُمْ بِالْبَاطِلِ اِلَّاۤ اَنْ تَكُوْنَ تِجَارَةً عَنْ تَرَاضٍ مِّنْكُمْ ۟ وَلَا تَقْتُلُوْۤا اَنْفُسَكُمْ ؕ اِنَّ اللّٰهَ كَانَ بِكُمْ رَحِيْمًا ۝٢٩ وَمَنْ يَّفْعَلْ ذٰلِكَ عُدْوَانًا وَّ ظُلْمًا فَسَوْفَ نُصْلِيْهِ نَارًا ؕ وَكَانَ ذٰلِكَ عَلَى اللّٰهِ يَسِيْرًا ۝٣٠

## ୭୦. ମହାପାପଗୁଡ଼ିକରୁ ନିବୃତ୍ତ ରହିଲେ ସାଧାରଣ ଦୋଷତ୍ରୁଟି ମାର୍ଜନୀୟ

ଯେଉଁ ମହାପାପଗୁଡ଼ିକରୁ ତୁମମାନଙ୍କୁ ବାରଣ କରାଯାଉଛି, ଯଦି ସେଗୁଡ଼ିକରୁ ତୁମେମାନେ ବିରତ ରୁହ, ତାହାହେଲେ ଆମ୍ଭେ ତୁମମାନଙ୍କର (ସାଧାରଣ) ଦୋଷତ୍ରୁଟି କ୍ଷମା କରିଦେବୁ ଏବଂ ତୁମମାନଙ୍କୁ ଏକ ଗୌରବମୟ ଧାମରେ ସ୍ଥାନ ଦେବୁ ।(୪/୩୧)

اِنْ تَجْتَنِبُوْا كَبَآئِرَ مَا تُنْهَوْنَ عَنْهُ نُكَفِّرْ عَنْكُمْ سَيِّاٰتِكُمْ وَ نُدْخِلْكُمْ مُّدْخَلًا كَرِيْمًا ۝٣١

## ୭୧. ଅନ୍ୟ ପ୍ରତି ଈର୍ଷା କର ନାହିଁ

ତୁମେମାନେ ଏଭଳି (ପାର୍ଥିବ) ବସ୍ତୁର କାମନା କର ନାହିଁ, ଯାହା ଅଲ୍ଲାହ୍ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ପ୍ରଦାନ କରିଛନ୍ତି । (୪/୩୨)

وَ لَا تَتَمَنَّوْا مَا فَضَّلَ اللّٰهُ بِهٖ بَعْضَكُمْ عَلٰى بَعْضٍ ؕ

## ୭୨. ପୁରୁଷମାନେ ନାରୀମାନଙ୍କର ଅଭିଭାବକ

ପୁରୁଷମାନେ ନାରୀମାନଙ୍କର ଅଭିଭାବକ, କାରଣ ଅଲ୍ଲାହ୍ ଜଣକୁ ଅନ୍ୟଜଣକ ତୁଳନାରେ ଶ୍ରେଷ୍ଠ କରିଛନ୍ତି ଏବଂ ଯେହେତୁ ପରୁଷମାନେ (ସେମାନଙ୍କ ପ୍ରତିପୋଷଣ ପାଇଁ) ନିଜର ଧନ ଖର୍ଚ୍ଚ କରିଥାଆନ୍ତି । ସୁତରାଂ, ପୁଣ୍ୟବତୀ ନାରୀ ଆଜ୍ଞାକାରିଣୀ ହୁଅନ୍ତି ଏବଂ ଅଲ୍ଲାହଙ୍କ ସହାୟତା ବଳରେ ପତିଙ୍କ ଅନୁପସ୍ଥିତିରେ

اَلرِّجَالُ قَوّٰمُوْنَ عَلَى النِّسَآءِ بِمَا فَضَّلَ اللّٰهُ بَعْضَهُمْ عَلٰى بَعْضٍ وَّ بِمَاۤ اَنْفَقُوْا مِنْ اَمْوَالِهِمْ ؕ فَالصّٰلِحٰتُ قٰنِتٰتٌ حٰفِظٰتٌ لِّلْغَيْبِ بِمَا حَفِظَ

(ଧନସଂପତ୍ତି ଓ ମାନମର୍ଯ୍ୟାଦାର) ତତ୍ତ୍ୱାବଧାନ କରନ୍ତି । ଯେଉଁ ନାରୀମାନଙ୍କ ଔଦ୍ଧତ୍ୟ (ବା ଉଦଣ୍ଡତା) ଯୋଗୁଁ ତୁମର ଭୟ ହୁଏ, ସେମାନଙ୍କୁ ବୁଝାଅ, (ଯଦି ନମାନନ୍ତି) ଶେଯରେ ଏକୁଟିଆ ଛାଡ଼ିଦିଅ ଏବଂ (ତଥାପି ଯଦି ଅବାଧ ହୁଅନ୍ତି) ସେମାନଙ୍କୁ ପ୍ରହାର କର । ଏହାପରେ ଯଦି ସେମାନେ କଥା ମାନନ୍ତି, ତେବେ ଆଉ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନର ବାଟ ଖୋଜନାହିଁ । (ଜାଣିରଖ) ଅଲ୍ଲାହ୍ ସର୍ବଶ୍ରେଷ୍ଠ ଓ ସର୍ବମହାନ । (୪/୩୪)

اللّٰهُ ؕ وَ الّٰتِیۡ تَخَافُوۡنَ نُشُوۡزَهُنَّ فَعِظُوۡهُنَّ وَ
اهۡجُرُوۡهُنَّ فِی الۡمَضَاجِعِ وَ اضۡرِبُوۡهُنَّ ۚ فَاِنۡ
اَطَعۡنَکُمۡ فَلَا تَبۡغُوۡا عَلَیۡهِنَّ سَبِیۡلًا ؕ اِنَّ اللّٰهَ
کَانَ عَلِیًّا کَبِیۡرًا ﴿۳۴﴾

## ୭୩. ପତି-ପତ୍ନୀଙ୍କ ମଧ୍ୟରେ ମିଳାମିଶା କରାଇଦିଅ

ଯଦି ତୁମମାନଙ୍କୁ ପତି-ପତ୍ନୀଙ୍କ ମଧ୍ୟରେ ମନାନ୍ତରର ଆଶଙ୍କା ହୁଏ, ତେବେ ପତିର ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ ଏବଂ ପତ୍ନୀର ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ ମଧ୍ୟସ୍ଥି ନିଯୁକ୍ତ କର । ଯଦି ସେ ଦୁହେଁ ଆପୋଷ ବୁଝାମଣା ଚାହିଁବେ, ତେବେ ଅଲ୍ଲାହ୍ ଉଭୟଙ୍କ (ପତିପତ୍ନୀ) ମଧ୍ୟରେ ମିଳାମିଶା କରାଇ ଦେବେ । ଅବଶ୍ୟ ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି । (୪/୩୫)

وَ اِنۡ خِفۡتُمۡ شِقَاقَ بَیۡنِهِمَا فَابۡعَثُوۡا حَکَمًا مِّنۡ
اَهۡلِهٖ وَ حَکَمًا مِّنۡ اَهۡلِهَا ۚ اِنۡ یُّرِیۡدَاۤ اِصۡلَاحًا
یُّوَفِّقِ اللّٰهُ بَیۡنَهُمَا ؕ اِنَّ اللّٰهَ کَانَ عَلِیۡمًا خَبِیۡرًا ﴿۳۵﴾

## ୭୪. ସମସ୍ତଙ୍କ ସହ ଉଚିତ ବ୍ୟବହାର କର

ଅଲ୍ଲାହଙ୍କର ଉପାସନା କର ଏବଂ ଏଥିରେ କାହାରିକୁ ତାଙ୍କର ଭାଗୀଦାର କରନାହିଁ । ପିତାମାତା, ଆତ୍ମୀୟସ୍ୱଜନ, ଅନାଥ, ଦରିଦ୍ର, ସଂପର୍କୀୟ ପଡ଼ୋଶୀ ତଥା ଅପରିଚିତ ପଡ଼ୋଶୀ, ତୁମ ସହ ବସାଉଠା କରୁଥିବା ବ୍ୟକ୍ତି, ପଥଚାରୀ ଏବଂ ଦାସଦାସୀମାନଙ୍କ ସହିତ ଉତ୍ତମ ବ୍ୟବହାର କର ଏବଂ (ଜାଣି ରଖ) ଅଲ୍ଲାହ୍ କୌଣସି ଆତ୍ମାଭିମାନୀ ଓ ଅହଂକାରୀକୁ ଆଦୌ ପସନ୍ଦ କରନ୍ତି ନାହିଁ । (୪/୩୬)

وَ اعۡبُدُوا اللّٰهَ وَ لَا تُشۡرِکُوۡا بِهٖ شَیۡئًا وَّ
بِالۡوَالِدَیۡنِ اِحۡسَانًا وَّ بِذِی الۡقُرۡبٰی وَ الۡیَتٰمٰی وَ
الۡمَسٰکِیۡنِ وَ الۡجَارِ ذِی الۡقُرۡبٰی وَ الۡجَارِ الۡجُنُبِ وَ
الصَّاحِبِ بِالۡجَنۡۢبِ وَ ابۡنِ السَّبِیۡلِ ۙ وَ مَا
مَلَکَتۡ اَیۡمَانُکُمۡ ؕ اِنَّ اللّٰهَ لَا یُحِبُّ مَنۡ کَانَ
مُخۡتَالًا فَخُوۡرَا ﴿۳۶﴾

## ୭୫. ଲୋକଙ୍କୁ କୃପଣତା ଶିଖାଅ ନାହିଁ

ଯେଉଁମାନେ କୃପଣତା କରନ୍ତି ଆଉ ଅନ୍ୟମାନଙ୍କୁ କୃପଣତାର ଶିକ୍ଷା ଦିଅନ୍ତି ଏବଂ ଅଲ୍ଲାହ ସେମାନଙ୍କୁ ନିଜ କୃପାରୁ ଯାହାକିଛି (ଧନ) ଦେଇଛନ୍ତି, ତାହାକୁ ଲୁଚାଇ ରଖନ୍ତି, ଏଭଳି କୃତଘ୍ନମାନଙ୍କ ପାଇଁ ଆମ୍ଭେ ଅପମାନଜନକ ଶାସ୍ତି ପ୍ରସ୍ତୁତ ରଖିଛୁ । (୪/୩୭)

الَّذِیۡنَ یَبۡخَلُوۡنَ وَ یَاۡمُرُوۡنَ النَّاسَ بِالۡبُخۡلِ وَ
یَکۡتُمُوۡنَ مَاۤ اٰتٰهُمُ اللّٰهُ مِنۡ فَضۡلِهٖ ؕ وَ اَعۡتَدۡنَا
لِلۡکٰفِرِیۡنَ عَذَابًا مُّهِیۡنًا ﴿۳۷﴾

**୭୬. ଅଲ୍ଲାହ୍ କାହାରି ପ୍ରତି ଅନ୍ୟାୟ କରନ୍ତି ନାହିଁ**

ଅଲ୍ଲାହ୍ କାହାରି ପ୍ରତି ତିଳେ ହେଲେ ଅନ୍ୟାୟ କରନ୍ତି ନାହିଁ । ଯଦି କାହାରି କିଛି ପୁଣ୍ୟ ଥାଏ, ତାହାକୁ ବହୁଗୁଣିତ କରିଦିଅନ୍ତି ଏବଂ ନିଜ ତରଫରୁ ଭଲ ପ୍ରତିଦାନ (ମଧ୍ୟ) ଦିଅନ୍ତି । (୪/୪୦)

إِنَّ ٱللَّهَ لَا يَظْلِمُ مِثْقَالَ ذَرَّةٍ ۖ وَإِن تَكُ حَسَنَةً
يُضَٰعِفْهَا وَيُؤْتِ مِن لَّدُنْهُ أَجْرًا عَظِيمًا ﴿٤٠﴾

**୭୭. ଅମାନତ ଫେରାଅ ଏବଂ ଉଚିତ ନ୍ୟାୟ କର**

ଅଲ୍ଲାହ୍ ତୁମ୍ଭମାନଙ୍କୁ ଆଜ୍ଞା ଦେଉଛନ୍ତି ଯେ ତୁମ୍ଭ ପାଖରେ ଭରସା କରି ରଖାଯାଇଥିବା ବସ୍ତୁ ତାହାର ପ୍ରକୃତ ମାଲିକକୁ ଫେରସ୍ତ କର ଏବଂ ଯେତେବେଳେ ଲୋକଙ୍କ ମଧ୍ୟରେ ନିଷ୍ପତ୍ତି କର, ତେବେ ନ୍ୟାୟସଂଗତ ଭାବରେ କର । ଅଲ୍ଲାହ୍ ତୁମ୍ଭମାନଙ୍କୁ ଭଲ ଉପଦେଶ ଦେଉଛନ୍ତି ଏବଂ ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । (୪/୫୮)

إِنَّ ٱللَّهَ يَأْمُرُكُمْ أَن تُؤَدُّوا۟ ٱلْأَمَٰنَٰتِ إِلَىٰٓ أَهْلِهَا وَ
إِذَا حَكَمْتُم بَيْنَ ٱلنَّاسِ أَن تَحْكُمُوا۟ بِٱلْعَدْلِ ۚ
إِنَّ ٱللَّهَ نِعِمَّا يَعِظُكُم بِهِۦٓ ۗ إِنَّ ٱللَّهَ كَانَ سَمِيعًۢا
بَصِيرًا ﴿٥٨﴾

**୭୮. ଈଶ୍ୱର ଓ ଈଶ୍ୱରଦୂତଙ୍କ ନିଷ୍ପତ୍ତି ହିଁ ଅନ୍ତିମ ନିଷ୍ପତ୍ତି**

ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କ ଆଜ୍ଞା ପାଳନ କର ଏବଂ ତାଙ୍କ ଦୂତଙ୍କ ଆଜ୍ଞା ପାଳନ କର ଏବଂ ଯେଉଁମାନେ ତୁମ୍ଭମାନଙ୍କ ମଧ୍ୟରେ କ୍ଷମତାପ୍ରାପ୍ତ, ସେମାନଙ୍କର ଆଦେଶ ମଧ୍ୟ ପାଳନ କର । ପୁଣି ଯଦି କୌଣସି ବିଷୟରେ ତୁମ୍ଭମାନଙ୍କ ମଧ୍ୟରେ ମତଭେଦ ହୁଏ, ତେବେ ତାହାକୁ ଅଲ୍ଲାହ୍ ଏବଂ ତାଙ୍କ ବାର୍ତ୍ତାବହଙ୍କ ନିଷ୍ପତ୍ତି ଲାଗି ସମର୍ପିତ କର, ଯଦି ପ୍ରକୃତରେ ତୁମ୍ଭମାନଙ୍କର ଅଲ୍ଲାହ ଏବଂ ପୁନର୍ଜୀବନ ଦିନ ପ୍ରତି ବିଶ୍ୱାସ ଅଛି । ଏହା ହିଁ ସର୍ବୋଚିତ ପନ୍ଥା ଏବଂ ଏହାର ପରିଣାମ ମଧ୍ୟ ଭଲ । (୪/୫୯)

يَٰٓأَيُّهَا ٱلَّذِينَ ءَامَنُوٓا۟ أَطِيعُوا۟ ٱللَّهَ وَ أَطِيعُوا۟
ٱلرَّسُولَ وَ أُو۟لِى ٱلْأَمْرِ مِنكُمْ ۖ فَإِن تَنَٰزَعْتُمْ فِى
شَىْءٍ فَرُدُّوهُ إِلَى ٱللَّهِ وَ ٱلرَّسُولِ إِن كُنتُمْ
تُؤْمِنُونَ بِٱللَّهِ وَ ٱلْيَوْمِ ٱلْءَاخِرِ ۚ ذَٰلِكَ خَيْرٌ وَ
أَحْسَنُ تَأْوِيلًا ﴿٥٩﴾

**୭୯. କୁକର୍ମ ଯୋଗୁଁ ମଣିଷର ଅମଂଗଳ ହୁଏ**

(ହେ ମାନବ!) ତୋର ଯାହା ମଂଗଳ ହୁଏ, ତାହା ଅଲ୍ଲାହଙ୍କ କରୁଣାରୁ ହୁଏ ଏବଂ ଯାହାକିଛି ଅମଂଗଳ ହୁଏ ତାହା ତୋ ନିଜର (ଅପକର୍ମ) ଯୋଗୁଁ ହୁଏ । (୪/୭୯)

مَّآ أَصَابَكَ مِنْ حَسَنَةٍ فَمِنَ ٱللَّهِ ۖ وَمَآ أَصَابَكَ
مِن سَيِّئَةٍ فَمِن نَّفْسِكَ ۚ

**୮୦. ଈଶ୍ୱରଦୂତଙ୍କ ଆଜ୍ଞା ମଧ୍ୟ ଈଶ୍ୱରଙ୍କ ଆଜ୍ଞା**

ଯିଏ ଈଶ୍ୱରଦୂତଙ୍କର ଆଜ୍ଞା ପାଳନ କରେ, ସେ (ପ୍ରକୃତରେ) ଅଲ୍ଲାହଙ୍କ ଆଜ୍ଞା ହିଁ ପାଳନ କରିଥାଏ ଏବଂ ଯିଏ ଅବଜ୍ଞା କରେ, ତେବେ (ସେ ଜାଣିରଖୁ ଯେ) ଆମ୍ଭେ ତୁମ୍ଭକୁ ସେମାନଙ୍କର ତତ୍ତ୍ୱାବଧାରକ ନିଯୁକ୍ତ କରିନାହୁଁ । (୪/୮୦)

مَّن يُطِعِ ٱلرَّسُولَ فَقَدْ أَطَاعَ ٱللَّهَ ۖ وَمَن تَوَلَّىٰ فَمَآ
أَرْسَلْنَٰكَ عَلَيْهِمْ حَفِيظًا ﴿٨٠﴾

**୮୧. କୁରଆନ ମାନବ ରଚନା ନୁହେଁ**

କ'ଣ ସେମାନେ କୁରଆନ ପ୍ରତି ଧ୍ୟାନ ଦେଉ ନାହାନ୍ତି ? ଯଦି ଏହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ରଚନା ହୋଇ ଥାଆନ୍ତା, ତେବେ ସେମାନେ ସେଥିରେ ଅନେକ ଭିନ୍ନତା ଦେଖିବାକୁ ପାଆନ୍ତେ । (୪/୮୨)

اَفَلَا يَتَدَبَّرُوْنَ الْقُرْاٰنَ ؕ وَلَوْ كَانَ مِنْ عِنْدِ غَيْرِ اللّٰهِ لَوَجَدُوْا فِيْهِ اخْتِلَافًا كَثِيْرًا ﴿٨٢﴾

**୮୨. ଅସତକର୍ମର ଅନୁମୋଦନ ମଧ୍ୟ ପାପ**

ଯେଉଁ ବ୍ୟକ୍ତି କୌଣସି ସତକର୍ମର ଅନୁମୋଦନ କରିବ ସେଥିରେ ତା'ର ଭାଗ ରହିବ ଏବଂ ଯିଏ କୌଣସି ଅପକର୍ମର କାରଣ ହେବ, ସେ (ମଧ୍ୟ) ଏହାର ଭାଗୀଦାର ହେବ । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । (୪/୮୫)

مَنْ يَّشْفَعْ شَفَاعَةً حَسَنَةً يَّكُنْ لَّهٗ نَصِيْبٌ مِّنْهَا ۚ وَمَنْ يَّشْفَعْ شَفَاعَةً سَيِّئَةً يَّكُنْ لَّهٗ كِفْلٌ مِّنْهَا ؕ وَكَانَ اللّٰهُ عَلٰى كُلِّ شَیْءٍ مُّقِيْتًا ﴿٨٥﴾

**୮୩. ଶୁଭେଚ୍ଛାର ଉଚିତ ପ୍ରତ୍ୟୁତ୍ତର ଦିଅ**

ଯଦି କେହି ତୁମକୁ ଶୁଭେଚ୍ଛା ଜଣାଏ, ତେବେ (ପ୍ରତ୍ୟୁତ୍ତରରେ) ତୁମେ ତାକୁ ତା'ଠାରୁ ଭଲ ଶୁଭେଚ୍ଛା ଜଣାଅ କିମ୍ବା ଅନ୍ତତଃ ସେହିଭଳି (ଶବ୍ଦରେ) ପ୍ରତ୍ୟୁତ୍ତର ଦିଅ । ନିଶ୍ଚୟ ଅଲ୍ଲାହ୍ ସବୁ କଥାର ହିସାବ ନେବେ । (୪/୮୬)

وَاِذَا حُيِّيْتُمْ بِتَحِيَّةٍ فَحَيُّوْا بِاَحْسَنَ مِنْهَاۤ اَوْ رُدُّوْهَا ؕ اِنَّ اللّٰهَ كَانَ عَلٰى كُلِّ شَیْءٍ حَسِيْبًا ﴿٨٦﴾

**୮୪. ନିର୍ଦ୍ଧାରିତ ସମୟରେ ନମାଜପାଠ ଅପରିହାର୍ଯ୍ୟ**

ଆସ୍ଥା ରଖିଥିବା ଲୋକମାନଙ୍କ ପାଇଁ ଅବଶ୍ୟ ନିର୍ଦ୍ଧାରିତ ସମୟାନୁଯାୟୀ ନମାଜ ସଂପାଦନ କରିବା ଅପରିହାର୍ଯ୍ୟ କରାଯାଇଛି । (୪/୧୦୩)

اِنَّ الصَّلٰوةَ كَانَتْ عَلَى الْمُؤْمِنِيْنَ كِتٰبًا مَّوْقُوْتًا ﴿١٠٣﴾

**୮୫. କ୍ଷମାପ୍ରାର୍ଥନା କଲେ ନିଶ୍ଚୟ କ୍ଷମା କରିଦିଆଯିବ**

ଯିଏ କୌଣସି ଅପକର୍ମ କରେ ବା ନିଜ ପ୍ରତି ଅନ୍ୟାୟ କରିବସେ, ପୁଣି ଅଲ୍ଲାହଙ୍କ ପାଖରେ କ୍ଷମାପ୍ରାର୍ଥନା କରେ, ତେବେ ସେ ଦେଖିବ ଯେ ଅଲ୍ଲାହ୍ କିଭଳି କ୍ଷମାଶୀଳ ଆଉ କିଭଳି ଦୟାଳୁ । (୪/୧୧୦)

وَمَنْ يَّعْمَلْ سُوْٓءًا اَوْ يَظْلِمْ نَفْسَهٗ ثُمَّ يَسْتَغْفِرِ اللّٰهَ يَجِدِ اللّٰهَ غَفُوْرًا رَّحِيْمًا ﴿١١٠﴾

**୮୬. କାହାରି ପ୍ରତି ମିଥ୍ୟାରୋପ କରିବା ମହାପାପ**

ଯେଉଁ ବ୍ୟକ୍ତି (ନିଜେ) କୌଣସି ଦୋଷ ବା ପାପ କରେ, ପୁଣି ଏହାର ଆରୋପ କୌଣସି ନିର୍ଦୋଷ ବ୍ୟକ୍ତି ପ୍ରତି କରେ, ତେବେ ସେ ଅବଶ୍ୟ ଏକ ଜଘନ୍ୟ ମିଥ୍ୟାରୋପ ତଥା ଗର୍ହିତ ପାପର ଭାର ବହନ କଲା । (୪/୧୧୨)

وَمَنْ يَّكْسِبْ خَطِيْٓئَةً اَوْ اِثْمًا ثُمَّ يَرْمِ بِهٖ بَرِيْٓئًا فَقَدِ احْتَمَلَ بُهْتَانًا وَّاِثْمًا مُّبِيْنًا ﴿١١٢﴾

### ୮୭. ବୁଝାମଣା କରାଇଦେବା ଏକ ମହତ କାର୍ଯ୍ୟ

ଲୋକମାନଙ୍କର ଅଧିକାଂଶ ମନ୍ତ୍ରଣା ହିତକର ନୁହେଁ । ହଁ, ଯଦି କେହି ଦାନ କରିବା, ଉପକାର କରିବା କିମ୍ବା ଲୋକମାନଙ୍କ ମଧ୍ୟରେ ମିଳାମିଶା କରାଇଦେବା ପାଇଁ (ପରାମର୍ଶ) କରୁଥାଏ, ତେବେ ତାହା ଭିନ୍ନ । ଯିଏ ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ ଏହା କରିବ, ଆମ୍ଭେ ତାକୁ ଭଲ ପୁରସ୍କାର ଦେବୁ । (୪/୧୧୪)

لَا خَيْرَ فِيْ كَثِيْرٍ مِّنْ نَّجْوٰىهُمْ اِلَّا مَنْ اَمَرَ بِصَدَقَةٍ
اَوْ مَعْرُوْفٍ اَوْ اِصْلَاحٍۢ بَيْنَ النَّاسِ ؕ وَمَنْ يَّفْعَلْ
ذٰلِكَ ابْتِغَآءَ مَرْضَاتِ اللّٰهِ فَسَوْفَ نُؤْتِيْهِ اَجْرًا
عَظِيْمًا ﴿۱۱۴﴾

### ୮୮. ମଣିଷ ନିଜପାଇଁ ଯେଉଁ ରାସ୍ତା ବାଛେ, ସେଇ ରାସ୍ତାରେ ତାକୁ ଛାଡ଼ିଦିଆଯାଏ

ଯିଏ ଈଶ୍ୱରଦୂତଙ୍କର ବିରୋଧ କରିବ ଏବଂ ତା' ନିକଟରେ ସତ୍‌ମାର୍ଗ ପରିଷ୍କାର ହୋଇଯିବା ପରେ ଯଦି ବିଶ୍ୱାସକାରୀମାନଙ୍କ ମାର୍ଗ ବ୍ୟତୀତ ଅନ୍ୟ ମାର୍ଗ ଅନୁସରଣ କରିବ, ତେବେ ଆମ୍ଭେ ତାକୁ ସେହି ମାର୍ଗରେ (ଯିବା ପାଇଁ) ଛାଡ଼ିଦେବୁ ଯାହାକୁ ସେ ନିଜେ ବାଛିଥିବ ଏବଂ ତାକୁ ନର୍କରେ ନିକ୍ଷେପ କରିବୁ । ଏହା ଏକ କଦର୍ଯ୍ୟ ସ୍ଥାନ । (୪/୧୧୫)

وَمَنْ يُّشَاقِقِ الرَّسُوْلَ مِنْۢ بَعْدِ مَا تَبَيَّنَ لَهُ
الْهُدٰى وَيَتَّبِعْ غَيْرَ سَبِيْلِ الْمُؤْمِنِيْنَ نُوَلِّهٖ
مَا تَوَلّٰى وَنُصْلِهٖ جَهَنَّمَ ؕ وَسَآءَتْ مَصِيْرًا ﴿۱۱۵﴾

### ୮୯. ଅନ୍ୟର ଉପାସନା ଅକ୍ଷମଣୀୟ ଅପରାଧ

ଅଲ୍ଲାହଙ୍କ ସହିତ କାହାରିକୁ ସମକକ୍ଷ କଲେ ଅଲ୍ଲାହ୍ ଏହା ଆଦୌ କ୍ଷମା କରନ୍ତି ନାହିଁ । ହଁ, ଏହା ବ୍ୟତୀତ ଅନ୍ୟ କୌଣସି ପାପ ପାଇଁ ସେ ଯାହାକୁ ଚାହିଁବେ କ୍ଷମା କରିଦେବେ । ଯିଏ (ଅନ୍ୟର ଉପାସନା କରି) ଅଲ୍ଲାହଙ୍କ ସହ କାହାରିକୁ ସହଭାଗୀ କଲା, ସେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଗଲା । (୪/୧୧୬)

اِنَّ اللّٰهَ لَا يَغْفِرُ اَنْ يُّشْرَكَ بِهٖ وَيَغْفِرُ مَا دُوْنَ ذٰلِكَ
لِمَنْ يَّشَآءُ ؕ وَمَنْ يُّشْرِكْ بِاللّٰهِ فَقَدْ ضَلَّ ضَلٰلًاۢ
بَعِيْدًا ﴿۱۱۶﴾

### ୯୦. ତୁମର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ

ଯାହାକିଛି ଅନ୍ତରୀକ୍ଷରେ ଅଛି ଏବଂ ଯାହା ପୃଥିବୀରେ ଅଛି, ସବୁ ଅଲ୍ଲାହଙ୍କର ଏବଂ ତୁମମାନଙ୍କ କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ । (୪/୧୩୨)

وَلِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ؕ وَكَفٰى بِاللّٰهِ
وَكِيْلًا ﴿۱۳۲﴾

### ୯୧. ନ୍ୟାୟ କରିବାରେ ପକ୍ଷପାତ କର ନାହିଁ

ହେ ବିଶ୍ୱାସକାରୀମାନେ! ନ୍ୟାୟରେ ସଂପୂର୍ଣ୍ଣ ଅଟଳ ରହି ଅଲ୍ଲାହଙ୍କ ପାଇଁ ସାକ୍ଷ୍ୟ ଦିଅ ଯଦିଓ ଏହା ତୁମ ନିଜ ବିରୁଦ୍ଧରେ ଯାଉ କିମ୍ବା ତୁମ ପିତାମାତା ବା ଆତ୍ମୀୟଙ୍କ ବିରୁଦ୍ଧରେ । ସେ ବ୍ୟକ୍ତି

يٰۤاَيُّهَا الَّذِيْنَ اٰمَنُوْا كُوْنُوْا قَوّٰمِيْنَ بِالْقِسْطِ
شُهَدَآءَ لِلّٰهِ وَلَوْ عَلٰۤى اَنْفُسِكُمْ اَوِ الْوَالِدَيْنِ وَ

(ଯାହା ବିରୁଦ୍ଧରେ ସାକ୍ଷ୍ୟ ଦେବାକୁ ପଡ଼େ) ଧନୀ ହୋଇଥାଉ ବା ଗରିବ, ଅଲ୍ଲାହ୍ (ତୁମଠୁ ବଳି) ସେମାନଙ୍କର ଅଧିକ ହିତାକାଂକ୍ଷୀ । ସୁତରାଂ, ଇନ୍ଦ୍ରିୟାଧୀନ ହୋଇ ତୁମେମାନେ କଦାପି ନ୍ୟାୟପଥରୁ ବିଚ୍ୟୁତ ହୁଅ ନାହିଁ । ଯଦି ତୁମେ ଏପଟ ସେପଟ କର ବା ଅନ୍ୟାୟ କର, ତେବେ (ଜାଣି ରଖ) ଯାହାକିଛି ତୁମେ କରୁଛ ଅଲ୍ଲାହ୍ ତାହା ଜାଣନ୍ତି । (୪/୧୩୫)

الْاَقْرَبِيْنَ ۚ اِنْ يَّكُنْ غَنِيًّا اَوْ فَقِيْرًا فَاللّٰهُ اَوْلٰى
بِهِمَا ۫ فَلَا تَتَّبِعُوا الْهَوٰٓى اَنْ تَعْدِلُوْا ۚ وَاِنْ تَلْوٗٓا
اَوْ تُعْرِضُوْا فَاِنَّ اللّٰهَ كَانَ بِمَا تَعْمَلُوْنَ خَبِيْرًا ﴿١٣٥﴾

### ୯୨. ଧର୍ମର ମୌଳିକ ବିଶ୍ୱାସ

ହେ ବିଶ୍ୱାସକାରୀମାନେ! ବିଶ୍ୱାସ ରଖ ଅଲ୍ଲାହଙ୍କ ପ୍ରତି, ତାଙ୍କ ଦୂତଙ୍କ ପ୍ରତି ଏବଂ ସେହି ଗ୍ରନ୍ଥ ପ୍ରତି ଯାହା ଈଶ୍ୱରଦୂତଙ୍କ ପ୍ରତି ପ୍ରକଟ ହେଲା ଏବଂ ସେହି ଗ୍ରନ୍ଥଗୁଡ଼ିକ ପ୍ରତି ଯାହା ତାଙ୍କ ପୂର୍ବରୁ ପ୍ରକଟ ହୋଇଥିଲା । ଯିଏ ଅଲ୍ଲାହଙ୍କୁ, ତାଙ୍କ ଦେବଗଣଙ୍କୁ, ତାଙ୍କ ଗ୍ରନ୍ଥସମୂହକୁ, ତାଙ୍କ ଦୂତମାନଙ୍କୁ ଏବଂ ପୁନର୍ଜୀବିତ ହେବା ଦିନକୁ ଅସ୍ୱୀକାର କଲା, ସେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଗଲା । (୪/୧୩୬)

يٰٓاَيُّهَا الَّذِيْنَ اٰمَنُوْٓا اٰمِنُوْا بِاللّٰهِ وَرَسُوْلِهٖ وَ
الْكِتٰبِ الَّذِيْ نَزَّلَ عَلٰى رَسُوْلِهٖ وَالْكِتٰبِ الَّذِيْٓ
اَنْزَلَ مِنْ قَبْلُ ۗ وَمَنْ يَّكْفُرْ بِاللّٰهِ وَمَلٰٓئِكَتِهٖ وَ
كُتُبِهٖ وَرُسُلِهٖ وَالْيَوْمِ الْاٰخِرِ فَقَدْ ضَلَّ ضَلٰلًا
بَعِيْدًا ﴿١٣٦﴾

### ୯୩. ଈଶ୍ୱର ଅକାରଣରେ ଶାସ୍ତି ଦିଅନ୍ତି ନାହିଁ

ଯଦି ତୁମେ କୃତଜ୍ଞ ହୁଅ ଏବଂ ବିଶ୍ୱାସ କରିନିଅ, ତେବେ ଅଲ୍ଲାହ୍ ତୁମମାନଙ୍କୁ ଦଣ୍ଡ ଦେଇ କ'ଣ (ଲାଭ) ପାଇବେ? ଅଲ୍ଲାହ୍ ଗୁଣଗ୍ରାହୀ ଏବଂ ସେ ସବୁକିଛି ଜାଣନ୍ତି । (୪/୧୪୭)

مَا يَفْعَلُ اللّٰهُ بِعَذَابِكُمْ اِنْ شَكَرْتُمْ وَاٰمَنْتُمْ ۗ وَ
كَانَ اللّٰهُ شَاكِرًا عَلِيْمًا ﴿١٤٧﴾

### ୯୪. ପରନିନ୍ଦା କରନାହିଁ

ଅଲ୍ଲାହ୍ ପରନିନ୍ଦା ପସନ୍ଦ କରନ୍ତି ନାହିଁ, ଅବଶ୍ୟ କାହାରି ପ୍ରତି ଅତ୍ୟାଚାର ହୋଇଥିଲେ ତା' କଥା ଭିନ୍ନ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । (୪/୧୪୮)

لَا يُحِبُّ اللّٰهُ الْجَهْرَ بِالسُّوْٓءِ مِنَ الْقَوْلِ اِلَّا مَنْ
ظُلِمَ ۗ وَكَانَ اللّٰهُ سَمِيْعًا عَلِيْمًا ﴿١٤٨﴾

### ୯୫. ଉପକାର କର ଏବଂ ଅପକାର କ୍ଷମା କରିଦିଅ

ତୁମେମାନେ ପ୍ରକାଶ୍ୟ ଭାବରେ ଉପକାର କର ବା ଗୋପନରେ, କିମ୍ବା (ଅନ୍ୟର) କୌଣସି ଅପକାର କ୍ଷମା କରିଦିଅ, (ଜାଣିରଖ) ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ଶକ୍ତିମାନ ଅଟନ୍ତି । (୪/୧୪୯)

اِنْ تُبْدُوْا خَيْرًا اَوْ تُخْفُوْهُ اَوْ تَعْفُوْا عَنْ سُوْٓءٍ
فَاِنَّ اللّٰهَ كَانَ عَفُوًّا قَدِيْرًا ﴿١٤٩﴾

### ୯୬. ଈଶ୍ୱରଦୂତମାନଙ୍କ ଆବିର୍ଭାବର କାରଣ

ଆମ୍ଭେ (ସ୍ୱର୍ଗର) ସୁସମ୍ବାଦ ଦେବା ପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବା ପାଇଁ ଈଶ୍ୱରଦୂତ ପଠାଇଥାଉ ଯେପରିକି

رُسُلًا مُّبَشِّرِيْنَ وَمُنْذِرِيْنَ لِئَلَّا يَكُوْنَ لِلنَّاسِ

عَلَى اللّٰهِ حُجَّةٌۢ بَعْدَ الرُّسُلِ ؕ وَ كَانَ اللّٰهُ عَزِيْزًا
حَكِيْمًا ﴿۱۶۵﴾

ଈଶ୍ୱରଦୂତମାନଙ୍କର ଆସିବା ପରେ ଅଲ୍ଲାହଙ୍କ ବିରୁଦ୍ଧରେ ଲୋକମାନଙ୍କର କୌଣସି ବାହାନା ନ ରହୁ । ଅଲ୍ଲାହ୍ ପ୍ରବଳ କ୍ଷମତାଶାଳୀ ଏବଂ ତତ୍ତ୍ୱଦର୍ଶୀ । (୪/୧୬୫)

## ୯୭. ବର୍ତ୍ତାବହଙ୍କୁ ମାନିନେଲେ ତୁମର ମଂଗଳ ହେବ

يٰۤاَيُّهَا النَّاسُ قَدْ جَآءَكُمُ الرَّسُوْلُ بِالْحَقِّ مِنْ
رَّبِّكُمْ فَاٰمِنُوْا خَيْرًا لَّكُمْ ؕ وَاِنْ تَكْفُرُوْا فَاِنَّ
لِلّٰهِ مَا فِى السَّمٰوٰتِ وَالْاَرْضِ ؕ وَكَانَ اللّٰهُ عَلِيْمًا
حَكِيْمًا ﴿۱۷۰﴾

ହେ ମନୁଷ୍ୟଗଣ ! ଏହି ଈଶ୍ୱରଦୂତ (ମହାମାନ୍ୟ ମୁହମ୍ମଦ) ତୁମ ପରମେଶ୍ୱରଙ୍କଠାରୁ ସତ୍ୟର ବାର୍ତ୍ତା ଧରି ତୁମମାନଙ୍କ ପାଖକୁ ଆସିଛନ୍ତି, ମାନିନିଅ - ତୁମମାନଙ୍କର ମଂଗଳ ହେବ । ଯଦି ନ ମାନିବ, ତେବେ (ଜାଣିରଖ) ଯାହାକିଛି ଅନ୍ତରୀକ୍ଷରେ ଅଛି ବା ଯାହାକିଛି ପୃଥିବୀରେ ଅଛି, ସବୁ ଅଲ୍ଲାହଙ୍କର ଏବଂ ଅଲ୍ଲାହ୍ ମହାଜ୍ଞାନୀ ଏବଂ ତତ୍ତ୍ୱଦର୍ଶୀ । (୪/୧୭୦)

## ୯୮. ଧର୍ମକୁ ଅତିରଂଜିତ କରନାହିଁ

يٰۤاَهْلَ الْكِتٰبِ لَا تَغْلُوْا فِىْ دِيْنِكُمْ وَلَا تَقُوْلُوْا
عَلَى اللّٰهِ اِلَّا الْحَقَّ ؕ

ହେ ଗ୍ରନ୍ଥଧାରୀମାନେ ! ନିଜ ଧର୍ମ ବିଷୟରେ ଅତିରଂଜିତ କରନାହିଁ ଏବଂ ଅଲ୍ଲାହଙ୍କ ବିଷୟରେ କେବଳ ସତ୍ୟ ବ୍ୟତୀତ ଅନ୍ୟ କିଛି କୁହନାହିଁ । (୪/୧୭୧)

## ୯୯. ସତକାର୍ଯ୍ୟରେ ପରସ୍ପରକୁ ସହଯୋଗ କର

وَتَعَاوَنُوْا عَلَى الْبِرِّ وَالتَّقْوٰى ۪ وَلَا تَعَاوَنُوْا عَلَى
الْاِثْمِ وَالْعُدْوَانِ ۪ وَاتَّقُوا اللّٰهَ ؕ اِنَّ اللّٰهَ شَدِيْدُ
الْعِقَابِ ﴿۲﴾

ଧର୍ମପରାୟଣ ଏବଂ ସହିଷ୍ଣୁ ହେବାରେ ପରସ୍ପରକୁ ସାହାଯ୍ୟ କର, କିନ୍ତୁ ପାପ ଏବଂ ଅତ୍ୟାଚାରରେ କାହାରିକୁ ସହଯୋଗ କରନାହିଁ । ଅଲ୍ଲାହଙ୍କୁ ଭୟ କରୁଥାଅ । ଅଲ୍ଲାହ୍ ଅବଶ୍ୟ କଠୋର ଶାସ୍ତି ଦିଅନ୍ତି । (୫/୨)

## ୧୦୦. ନିଷିଦ୍ଧ ଆଚାର

حُرِّمَتْ عَلَيْكُمُ الْمَيْتَةُ وَالدَّمُ وَلَحْمُ الْخِنْزِيْرِ وَ
مَاۤ اُهِلَّ لِغَيْرِ اللّٰهِ بِهٖ وَالْمُنْخَنِقَةُ وَالْمَوْقُوْذَةُ وَ
الْمُتَرَدِّيَةُ وَالنَّطِيْحَةُ وَمَاۤ اَكَلَ السَّبُعُ اِلَّا مَا
ذَكَّيْتُمْ ۫ وَمَا ذُبِحَ عَلَى النُّصُبِ وَاَنْ تَسْتَقْسِمُوْا
بِالْاَزْلَامِ ؕ ذٰلِكُمْ فِسْقٌ ؕ

ତୁମମାନଙ୍କ ପାଇଁ ନିଷିଦ୍ଧ କରାଯାଇଛି ମୁର୍ଦ୍ଦାର, ରକ୍ତ, ଶୂକର ମାଂସ ଏବଂ ଯାହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ନାମରେ ସଂସ୍କୃତ ହୋଇଥାଏ, ଯିଏ କଣ୍ଠରୋଧ ଦ୍ୱାରା ବା କୌଣସି ଆଘାତ ଦ୍ୱାରା ବା ଉପରୁ ଖସିପଡ଼ି ମରିଯାଇଥାଏ ବା ଯିଏ ଶିଂଗ ଆଘାତରେ ମରିଥାଏ ବା ଯାହାକୁ କୌଣସି ହିଂସ୍ର ଜନ୍ତୁ ଆକ୍ରମଣ କରିଥାଏ । ମାତ୍ର ଯଦି ତୁମେ ତାହାକୁ (ଜୀବିତ ଅବସ୍ଥାରେ) ସଂସ୍କୃତ କରି ବଧ କରିଛ (ତେବେ ତାହା ଅବୈଧ ନୁହେଁ) । (ସେହି ପଶୁର ଭୋଜନ ମଧ୍ୟ ନିଷିଦ୍ଧ) ଯାହାକୁ କୌଣସି ପୂଜା ବେଦିରେ ବଳି ଦିଆ ଯାଇଥାଏ ଏବଂ ତୀର ଦ୍ୱାରା ଭାଗ୍ୟନିର୍ଦ୍ଧାରଣ କରିବା ମଧ୍ୟ (ନିଷିଦ୍ଧ) । ଏଗୁଡ଼ିକ ସବୁ ପାପାଚାର । (୫/୩)

**୧୦୧. ଶତ୍ରୁ ପ୍ରତି ମଧ୍ୟ ଅନ୍ୟାୟ କର ନାହିଁ**

ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କ ପାଇଁ ସତ୍ୟରେ ଅଟଳ ରହି ନ୍ୟାୟପୂର୍ଣ୍ଣ ଭାବରେ ସାକ୍ଷ୍ୟ ଦିଅ ଏବଂ କୌଣସି ଗୋଷ୍ଠୀର ଶତ୍ରୁତା ତୁମମାନଙ୍କୁ ନ୍ୟାୟରୁ ବିଚ୍ୟୁତ ହେବାପାଇଁ ପ୍ରରୋଚିତ ନ କରୁ । (ସର୍ବଦା) ନ୍ୟାୟ କର । ଏହା ହେଉଛି ଧର୍ମପରାୟଣତା । ଅଲ୍ଲାହଙ୍କ ପ୍ରତି ଭୟ ରଖିଥାଅ । ଯାହାକିଛି ତୁମେମାନେ କର, ଅଲ୍ଲାହ୍ ତାହା ଅବଶ୍ୟ ଜାଣନ୍ତି । (୫/୮)

يَاَيُّهَا الَّذِيْنَ اٰمَنُوْا كُوْنُوْا قَوّٰمِيْنَ لِلّٰهِ
شُهَدَآءَ بِالْقِسْطِ وَلَا يَجْرِمَنَّكُمْ شَنَاٰنُ قَوْمٍ
عَلٰٓى اَلَّا تَعْدِلُوْا اِعْدِلُوْا هُوَ اَقْرَبُ لِلتَّقْوٰى وَ
اتَّقُوا اللّٰهَ اِنَّ اللّٰهَ خَبِيْرٌۢ بِمَا تَعْمَلُوْنَ ﴿٨﴾

**୧୦୨. ଈଶ୍ୱରବାଣୀକୁ ପ୍ରତ୍ୟାଖ୍ୟାନ କଲେ ନର୍କଦଣ୍ଡ**

ଯେଉଁମାନେ ବିଶ୍ୱାସ ରଖି ସତକର୍ମ କରନ୍ତି, ଅଲ୍ଲାହ୍ ପ୍ରତିଶ୍ରୁତି ଦେଇଛନ୍ତି ଯେ ସେମାନଙ୍କୁ ସେ କ୍ଷମା କରିଦେବେ ଏବଂ ସେମାନଙ୍କୁ ଭଲ ପୁରସ୍କାର ଦେବେ । ଯେଉଁମାନେ ଅବିଶ୍ୱାସ କଲେ ଏବଂ ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କଲେ, ସେମାନେ ନର୍କବାସୀ ହେବେ । (୫/୯-୧୦)

وَعَدَ اللّٰهُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ لَهُمْ
مَّغْفِرَةٌ وَّاَجْرٌ عَظِيْمٌ ﴿٩﴾ وَالَّذِيْنَ كَفَرُوْا وَكَذَّبُوْا
بِاٰيٰتِنَآ اُولٰٓئِكَ اَصْحٰبُ الْجَحِيْمِ ﴿١٠﴾

**୧୦୩. ଈଶ୍ୱରଦୂତ ପୂର୍ବଗ୍ରନ୍ଥଗୁଡ଼ିକର ଶିକ୍ଷା ଦିଅନ୍ତି**

ହେ ଗ୍ରନ୍ଥଧାରୀମାନେ ! ଆମ୍ଭର ବାର୍ତ୍ତାବହ (ମହାମାନ୍ୟ ମୁହମ୍ମଦ) ଅବଶ୍ୟ ତୁମ ପାଖକୁ ଆସି ସାରିଛନ୍ତି । ସେ (ପୂର୍ବ) ଦିବ୍ୟଗ୍ରନ୍ଥରେ ଥିବା ଅନେକ କଥା ତୁମ ନିକଟରେ ସ୍ପଷ୍ଟ ଭାବରେ ବର୍ଣ୍ଣନା କରୁଛନ୍ତି ଯାହା ତୁମେ ଲୁଚାଉଥିଲ । ଅନେକ କଥା ମଧ୍ୟ ସେ ଧରୁ ନାହାନ୍ତି । ତୁମମାନଙ୍କ ପାଖକୁ ଅଲ୍ଲାହଙ୍କ ନିକଟରୁ ଏକ ଜ୍ୟୋତି ତଥା ସ୍ପଷ୍ଟ ଗ୍ରନ୍ଥ ଆସି ସାରିଛି । (୫/୧୫)

يٰٓاَهْلَ الْكِتٰبِ قَدْ جَآءَكُمْ رَسُوْلُنَا يُبَيِّنُ
لَكُمْ كَثِيْرًا مِّمَّا كُنْتُمْ تُخْفُوْنَ مِنَ الْكِتٰبِ
وَيَعْفُوْا عَنْ كَثِيْرٍ قَدْ جَآءَكُمْ مِّنَ اللّٰهِ نُوْرٌ وَّ
كِتٰبٌ مُّبِيْنٌ ﴿١٥﴾

**୧୦୪. କେହି ଅଜ୍ଞତାର ବାହାନା କରିପାରିବ ନାହିଁ**

ହେ ଗ୍ରନ୍ଥଧାରୀମାନେ ! ଈଶ୍ୱରଦୂତମାନଙ୍କ ଆବିର୍ଭାବ କ୍ରମର ଏକ ବିରତି ପରେ, (ପ୍ରକୃତ) କଥାକୁ ସ୍ପଷ୍ଟ କରିଦେବା ପାଇଁ ତୁମମାନଙ୍କ ନିକଟକୁ ଆମ୍ଭର ଦୂତ (ମହାମାନ୍ୟ ମୁହମ୍ମଦ) ଆସି ଯାଇଛନ୍ତି ଯାହା ଫଳରେ ତୁମେମାନେ ଆଉ ଏହା କହିପାରିବ ନାହିଁ ଯେ ତୁମମାନଙ୍କୁ (ସ୍ୱର୍ଗ ବିଷୟରେ) ସୁସମ୍ବାଦ ଦେବାପାଇଁ ବା (ନର୍କ ବିଷୟରେ) ସତର୍କ କରିବା ପାଇଁ କେହି ଆସିଲେ ନାହିଁ । (୫/୧୯)

يٰٓاَهْلَ الْكِتٰبِ قَدْ جَآءَكُمْ رَسُوْلُنَا يُبَيِّنُ لَكُمْ
عَلٰى فَتْرَةٍ مِّنَ الرُّسُلِ اَنْ تَقُوْلُوْا مَا جَآءَنَا مِنْۢ
بَشِيْرٍ وَّلَا نَذِيْرٍ فَقَدْ جَآءَكُمْ بَشِيْرٌ وَّنَذِيْرٌ وَاللّٰهُ
عَلٰى كُلِّ شَيْءٍ قَدِيْرٌ ﴿١٩﴾

### ୧୦୫. ମାନବ ଜୀବନର ମୂଲ୍ୟ

ଏହି କାରଣରୁ ଆମ୍ଭେ ଇସ୍ରାଇଲଙ୍କ ବଂଶଜମାନଙ୍କୁ ଅନିବାର୍ଯ୍ୟ ଆଦେଶ ଦେଇଥିଲୁ ଯେ ଯଦି କେହି ଏଭଳି କୌଣସି ବ୍ୟକ୍ତିକୁ ହତ୍ୟା କରେ, ଯିଏ ନରହତ୍ୟା କରିନାହିଁ ବା ଭୂପୃଷ୍ଠରେ ବିଶୃଂଖଳା ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କରିଦେଲା, ଆଉ ଯିଏ ଜଣେ ବ୍ୟକ୍ତିକୁ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା। ଆମ୍ଭ ବାର୍ତ୍ତାବହମାନେ ସେମାନଙ୍କ ନିକଟକୁ ସ୍ପଷ୍ଟ ଆଦେଶ ନେଇ ଆସିଲେ, ତଥାପି ସେମାନଙ୍କ ମଧ୍ୟରୁ ଅଧିକାଂଶ ଧରାପୃଷ୍ଠରେ ଅନ୍ୟାୟ-ଅତ୍ୟାଚାର କରୁଛନ୍ତି।

(୫/୩୨)

مِنْ اَجْلِ ذٰلِكَ ۚ كَتَبْنَا عَلٰى بَنِیْٓ اِسْرَآءِیْلَ اَنَّهٗ
مَنْ قَتَلَ نَفْسًۢا بِغَیْرِ نَفْسٍ اَوْ فَسَادٍ فِی الْاَرْضِ
فَكَاَنَّمَا قَتَلَ النَّاسَ جَمِیْعًا ؕ وَ مَنْ اَحْیَاهَا
فَكَاَنَّمَاۤ اَحْیَا النَّاسَ جَمِیْعًا ؕ وَ لَقَدْ جَآءَتْهُمْ
رُسُلُنَا بِالْبَیِّنٰتِ ؗ ثُمَّ اِنَّ كَثِیْرًا مِّنْهُمْ بَعْدَ
ذٰلِكَ فِی الْاَرْضِ لَمُسْرِفُوْنَ ﴿۳۲﴾

### ୧୦୬. ପ୍ରଭୁଙ୍କ ସାନ୍ନିଧ ଲାଭ କରିବାର ବାଟ ଖୋଜ

ହେ ବିଶ୍ୱାସକାରୀମାନେ! ଅଲ୍ଲାହଙ୍କ ପ୍ରତି ଭୟ ରଖ ଏବଂ ତାଙ୍କ ସାନ୍ନିଧ ପାଇବାର ଉପାୟ ଖୋଜ ତଥା ତାଙ୍କ ମାର୍ଗରେ ସଂଘର୍ଷ କରୁଥାଅ, ସମ୍ଭବତଃ ତୁମେମାନେ ସଫଳ ହେବ। (୫/୩୫)

یٰۤاَیُّهَا الَّذِیْنَ اٰمَنُوا اتَّقُوا اللّٰهَ وَ ابْتَغُوْۤا اِلَیْهِ
الْوَسِیْلَةَ وَ جَاهِدُوْا فِیْ سَبِیْلِهٖ لَعَلَّكُمْ
تُفْلِحُوْنَ ﴿۳۵﴾

### ୧୦୭. ପୀଡ଼ିତର କ୍ଷମାଦାନ ତା' ପାପକ୍ଷୟ କରେ

ଆମ୍ଭେ ସେଥିରେ (ଅର୍ଥାତ୍ ବାଇବଲର ପୁରାତନ ନିୟମରେ) ସେମାନଙ୍କ ପାଇଁ ଆଦେଶ ଦେଇଥିଲୁ ଯେ ପ୍ରାଣ ବଦଳରେ ପ୍ରାଣ, ଆଖି ବଦଳରେ ଆଖି, ନାକ ବଦଳରେ ନାକ, କାନ ବଦଳରେ କାନ, ଦାନ୍ତ ବଦଳରେ ଦାନ୍ତ ଏବଂ କ୍ଷତ ପାଇଁ ଅନୁରୂପ କ୍ଷତର ପ୍ରତିବଦଳ ନିଆଯିବ। ହଁ, ଯଦି କେହି ପ୍ରତିବଦଳ ନ ନେଇ (ଦୋଷୀକୁ) କ୍ଷମା କରିଦିଏ ତେବେ ଏହା ତା' ନିଜର (ପାପ ପାଇଁ) ପ୍ରାୟଶ୍ଚିତ ହୋଇଯିବ। ଯେଉଁମାନେ ଅଲ୍ଲାହଙ୍କଠାରୁ ଆସିଥିବା ଆଦେଶ ଅନୁଯାୟୀ ନିଷ୍ପତ୍ତି ନକରନ୍ତି, ସେମାନେ ଦୁରାଚାରୀ। (୫/୪୫)

وَ كَتَبْنَا عَلَیْهِمْ فِیْهَاۤ اَنَّ النَّفْسَ بِالنَّفْسِ ۙ وَ
الْعَیْنَ بِالْعَیْنِ وَ الْاَنْفَ بِالْاَنْفِ وَ الْاُذُنَ بِالْاُذُنِ
وَ السِّنَّ بِالسِّنِّ ۙ وَ الْجُرُوْحَ قِصَاصٌ ؕ فَمَنْ تَصَدَّقَ
بِهٖ فَهُوَ كَفَّارَةٌ لَّهٗ ؕ وَ مَنْ لَّمْ یَحْكُمْ بِمَاۤ اَنْزَلَ اللّٰهُ
فَاُولٰٓىِٕكَ هُمُ الظّٰلِمُوْنَ ﴿۴۵﴾

### ୧୦୮. କୁରଆନ ପୂର୍ବଗ୍ରନ୍ଥଗୁଡ଼ିକର ସଂରକ୍ଷକ

(ହେ ମୁହମ୍ମଦ!) ଏହି ଗ୍ରନ୍ଥରେ ଆମ୍ଭେ ତୁମ ପ୍ରତି ସତ୍ୟ ପ୍ରକଟ କରିଛୁ ଯାହା ତୁମ ପୂର୍ବରୁ ଆସିଥିବା ଗ୍ରନ୍ଥଗୁଡ଼ିକର ପୁଷ୍ଟି କରେ ଏବଂ ସେଗୁଡ଼ିକର ବିଷୟବସ୍ତୁର ସଂରକ୍ଷଣ କରେ। ସୁତରାଂ,

وَ اَنْزَلْنَاۤ اِلَیْكَ الْكِتٰبَ بِالْحَقِّ مُصَدِّقًا لِّمَا بَیْنَ
یَدَیْهِ مِنَ الْكِتٰبِ وَ مُهَیْمِنًا عَلَیْهِ فَاحْكُمْ

بَيْنَهُمْ بِمَآ اَنْزَلَ اللّٰهُ وَ لَا تَتَّبِعْ اَهْوَآءَهُمْ عَمَّا
جَآءَكَ مِنَ الْحَقِّ

ଅଲ୍ଲାହ ପଠାଇଥିବା ଗ୍ରନ୍ଥ  ଅନୁଯାୟୀ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କର ଏବଂ ଯେଉଁ ସତ୍ୟ ତୁମ ନକଟରେ ପହଁଚି ସାରିଛି ତାକୁ ଛାଡ଼ି ସେମାନଙ୍କ ଇଚ୍ଛା ଅନୁସାରେ ଚାଲ ନାହିଁ । (୫/୪୮)

**୧୦୯. ଶାସ୍ତ୍ରଜ୍ଞମାନେ ଲୋକଙ୍କୁ ପାପରୁ ବିରତ ରଖନ୍ତୁ**

لَوْ لَا يَنْهٰهُمُ الرَّبّٰنِيُّوْنَ وَ الْاَحْبَارُ عَنْ قَوْلِهِمُ
الْاِثْمَ وَ اَكْلِهِمُ السُّحْتَ لَبِئْسَ مَا كَانُوْا
يَصْنَعُوْنَ ﴿٦٣﴾

ସେମାନଙ୍କୁ ସେମାନଙ୍କର ବିଦ୍ୱାନ ଓ ଶାସ୍ତ୍ରବିତମାନେ ପାପ କାର୍ଯ୍ୟରୁ ଏବଂ ଅବୈଧ ଉପାର୍ଜନରୁ କାହିଁକି ମନା କରୁନାହାନ୍ତି ? ବାସ୍ତବରେ ସେମାନେ ଅତି ହୀନ କର୍ମ କରୁଛନ୍ତି । (୫/୬୩)

**୧୧୦. ଗ୍ରନ୍ଥଧାରୀମାନେ କୁରଆନର ଉପଦେଶ ମାନନ୍ତୁ**

وَلَوْ اَنَّ اَهْلَ الْكِتٰبِ اٰمَنُوْا وَاتَّقَوْا لَكَفَّرْنَا
عَنْهُمْ سَيِّاٰتِهِمْ وَلَاَدْخَلْنٰهُمْ جَنّٰتِ النَّعِيْمِ ﴿٦٥﴾
وَلَوْ اَنَّهُمْ اَقَامُوا التَّوْرٰىةَ وَالْاِنْجِيْلَ وَمَآ اُنْزِلَ
اِلَيْهِمْ مِّنْ رَّبِّهِمْ لَاَكَلُوْا مِنْ فَوْقِهِمْ وَمِنْ تَحْتِ
اَرْجُلِهِمْ مِنْهُمْ اُمَّةٌ مُّقْتَصِدَةٌ وَكَثِيْرٌ مِّنْهُمْ
سَآءَ مَا يَعْمَلُوْنَ ﴿٦٦﴾

ଯଦି ଗ୍ରନ୍ଥଧାରୀମାନେ ବିଶ୍ୱାସ କରିନିଅନ୍ତେ ଏବଂ ସଦାଚାରୀ ହୁଅନ୍ତେ, ଆମ୍ଭେ ଅବଶ୍ୟ ସେମାନଙ୍କର ଦୋଷ ଦୂର କରିଦିଅନ୍ତୁ ଏବଂ ସେମାନଙ୍କୁ ସୁଖଭରା ଉଦ୍ୟାନରେ ସ୍ଥାନ ଦିଅନ୍ତୁ । ଯଦି ସେମାନେ ତୌରାତ୍ ଓ ଇଂଜିଲର  ଅନୁପାଳନ କରନ୍ତେ ଏବଂ ସେମାନଙ୍କ ପ୍ରଭୁଙ୍କ ଦ୍ୱାରା ସେମାନଙ୍କୁ ଏବେ ଯେଉଁ ଗ୍ରନ୍ଥ ଦିଆଯାଇଛି, ତାହାର ମଧ୍ୟ ଅନୁପାଳନ କରନ୍ତେ, ତା'ହେଲେ ସେମାନେ ସବୁ ପ୍ରକାରର ସୁଖସମୃଦ୍ଧି ଭୋଗ କରନ୍ତେ । ସେମାନଙ୍କ ମଧ୍ୟରୁ କେତେକ ସତପଥରେ ଅଛନ୍ତି, କିନ୍ତୁ ଅଧିକାଂଶ ଲୋକଙ୍କର ଆଚରଣ ଖରାପ । (୫/୬୫-୬୬)

**୧୧୧. ମାନବଜଗତକୁ କୁରଆନ ପହଁଚାଇଦିଅ**

يٰٓاَيُّهَا الرَّسُوْلُ بَلِّغْ مَآ اُنْزِلَ اِلَيْكَ مِنْ رَّبِّكَ وَاِنْ
لَّمْ تَفْعَلْ فَمَا بَلَّغْتَ رِسَالَتَهٗ وَاللّٰهُ يَعْصِمُكَ مِنَ
النَّاسِ اِنَّ اللّٰهَ لَا يَهْدِى الْقَوْمَ الْكٰفِرِيْنَ ﴿٦٧﴾

ହେ ଈଶ୍ୱରଦୂତ ! ତୁମ ଈଶ୍ୱରଙ୍କ ଠାରୁ ତୁମ ପ୍ରତି ଯାହା (ଦୈବବାଣୀ) ପ୍ରକଟ କରାଯାଇଛି, ତାହା (ମାନବସମାଜକୁ) ପହଁଚାଇ ଦିଅ । ଯଦି ତୁମେ ଏହା ନକର, ତେବେ (ଏହାର ଅର୍ଥ ହେବ) ତୁମେ ବାର୍ତ୍ତା ପହଁଚାଇବାରେ ବ୍ୟର୍ଥ ହେଲ । ଅଲ୍ଲାହ ତୁମକୁ ଲୋକଙ୍କଠାରୁ ରକ୍ଷା କରିବେ । ଅଲ୍ଲାହ ଅବଜ୍ଞାକାରୀମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ । (୫/୬୭)

**୧୧୨. କୁରଆନକୁ ଉପେକ୍ଷା କରନାହିଁ**

قُلْ يٰٓاَهْلَ الْكِتٰبِ لَسْتُمْ عَلٰى شَيْءٍ حَتّٰى تُقِيْمُوا
التَّوْرٰىةَ وَ الْاِنْجِيْلَ وَ مَآ اُنْزِلَ اِلَيْكُمْ مِّنْ
رَّبِّكُمْ

କହିଦିଅ, "ହେ ଗ୍ରନ୍ଥଧାରୀମାନେ ! ଯେପର୍ଯ୍ୟନ୍ତ ତୁମେମାନେ ତୌରାତ୍, ଇଂଜିଲ୍ ତଥା ତୁମ ନିକଟକୁ ତୁମ ପ୍ରଭୁଙ୍କ ଦ୍ୱାରା ଏବେ ପଠାଯାଇଥିବା ଗ୍ରନ୍ଥର (କୁରଆନର) ଅନୁପାଳନ ନ କରିଛ, ତୁମମାନଙ୍କର କୌଣସି ଆଧାର ହିଁ ନାହିଁ ।" (୫/୬୮)

### ୧୧୩. ମହାମାନ୍ୟ ଯିଶୁ ଜଣେ ଈଶ୍ୱରଦୂତ

ମରିୟମଙ୍କ ପୁତ୍ର ମସୀହ (ଯିଶୁ) ତ କେବଳ ଜଣେ ଈଶ୍ୱରଦୂତ ଥିଲେ। ତାଙ୍କ ପୂର୍ବରୁ ଅନେକ ଈଶ୍ୱରଦୂତ ଯାଇ ସାରିଛନ୍ତି। ତାଙ୍କର ମାଆ ଜଣେ ଧର୍ମପ୍ରାଣ ମହିଳା ଥିଲେ। ଦୁହେଁ (ମାଆ ପୁଅ) ଖାଦ୍ୟ ଖାଉଥିଲେ। ଦେଖତ! ଆମ୍ଭେ କିପରି ଏମାନଙ୍କ ପାଖରେ ପ୍ରମାଣଗୁଡ଼ିକୁ ସ୍ପଷ୍ଟ ରୂପେ ବର୍ଣ୍ଣନା କରୁଛୁ ଆଉ ଦେଖ, ଏମାନେ କେମିତି ଓଲଟା (ବାଟରେ) ଯାଉଛନ୍ତି। (୫/୭୫)

مَا الْمَسِيحُ ابْنُ مَرْيَمَ إِلَّا رَسُولٌ ۚ قَدْ خَلَتْ مِنْ
قَبْلِهِ الرُّسُلُ ۖ وَأُمُّهُ صِدِّيقَةٌ ۖ كَانَا يَأْكُلَانِ
الطَّعَامَ ۗ انْظُرْ كَيْفَ نُبَيِّنُ لَهُمُ الْآيَاتِ ثُمَّ انْظُرْ
أَنَّىٰ يُؤْفَكُونَ ﴿٧٥﴾

### ୧୧୪. ଅନ୍ୟ କେହି ତୁମର ହାନୀ-ଲାଭ କରିବାକୁ ସମର୍ଥ ନୁହେଁ

ତୁମେ ସେମାନଙ୍କୁ କୁହ, "କ'ଣ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଏଭଳି ବସ୍ତୁର ଉପାସନା କରିବ ଯାହା ତୁମର କୌଣସି ପ୍ରକାରର ଲାଭ ବା କ୍ଷତି କରିବାକୁ ସକ୍ଷମ ନୁହେଁ? ସର୍ବଶ୍ରୋତା ଏବଂ ସର୍ବଜ୍ଞ କେବଳ ଅଲ୍ଲାହ୍ ହିଁ ଅଟନ୍ତି।" (୫/୭୬)

قُلْ أَتَعْبُدُونَ مِنْ دُونِ اللَّهِ مَا لَا يَمْلِكُ لَكُمْ
ضَرًّا وَلَا نَفْعًا ۚ وَاللَّهُ هُوَ السَّمِيعُ الْعَلِيمُ ﴿٧٦﴾

### ୧୧୫. ବୈଧ ବସ୍ତୁକୁ ଅବୈଧ ଘୋଷଣା କରନାହିଁ

ହେ ସଦ୍‌ବିଶ୍ୱାସୀମାନେ! ଯେଉଁ ପବିତ୍ର ବସ୍ତୁଗୁଡ଼ିକୁ ଅଲ୍ଲାହ୍ ତୁମମାନଙ୍କ ପାଇଁ ବୈଧ କରିଛନ୍ତି, ସେଗୁଡ଼ିକୁ ଅବୈଧ ଘୋଷଣା କର ନାହିଁ ଏବଂ ସୀମାଲଂଘନ କର ନାହିଁ। ଅଲ୍ଲାହ୍ ସୀମାଲଂଘନକାରୀ ମାନଙ୍କୁ ପସନ୍ଦ କରନ୍ତି ନାହିଁ। (୫/୮୭)

يَا أَيُّهَا الَّذِينَ آمَنُوا لَا تُحَرِّمُوا طَيِّبَاتِ مَا أَحَلَّ
اللَّهُ لَكُمْ وَلَا تَعْتَدُوا ۚ إِنَّ اللَّهَ لَا يُحِبُّ
الْمُعْتَدِينَ ﴿٨٧﴾

### ୧୧୬. ବଚନ ଭଂଗ କଲେ ପ୍ରାୟଶ୍ଚିତ କର

ତୁମର ନିରର୍ଥକ ରାଣ-ନିୟମଗୁଡ଼ିକୁ ଅଲ୍ଲାହ୍ ଧରିବେ ନାହିଁ, କିନ୍ତୁ ସେ ତୁମକୁ ସେହି ରାଣ ପାଇଁ ଉତ୍ତରଦାୟୀ କରିବେ ଯାହାର ତୁମେ ସଂକଳ୍ପ କର। ସୁତରାଂ ଏହାର ପ୍ରାୟଶ୍ଚିତ ହେଉଛି ଦଶଜଣ ଗରିବ ଲୋକଙ୍କୁ ମଧ୍ୟମ ଧରଣର ଭୋଜନ ଦିଅ, ଯେମିତି ତୁମେମାନେ ନିଜ ପରିବାର ଲୋକଙ୍କୁ ଦେଇଥାଅ ବା ସେମାନଙ୍କୁ ବସ୍ତ୍ର ଦାନ କର ବା ଜଣେ କ୍ରୀତଦାସକୁ ମୁକ୍ତ କର। ଯାହାର ଏହି ସାମର୍ଥ୍ୟ ନଥିବ, ସେ ତିନିଦିନ ଉପବାସ ପାଳନ କରୁ। ବଚନ (ଭଂଗ କରିବା) ଯୋଗୁଁ ଏହା ତୁମମାନଙ୍କ ପାଇଁ ପ୍ରାୟଶ୍ଚିତ। ନିଜର ବଚନ ରକ୍ଷା କର। ଅଲ୍ଲାହ୍ ଏହିପରି ତୁମମାନଙ୍କ ପାଇଁ ନିଜର ଆଦେଶଗୁଡ଼ିକ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ କୃତଜ୍ଞ ହେବ। (୫/୮୯)

لَا يُؤَاخِذُكُمُ اللَّهُ بِاللَّغْوِ فِي أَيْمَانِكُمْ وَلَٰكِنْ
يُؤَاخِذُكُمْ بِمَا عَقَّدْتُمُ الْأَيْمَانَ ۖ فَكَفَّارَتُهُ
إِطْعَامُ عَشَرَةِ مَسَاكِينَ مِنْ أَوْسَطِ مَا تُطْعِمُونَ
أَهْلِيكُمْ أَوْ كِسْوَتُهُمْ أَوْ تَحْرِيرُ رَقَبَةٍ ۖ فَمَنْ لَمْ
يَجِدْ فَصِيَامُ ثَلَاثَةِ أَيَّامٍ ۚ ذَٰلِكَ كَفَّارَةُ أَيْمَانِكُمْ
إِذَا حَلَفْتُمْ ۚ وَاحْفَظُوا أَيْمَانَكُمْ ۚ كَذَٰلِكَ يُبَيِّنُ
اللَّهُ لَكُمْ آيَاتِهِ لَعَلَّكُمْ تَشْكُرُونَ ﴿٨٩﴾

**୧୧୭. ମଦ୍ୟପାନ ଓ ଜୁଆଖେଳ କୁତ୍ସିତ କର୍ମ**

ହେ ବିଶ୍ୱାସକାରୀମାନେ ! ମଦ, ଜୁଆ, ପୂଜାବେଦୀ ଏବଂ ପଶା – ଏସବୁ ଶଇତାନର ଦ୍ୱାରା ପ୍ରରୋଚିତ କୁତ୍ସିତ କର୍ମ । ସୁତରାଂ, ଏଗୁଡ଼ିକରୁ ନିବୃତ୍ତ ରୁହ, ତା'ହେଲେ ତୁମେମାନେ ସଫଳ ହେବ । (୫/୯୦)

يَٰٓأَيُّهَا ٱلَّذِينَ ءَامَنُوٓا۟ إِنَّمَا ٱلْخَمْرُ وَٱلْمَيْسِرُ وَ
ٱلْأَنصَابُ وَٱلْأَزْلَٰمُ رِجْسٌ مِّنْ عَمَلِ ٱلشَّيْطَٰنِ
فَٱجْتَنِبُوهُ لَعَلَّكُمْ تُفْلِحُونَ ۝٩٠

**୧୧୮. ମଦ ଓ ଜୁଆ ଈଶ୍ୱରଚିନ୍ତନରେ ବାଧା ଦିଏ**

ଶଇତାନ ତ ଚାହେଁ ଯେ ମଦ ଓ ଜୁଆ ଦ୍ୱାରା ତୁମମାନଙ୍କ ମଧ୍ୟରେ ଘୃଣା ଓ ବିଦ୍ୱେଷ ସୃଷ୍ଟି କରିବ ଏବଂ ଅଲ୍ଲାହଙ୍କ ଧ୍ୟାନଚିନ୍ତନରୁ ଏବଂ ନମାଜପାଠରୁ ତୁମମାନଙ୍କୁ ରୋକି ରଖିବ । ତଥାପି କ'ଣ ତୁମେମାନେ ଏଥିରୁ ବିରତ ହେବ ନାହିଁ ? (୫/୯୧)

إِنَّمَا يُرِيدُ ٱلشَّيْطَٰنُ أَن يُوقِعَ بَيْنَكُمُ ٱلْعَدَٰوَةَ وَ
ٱلْبَغْضَآءَ فِى ٱلْخَمْرِ وَٱلْمَيْسِرِ وَيَصُدَّكُمْ عَن ذِكْرِ
ٱللَّهِ وَعَنِ ٱلصَّلَوٰةِ ۖ فَهَلْ أَنتُم مُّنتَهُونَ ۝٩١

**୧୧୯. ଅବଜ୍ଞାକାରୀର ମାର୍ଗଦର୍ଶନ କରାଯାଏ ନାହିଁ**

ଅଲ୍ଲାହଙ୍କ ପ୍ରତି ଭୟ ରଖ ଆଉ (ତାଙ୍କ କଥା) ଶୁଣ, ଅଲ୍ଲାହ ଅବଜ୍ଞାକାରୀମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ । (୫/୧୦୮)

وَٱتَّقُوا۟ ٱللَّهَ وَٱسْمَعُوا۟ ۗ وَٱللَّهُ لَا يَهْدِى ٱلْقَوْمَ
ٱلْفَٰسِقِينَ ۝١٠٨

**୧୨୦. ଅଲ୍ଲାହ୍ ସର୍ବବ୍ୟାପୀ ଓ ସର୍ବଜ୍ଞ**

ସେଇ ଅଲ୍ଲାହ୍ ଆକାଶମଣ୍ଡଳରେ ଅଛନ୍ତି ଏବଂ ସେଇ ଭୂମଣ୍ଡଳରେ ମଧ୍ୟ । ସେ ତୁମମାନଙ୍କର ଗୁପ୍ତ ଓ ପ୍ରକାଶ୍ୟ ଅବସ୍ଥା ଜାଣନ୍ତି ଏବଂ ତୁମେ କରୁଥିବା କର୍ମ ବିଷୟରେ (ମଧ୍ୟ ) ଜାଣନ୍ତି । (୬/୩)

وَهُوَ ٱللَّهُ فِى ٱلسَّمَٰوَٰتِ وَفِى ٱلْأَرْضِ ۖ يَعْلَمُ سِرَّكُمْ
وَجَهْرَكُمْ وَيَعْلَمُ مَا تَكْسِبُونَ ۝٣

**୧୨୧. ଅଲ୍ଲାହ ହିଁ ଆହାରଦାତା ଓ ତ୍ରାଣକର୍ତ୍ତା**

(ହେ ବାର୍ତ୍ତାବହ !) କହିଦିଅ "କ'ଣ ପୃଥିବୀ ଓ ଅନ୍ତରୀକ୍ଷର ସ୍ରଷ୍ଟାଙ୍କୁ ଛାଡ଼ି ମୁଁ ଅନ୍ୟ କାହାରିକୁ ତ୍ରାଣକର୍ତ୍ତା ରୂପେ ଗ୍ରହଣ କରିବି ? ସେ (ସଭିଙ୍କୁ) ଆହାର ଦିଅନ୍ତି ମାତ୍ର ତାଙ୍କୁ କେହି ଆହାର ଦିଏ ନାହିଁ ।" (ଏହା ମଧ୍ୟ) କହିଦିଅ, "ମୋତେ ଆଜ୍ଞା ଦିଆଯାଇଛି ଯେ ମୁଁ ପ୍ରଥମେ ନିଜକୁ ସମର୍ପଣ କରିବି ।" (ହେ ଈଶ୍ୱରଦୂତ !) ତୁମେ ଆଦୌ ବହୁଈଶ୍ୱରବାଦୀ ହୁଅନାହିଁ । (୬/୧୪)

قُلْ أَغَيْرَ ٱللَّهِ أَتَّخِذُ وَلِيًّا فَاطِرِ ٱلسَّمَٰوَٰتِ وَٱلْأَرْضِ
وَهُوَ يُطْعِمُ وَلَا يُطْعَمُ ۗ قُلْ إِنِّىٓ أُمِرْتُ أَنْ أَكُونَ
أَوَّلَ مَنْ أَسْلَمَ ۖ وَلَا تَكُونَنَّ مِنَ ٱلْمُشْرِكِينَ ۝١٤

**୧୨୨. ସେ ହିଁ ଦୁଃଖହାରୀ**

ଯଦି ଅଲ୍ଲାହ୍ ତୁମକୁ କୌଣସି ଦୁଃଖ ଦିଅନ୍ତି, ତେବେ ତାଙ୍କ ବ୍ୟତୀତ କେହି ତାହା ଦୂର କରିପାରିବ ନାହିଁ ଏବଂ ଯଦି ସୁଖ ଦିଅନ୍ତି, ତେବେ ସେ (ଅବଶ୍ୟ) ସବୁକିଛି କରିପାରନ୍ତି । (୬/୧୭)

وَإِن يَمْسَسْكَ ٱللَّهُ بِضُرٍّ فَلَا كَاشِفَ لَهُۥٓ إِلَّا هُوَ ۖ وَ
إِن يَمْسَسْكَ بِخَيْرٍ فَهُوَ عَلَىٰ كُلِّ شَىْءٍ قَدِيرٌ ۝١٧

**୧୨୩. ଗ୍ରନ୍ଥଧାରୀମାନେ କୁରଆନକୁ ଚିହ୍ନି ପାରନ୍ତି**

ଯେଉଁମାନଙ୍କୁ ଆମ୍ଭେ ଗ୍ରନ୍ଥ ପ୍ରଦାନ କରିଛୁ, ସେମାନେ ଏହାକୁ ଏମିତି ଚିହ୍ନନ୍ତି ଯେମିତି ନିଜ ପୁତ୍ରମାନଙ୍କୁ ଚିହ୍ନନ୍ତି। ଯେଉଁମାନେ ନିଜ ଆତ୍ମାକୁ ନଷ୍ଟ କରି ସାରିଛନ୍ତି, ସେମାନେ ବିଶ୍ୱାସ କରିବେ ନାହିଁ। (୬/୨୦)

اَلَّذِيْنَ اٰتَيْنٰهُمُ الْكِتٰبَ يَعْرِفُوْنَهٗ كَمَا يَعْرِفُوْنَ اَبْنَآءَهُمْ ۘ اَلَّذِيْنَ خَسِرُوْٓا اَنْفُسَهُمْ فَهُمْ لَا يُؤْمِنُوْنَ ﴿٢٠﴾

**୧୨୪. ସଂସାରଭୋଗ କେବଳ ଖେଳ-ତାମସା**

ଏହି ପାର୍ଥିବ ଜୀବନ କେବଳ ଖେଳ-ତାମସା ବ୍ୟତୀତ ଆଉ କିଛି ନୁହେଁ। ଧର୍ମପରାୟଣ ଲୋକଙ୍କ ପାଇଁ ପରଲୋକର ଘର ଯଥେଷ୍ଟ ଭଲ। କ'ଣ ତୁମେମାନେ ଏହା ବୁଝିବ ନାହିଁ? (୬/୩୨)

وَمَا الْحَيٰوةُ الدُّنْيَآ اِلَّا لَعِبٌ وَّلَهْوٌ ؕ وَلَلدَّارُ الْاٰخِرَةُ خَيْرٌ لِّلَّذِيْنَ يَتَّقُوْنَ ؕ اَفَلَا تَعْقِلُوْنَ ﴿٣٢﴾

**୧୨୫. ମହାମାନ୍ୟ ମୁହମ୍ମଦ ଅଦୃଷ୍ଟର ଜ୍ଞାତା ନୁହନ୍ତି**

(ତୁମେ ସେମାନଙ୍କୁ) କୁହ, "ମୁଁ ତୁମମାନଙ୍କୁ ଏହା କହୁନାହିଁ ଯେ ମୋ' ପାଖରେ ଅଲ୍ଲାହଙ୍କର ଭଣ୍ଡାର ଅଛି କିମ୍ବା ମୁଁ ଅଦୃଷ୍ଟ କଥା ଜାଣେ, କିମ୍ବା ମୁଁ ଏହା ମଧ୍ୟ କହୁନାହିଁ ଯେ ମୁଁ ଜଣେ ଦେବତା। ମୁଁ ତ କେବଳ ନିଜ ପ୍ରତି ହେଉଥିବା ଦୈବବାଣୀର ଅନୁପାଳନ କରିଥାଏ।" କହିଦିଅ, "କ'ଣ ଆଖି ଥିବା ଏବଂ ଆଖି ନଥିବା ବ୍ୟକ୍ତି ସମାନ ହୋଇପାରନ୍ତି? ତେବେ କ'ଣ ତୁମେମାନେ ଏହା ବିଚାର କରିବ ନାହିଁ?'' (୬/୫୦)

قُلْ لَّآ اَقُوْلُ لَكُمْ عِنْدِيْ خَزَآئِنُ اللّٰهِ وَلَآ اَعْلَمُ الْغَيْبَ وَلَآ اَقُوْلُ لَكُمْ اِنِّيْ مَلَكٌ ۚ اِنْ اَتَّبِعُ اِلَّا مَا يُوْحٰٓى اِلَيَّ ؕ قُلْ هَلْ يَسْتَوِى الْاَعْمٰى وَالْبَصِيْرُ ؕ اَفَلَا تَتَفَكَّرُوْنَ ﴿٥٠﴾

**୧୨୬. କୁରଆନ ଦ୍ୱାରା ଲୋକଙ୍କୁ ସାବଧାନ କର**

(କୁରଆନର) ଏହି ବାଣୀ ଦ୍ୱାରା ଏଭଳି ଲୋକମାନଙ୍କୁ ସାବଧାନ କର ଯେଉଁମାନେ ଭୟ କରନ୍ତି ଯେ, (ଦିନେ) ସେମାନେ ଏଭଳି ଅବସ୍ଥାରେ ନିଜ ପରମେଶ୍ୱରଙ୍କ ନିକଟରେ ଉପସ୍ଥିତ ହେବେ ଯେ ସେତେବେଳେ ତାଙ୍କ ବ୍ୟତୀତ ଅନ୍ୟ କେହି ସେମାନଙ୍କର ସାହାଯ୍ୟକାରୀ ବା ସୁପାରିଶକାରୀ ନଥିବ। ସମ୍ଭବତଃ ଏହାଦ୍ୱାରା ସେମାନେ ଧର୍ମନିଷ୍ଠ ହେବେ। (୬/୫୧)

وَاَنْذِرْ بِهِ الَّذِيْنَ يَخَافُوْنَ اَنْ يُّحْشَرُوْٓا اِلٰى رَبِّهِمْ لَيْسَ لَهُمْ مِّنْ دُوْنِهٖ وَلِيٌّ وَّلَا شَفِيْعٌ لَّعَلَّهُمْ يَتَّقُوْنَ ﴿٥١﴾

**୧୨୭. ଅଲ୍ଲାହ୍ ହିଁ ଅଦୃଷ୍ଟ କଥା ଜାଣନ୍ତି**

କେବଳ ତାଙ୍କରି ପାଖରେ ଅଛି ଅଦୃଷ୍ଟର ଚାବିକାଠି, ଯାହା ବିଷୟରେ ତାଙ୍କ ବ୍ୟତୀତ ଅନ୍ୟ କେହି ଜାଣନ୍ତି ନାହିଁ। ଜଳ ଓ ସ୍ଥଳରେ ଯାହାକିଛି ଅଛି ତାହା ସେ ଜାଣନ୍ତି। ତାଙ୍କ ଅଜ୍ଞାତସାରରେ (ଗଛରୁ) ପତ୍ରଟିଏ ମଧ୍ୟ ଝଡେ ନାହିଁ। ଧରିତ୍ରୀର ଅନ୍ଧକାର (ଗର୍ଭ)

وَعِنْدَهٗ مَفَاتِحُ الْغَيْبِ لَا يَعْلَمُهَآ اِلَّا هُوَ ؕ وَيَعْلَمُ مَا فِى الْبَرِّ وَالْبَحْرِ ؕ وَمَا تَسْقُطُ مِنْ وَّرَقَةٍ اِلَّا يَعْلَمُهَا وَلَا حَبَّةٍ فِيْ ظُلُمٰتِ الْاَرْضِ وَلَا

رَطْبٍ وَّلَا يَابِسٍ اِلَّا فِيْ كِتٰبٍ مُّبِيْنٍ ﴿٥٩﴾

ମଧ୍ୟରେ ପଡୁଥିବା ବୀଜଟିଏ ହେଉ କିମ୍ବା କୌଣସି ଶୁଷ୍କ ବା ଆର୍ଦ୍ର ବସ୍ତୁଟିଏ ହେଉ, ସବୁକଥା (ଏକ ସଂରକ୍ଷିତ ଗ୍ରନ୍ଥରେ) ପରିଷ୍କାର ଭାବରେ ଲେଖା ହୋଇ ରହିଛି । (୬/୫୯)

### ୧୨୮. ସେ ରାତିରେ ଆତ୍ମାକୁ ହରଣ କରି ନିଅନ୍ତି

وَهُوَ الَّذِيْ يَتَوَفّٰىكُمْ بِالَّيْلِ وَيَعْلَمُ مَا جَرَحْتُمْ بِالنَّهَارِ ثُمَّ يَبْعَثُكُمْ فِيْهِ لِيُقْضٰٓى اَجَلٌ مُّسَمًّى ثُمَّ اِلَيْهِ مَرْجِعُكُمْ ثُمَّ يُنَبِّئُكُمْ بِمَا كُنْتُمْ تَعْمَلُوْنَ ﴿٦٠﴾

ସେ ହିଁ ରାତିରେ ତୁମମାନଙ୍କର ଆତ୍ମାକୁ ହରଣ କରି ନିଅନ୍ତି ଏବଂ ଦିନରେ ତୁମେମାନେ କରିଥିବା କର୍ମଗୁଡ଼ିକୁ ଜାଣନ୍ତି, ପୁଣି ନିର୍ଦ୍ଧାରିତ (ଆୟୁଷ) କାଳ ପୂରିବା ପର୍ଯ୍ୟନ୍ତ (ପ୍ରତିଦିନ) ତୁମମାନଙ୍କୁ (ନିଦରୁ) ଉଠାଇ ଦିଅନ୍ତି । ପରିଶେଷରେ ତାଙ୍କରି ନିକଟକୁ ତୁମେମାନେ ଫେରିଯିବ । ପୁଣି ଯାହାସବୁ ତୁମେମାନେ କରୁଥିଲ, ତାହା ସେ ଜଣାଇ ଦେବେ । (୬/୬୦)

### ୧୨୯. ଅଲ୍ଲାହ୍ ହିଁ ସଂକଟହାରୀ

قُلْ مَنْ يُّنَجِّيْكُمْ مِّنْ ظُلُمٰتِ الْبَرِّ وَالْبَحْرِ تَدْعُوْنَهٗ تَضَرُّعًا وَّخُفْيَةً ۚ لَئِنْ اَنْجٰنَا مِنْ هٰذِهٖ لَنَكُوْنَنَّ مِنَ الشّٰكِرِيْنَ ﴿٦٣﴾ قُلِ اللّٰهُ يُنَجِّيْكُمْ مِّنْهَا وَمِنْ كُلِّ كَرْبٍ ثُمَّ اَنْتُمْ تُشْرِكُوْنَ ﴿٦٤﴾

ତୁମେ (ସେମାନଙ୍କୁ) ପଚାର, "ଜଂଗଲ ଓ ସମୁଦ୍ରର ଅନ୍ଧକାରରୁ ତୁମମାନଙ୍କୁ କିଏ ଉଦ୍ଧାର କରେ ଯେତେବେଳେ ତୁମେମାନେ ଆକୁଳ ହୋଇ ମନେମନେ ତାଙ୍କୁ ଡାକ ଯେ ଯଦି ସେ ତୁମମାନଙ୍କୁ ସେହି ବିପଦରୁ ଉଦ୍ଧାର କରିଦିଅନ୍ତି, ତେବେ ତୁମେମାନେ ନିଶ୍ଚୟ ତାଙ୍କ ପ୍ରତି କୃତଜ୍ଞ ହେବ ?" କହିଦିଅ, "ଅଲ୍ଲାହ୍ ହିଁ ତୁମମାନଙ୍କୁ ସେହି ବିପଦ ତଥା ଅନ୍ୟ ସମସ୍ତ ବିପଦ-ଆପଦରୁ ଉଦ୍ଧାର କରିଥାଆନ୍ତି । ତଥାପି, ତୁମେମାନେ ଅନ୍ୟମାନଙ୍କୁ ତାଙ୍କର ସମକକ୍ଷ କରିଦିଅ ।" (୬/୬୩-୬୪)

### ୧୩୦. କୁରଆନ ଦ୍ୱାରା ଉପଦେଶ ଦେଉଥାଅ

وَذَرِ الَّذِيْنَ اتَّخَذُوْا دِيْنَهُمْ لَعِبًا وَّلَهْوًا وَّغَرَّتْهُمُ الْحَيٰوةُ الدُّنْيَا وَذَكِّرْ بِهٖٓ اَنْ تُبْسَلَ نَفْسٌۢ بِمَا كَسَبَتْ ۖ لَيْسَ لَهَا مِنْ دُوْنِ اللّٰهِ وَلِيٌّ وَّلَا شَفِيْعٌ ۚ وَاِنْ تَعْدِلْ كُلَّ عَدْلٍ لَّا يُؤْخَذْ مِنْهَا ؕ اُولٰٓئِكَ الَّذِيْنَ اُبْسِلُوْا بِمَا كَسَبُوْا ۚ لَهُمْ شَرَابٌ مِّنْ حَمِيْمٍ وَّعَذَابٌ اَلِيْمٌۢ بِمَا كَانُوْا يَكْفُرُوْنَ ﴿٧٠﴾

ଯେଉଁମାନେ ନିଜ ଧର୍ମକୁ ଖେଳ-ତାମସା ମନେ କରିଛନ୍ତି ଆଉ ପାର୍ଥିବ ଜୀବନ ଯେଉଁମାନଙ୍କୁ ମାୟାଗ୍ରସ୍ତ କରି ଦେଇଛି, ସେମାନଙ୍କୁ ଛାଡ଼ିଦିଅ । ହଁ, କୁରଆନ ଦ୍ୱାରା ଉପଦେଶ ଦେଉଥାଅ, ଯେମିତି କୈଣସି ବ୍ୟକ୍ତି ନିଜର କୃତକର୍ମ ଯୋଗୁଁ ଏଭଳି ବିପଦରେ ନପଡୁ ଯେ ତା'ପାଇଁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ତ୍ରାଣକର୍ତ୍ତା ବା ସୁପାରିଶକର୍ତ୍ତା ମିଳିବେ ନାହିଁ ଏବଂ (ନିଜର ମୁକ୍ତି) ବିନିମୟରେ ସେ ଯାହା ଦେଲେ ମଧ୍ୟ ତାହା ସ୍ୱୀକାର କରାଯିବ ନାହିଁ । ଏଭଳି ଲୋକମାନେ ନିଜ କୃତକର୍ମର ପରିଣାମ ଭୋଗିବେ । ସେମାନଙ୍କ ପିଇବା ପାଇଁ ଅଛି (ନର୍କର) ଫୁଟନ୍ତା ପାଣି ଏବଂ ଅମାନ୍ୟ କରିବାର ଫଳ ସ୍ୱରୂପ ଅଛି କଠୋର ଶାସ୍ତି । (୬/୭୦)

### ୧୩୧. ନିଜର ଭଗବତ୍-ଧାରଣାକୁ ବିଶୁଦ୍ଧ କର

ଯେଉଁମାନେ (ବିଶୁଦ୍ଧ ଏକେଶ୍ୱରବାଦରେ) ବିଶ୍ୱାସ କରିଛନ୍ତି ଏବଂ ନିଜ ବିଶ୍ୱାସ ସହ (ଅସତ୍ୟ ବା) ଅନ୍ୟାୟକୁ ମିଶାଇ ନାହାନ୍ତି, ସେଇମାନେ ନିରାପଦରେ ତଥା ସତପଥରେ ଅଛନ୍ତି । (୬/୮୨)

الَّذِيْنَ اٰمَنُوْا وَ لَمْ يَلْبِسُوْٓا اِيْمَانَهُمْ بِظُلْمٍ
اُولٰٓئِكَ لَهُمُ الْاَمْنُ وَهُمْ مُّهْتَدُوْنَ ﴿٨٢﴾

### ୧୩୨. ଅଲ୍ଲାହ୍ କିଏ ?

ଅଲ୍ଲାହ୍ ହିଁ ବୀଜ ଓ ଟାକୁଆକୁ ଅଂକୁରିତ କରନ୍ତି । ସେ ନିର୍ଜୀବରୁ ସଜୀବ ଏବଂ ସଜୀବରୁ ନିର୍ଜୀବକୁ ଉତ୍ପନ୍ନ କରନ୍ତି । ସେଇ ହିଁ ତୁମମାନଙ୍କର ଅଲ୍ଲାହ୍ । ପୁଣି ତୁମେମାନେ କୁଆଡ଼େ ବାଟବଣା ହୋଇଯାଉଛ ? ସେ ହିଁ (ରାତିର ଅନ୍ଧକାରକୁ ବିଦୀର୍ଣ୍ଣ କରି) ପ୍ରଭାତକୁ ପ୍ରକାଶ କରନ୍ତି ଏବଂ ରାତିକୁ ବିଶ୍ରାମ ପାଇଁ ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ଗଣନାର ମାଧ୍ୟମ କରିଛନ୍ତି । ଏସବୁ ତାଙ୍କରି ଦ୍ୱାରା ନିରୂପିତ ଯିଏ ପ୍ରବଳ ପରାକ୍ରମୀ ତଥା ସର୍ବଜ୍ଞାତା ଅଟନ୍ତି । ସେ ହିଁ ତୁମ ପାଇଁ ନକ୍ଷତ୍ର ସୃଷ୍ଟି କରିଛନ୍ତି ଯାହାଦ୍ୱାରା ତୁମେମାନେ ଜଳ ଓ ସ୍ଥଳର ଘନ ଅନ୍ଧକାର ମଧ୍ୟରେ ରାସ୍ତା ଜାଣିପାରିବ । ଜ୍ଞାନୀଜନଙ୍କ ପାଇଁ ଆମ୍ଭେ ନିଦର୍ଶନଗୁଡିକୁ ଖୁବ ପରିଷ୍କାର ଭାବରେ ବର୍ଣ୍ଣନା କରି ଦେଇଛୁ । ସେ ହିଁ ତୁମମାନଙ୍କୁ ଜଣେ ମାନବରୁ ସୃଷ୍ଟି କରିଛନ୍ତି ଏବଂ ପ୍ରତ୍ୟେକ ବ୍ୟକ୍ତି ପାଇଁ ଗୋଟିଏ ଅସ୍ଥାୟୀ ଓ ଗୋଟିଏ ସ୍ଥାୟୀ ବାସସ୍ଥାନ ନିରୂପଣ କରିଛନ୍ତି । ବୁଦ୍ଧିମାନମାନଙ୍କ ପାଇଁ ଆମ୍ଭେ ନିଦର୍ଶନଗୁଡିକୁ ଖୁବ ପରିଷ୍କାର ଭାବରେ ବର୍ଣ୍ଣନା କରି ଦେଇଛୁ । ସେଇ ହିଁ ଆକାଶରୁ ଜଳବର୍ଷା କରନ୍ତି । ପୁଣି (ଲକ୍ଷ୍ୟ କର କିପରି) ଆମ୍ଭେ ତାହାଦ୍ୱାରା ବିଭିନ୍ନ ପ୍ରକାରର ଉଦ୍ଭିଦଗୁଡିକର ଅଂକୁରୋଦ୍ଗମ କରାଉ । ପୁଣି ସେଥିରୁ ସବୁଜ କ୍ଷେତମାନ ଉତ୍ପନ୍ନ କରୁ, ଯହିଁରୁ ଆମ୍ଭେ ସ୍ତର ସ୍ତର ସଜ୍ଜିତ ଦାନା ବାହାର କରୁ ଏବଂ ଖଜୁରୀ ଗଛର ମୁକୁଳରୁ ଗୁଚ୍ଛ ଗୁଚ୍ଛ ଫଳ ଉତ୍ପନ୍ନ କରୁ, ଯାହା ଫଳ ଭାରରେ ନଇଁ ପଡେ । ତା' ଛଡ଼ା, ଆମ୍ଭେ ଅଂଗୁର, ଜଳପାଇ ଏବଂ ଡାଳିମ୍ବ ବଗିଚା ସୃଷ୍ଟି କରିଅଛୁ, ଯାହାର ଫଳଗୁଡିକ (ଜାତିରେ) ପରସ୍ପର ସଦୃଶ, ମାତ୍ର (ବିଶେଷତ୍ୱରେ) ଭିନ୍ନ ଭିନ୍ନ । ଫଳ ଧାରଣ କରିବା ବେଳେ ପ୍ରତ୍ୟେକ ଫଳକୁ ଲକ୍ଷ୍ୟକର ଏବଂ ତା' ପକ୍ୱତାକୁ ଲକ୍ଷ୍ୟ କର । (ଅଲ୍ଲାହଙ୍କୁ)) ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ରହିଛି । (୬/୯୫-୯୯)

اِنَّ اللّٰهَ فَالِقُ الْحَبِّ وَ النَّوٰى ؕ يُخْرِجُ الْحَيَّ مِنَ
الْمَيِّتِ وَ مُخْرِجُ الْمَيِّتِ مِنَ الْحَيِّ ؕ ذٰلِكُمُ اللّٰهُ
فَاَنّٰى تُؤْفَكُوْنَ ﴿٩٥﴾ فَالِقُ الْاِصْبَاحِ ۚ وَجَعَلَ الَّيْلَ
سَكَنًا وَّ الشَّمْسَ وَالْقَمَرَ حُسْبَانًا ؕ ذٰلِكَ تَقْدِيْرُ
الْعَزِيْزِ الْعَلِيْمِ ﴿٩٦﴾ وَ هُوَ الَّذِيْ جَعَلَ لَكُمُ النُّجُوْمَ
لِتَهْتَدُوْا بِهَا فِيْ ظُلُمٰتِ الْبَرِّ وَ الْبَحْرِ ؕ قَدْ فَصَّلْنَا
الْاٰيٰتِ لِقَوْمٍ يَّعْلَمُوْنَ ﴿٩٧﴾ وَ هُوَ الَّذِيْٓ اَنْشَاَكُمْ
مِّنْ نَّفْسٍ وَّاحِدَةٍ فَمُسْتَقَرٌّ وَّ مُسْتَوْدَعٌ ؕ قَدْ
فَصَّلْنَا الْاٰيٰتِ لِقَوْمٍ يَّفْقَهُوْنَ ﴿٩٨﴾
وَ هُوَ الَّذِيْٓ اَنْزَلَ مِنَ السَّمَآءِ مَآءً ۚ فَاَخْرَجْنَا
بِهٖ نَبَاتَ كُلِّ شَيْءٍ فَاَخْرَجْنَا مِنْهُ خَضِرًا نُّخْرِجُ
مِنْهُ حَبًّا مُّتَرَاكِبًا ۚ وَ مِنَ النَّخْلِ مِنْ
طَلْعِهَا قِنْوَانٌ دَانِيَةٌ وَّ جَنّٰتٍ مِّنْ اَعْنَابٍ وَّ
الزَّيْتُوْنَ وَ الرُّمَّانَ مُشْتَبِهًا وَّ غَيْرَ مُتَشَابِهٍ ؕ
اُنْظُرُوْٓا اِلٰى ثَمَرِهٖٓ اِذَآ اَثْمَرَ وَ يَنْعِهٖ ؕ اِنَّ فِيْ ذٰلِكُمْ
لَاٰيٰتٍ لِّقَوْمٍ يُّؤْمِنُوْنَ ﴿٩٩﴾

**୧୩୩. ଈଶ୍ୱରଙ୍କ ପତ୍ନୀ ବା ସନ୍ତାନ ନାହାନ୍ତି**

ସେ ଧରିତ୍ରୀ ଓ ଆକାଶମଣ୍ଡଳର ସ୍ରଷ୍ଟା । ତାଙ୍କର ତ ପତ୍ନୀ ନାହିଁ, ପୁଣି ସନ୍ତାନ କୁଆଡ଼ୁ ଆସିବ ? ସେ ହିଁ ସକଳ ବସ୍ତୁ ସୃଷ୍ଟି କରିଛନ୍ତି ଏବଂ ସେ ସବୁ ଜାଣନ୍ତି । ସେଇ ହେଉଛନ୍ତି ତୁମ ପ୍ରଭୁ ଅଲ୍ଲାହ୍ । ତାଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି । ସେ ସକଳ ବସ୍ତୁର ସ୍ରଷ୍ଟା, ସୁତରାଂ ତାଙ୍କରି ଉପାସନା କର । ସେ ହିଁ (ତୁମମାନଙ୍କର) ସକଳ କାର୍ଯ୍ୟସିଦ୍ଧି କରନ୍ତି । (୬/୧୦୧-୧୦୨)

بَدِيۡعُ السَّمٰوٰتِ وَالۡاَرۡضِ ؕ اَنّٰى يَكُوۡنُ لَهٗ وَلَدٌ وَّ
لَمۡ تَكُنۡ لَّهٗ صَاحِبَةٌ ؕ وَخَلَقَ كُلَّ شَىۡءٍ ۚ وَهُوَ
بِكُلِّ شَىۡءٍ عَلِيۡمٌ ﴿۱۰۱﴾ ذٰلِكُمُ اللّٰهُ رَبُّكُمۡ ۚ لَاۤ اِلٰهَ
اِلَّا هُوَ ۚ خَالِقُ كُلِّ شَىۡءٍ فَاعۡبُدُوۡهُ ۚ وَهُوَ عَلٰى
كُلِّ شَىۡءٍ وَّكِيۡلٌ ﴿۱۰۲﴾

**୧୩୪. ଈଶ୍ୱର ଦୃଶ୍ୟମାନ ନୁହନ୍ତି**

ଆଖି ତାଙ୍କ ପାଖରେ ପହଁଚି ପାରେନାହିଁ କିନ୍ତୁ ସେ ଆଖି ପାଖରେ ପହଁଚି ପାରନ୍ତି । ସେ ସୂକ୍ଷ୍ମଦର୍ଶୀ ଓ ସର୍ବଜ୍ଞାତା । (୬/୧୦୩)

لَا تُدۡرِكُهُ الۡاَبۡصَارُ وَهُوَ يُدۡرِكُ الۡاَبۡصَارَ ۚ وَهُوَ
اللَّطِيۡفُ الۡخَبِيۡرُ ﴿۱۰۳﴾

**୧୩୫. କାହାରି ଉପାସ୍ୟର ଅପମାନ କର ନାହିଁ**

ଅଲ୍ଲାହଙ୍କୁ ଛାଡ଼ି ସେମାନେ ଯେଉଁମାନଙ୍କୁ ଡାକନ୍ତି, ସେମାନଙ୍କର ଅପମାନ କରନାହିଁ, ନହେଲେ ସେମାନେ ସୀମା ଲଂଘନ କରି ଅଜ୍ଞାନବଶତଃ ଅଲ୍ଲାହଙ୍କର ଅପମାନ କରିବେ । (୬/୧୦୮)

وَلَا تَسُبُّوا الَّذِيۡنَ يَدۡعُوۡنَ مِنۡ دُوۡنِ اللّٰهِ
فَيَسُبُّوا اللّٰهَ عَدۡوًاۢ بِغَيۡرِ عِلۡمٍ ؕ

**୧୩୬. କୁରଆନରେ ପରିବର୍ତ୍ତନ ସମ୍ଭବ ନୁହେଁ**

ତୁମ ପ୍ରଭୁଙ୍କର (ଏହି) ବାଣୀ ସତ୍ୟ ଓ ନ୍ୟାୟରେ ପୂର୍ଣ୍ଣତା ଲାଭ କରିଛି । ତାଙ୍କ ବାଣୀକୁ କେହି ପରିବର୍ତ୍ତନ କରିପାରିବ ନାହିଁ । ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞାତା । (୬/୧୧୫)

وَتَمَّتۡ كَلِمَتُ رَبِّكَ صِدۡقًا وَّعَدۡلًا ؕ
لَا مُبَدِّلَ لِكَلِمٰتِهٖ ۚ وَهُوَ السَّمِيۡعُ الۡعَلِيۡمُ ﴿۱۱۵﴾

**୧୩୭. ଅଧିକାଂଶ ଲୋକ ଅନୁମାନ ପଛରେ ଚାଲନ୍ତି**

ପୃଥିବୀରେ ଏପରି ଅଧିକାଂଶ ଲୋକ ଅଛନ୍ତି, ଯଦି ତୁମେ ସେମାନଙ୍କ କଥା ମାନିବ, ତେବେ ସେମାନେ ତୁମକୁ ଅଲ୍ଲାହଙ୍କ ମାର୍ଗରୁ ବିଚ୍ୟୁତ କରିଦେବେ । ସେମାନେ ତୁଚ୍ଛା ଅଟକଳ ପଛରେ ଚାଲନ୍ତି ଆଉ କେବଳ ଅନୁମାନ କରନ୍ତି । (୬/୧୧୬)

وَاِنۡ تُطِعۡ اَكۡثَرَ مَنۡ فِى الۡاَرۡضِ يُضِلُّوۡكَ عَنۡ
سَبِيۡلِ اللّٰهِ ؕ اِنۡ يَّتَّبِعُوۡنَ اِلَّا الظَّنَّ وَاِنۡ هُمۡ اِلَّا
يَخۡرُصُوۡنَ ﴿۱۱۶﴾

**୧୩୮. ପ୍ରକାଶ୍ୟ ପାପ ଓ ଗୁପ୍ତ ପାପରୁ ବିରତ ରୁହ**

ପ୍ରକାଶ୍ୟ ପାପରୁ ବିରତ ରୁହ ଏବଂ ଗୁପ୍ତ ପାପରୁ ମଧ୍ୟ । ଯେଉଁମାନେ ପାପ ଅର୍ଜନ କରୁଛନ୍ତି, ସେମାନଙ୍କୁ ଅବଶ୍ୟ ଖୁବ ଶୀଘ୍ର ସେମାନଙ୍କ କୃତକର୍ମର ପ୍ରତିଫଳ ମିଳଯିବ । (୬/୧୨୦)

وَذَرُوۡا ظَاهِرَ الۡاِثۡمِ وَبَاطِنَهٗ ؕ اِنَّ الَّذِيۡنَ يَكۡسِبُوۡنَ
الۡاِثۡمَ سَيُجۡزَوۡنَ بِمَا كَانُوۡا يَقۡتَرِفُوۡنَ ﴿۱۲۰﴾

### ୧୩୯. ଅସଂସ୍କୃତ ମାଂସ ଖାଅ ନାହିଁ

ଯେଉଁ ପଶୁକୁ (ମନ୍ତ୍ର ଦ୍ୱାରା) ଅଲ୍ଲାହଙ୍କ ନାମରେ ସଂସ୍କୃତ କରାଯାଇ ନଥାଏ, ତାହାର ମାଂସ ଖାଅ ନାହିଁ। ନିଶ୍ଚିତ ରୂପେ ଏହା ଏକ ପାପାଚାର। (୬/୧୨୧)

وَ لَا تَأْكُلُوْا مِمَّا لَمْ يُذْكَرِ اسْمُ اللّٰهِ عَلَيْهِ وَ اِنَّهٗ لَفِسْقٌ ؕ

### ୧୪୦. ନିଜ ସନ୍ତାନର ହତ୍ୟା ମହାପାପ

ଯେଉଁମାନେ ଅଜ୍ଞାନତା ଓ ନିର୍ବୋଧତା ଯୋଗୁଁ ନିଜ ସନ୍ତାନକୁ ହତ୍ୟା କଲେ ଏବଂ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼ି ତାଙ୍କ ପ୍ରଦତ୍ତ ଆହାରକୁ ଅବୈଧ କଲେ, ସେମାନେ ସର୍ବସ୍ୱାନ୍ତ ହେଲେ। ଏମାନେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ଏବଂ ସତପଥରେ ନାହାନ୍ତି। (୬/୧୪୦)

قَدْ خَسِرَ الَّذِيْنَ قَتَلُوْۤا اَوْلَادَهُمْ سَفَهًۢا بِغَيْرِ عِلْمٍ وَّ حَرَّمُوْا مَا رَزَقَهُمُ اللّٰهُ افْتِرَآءً عَلَى اللّٰهِ ؕ قَدْ ضَلُّوْا وَ مَا كَانُوْا مُهْتَدِيْنَ ﴿۱۴۰﴾

### ୧୪୧. ଆମଦାନୀର ଗୋଟିଏ ଭାଗ ଦାନ କର

ସେ ହିଁ ସୃଷ୍ଟି କରିଛନ୍ତି ମଂଚା-ଆଶ୍ରିତ ଓ ମଂଚାବିହୀନ ଉଦ୍ୟାନ ଏବଂ ଖଜୁରୀ ଗଛ ଓ କ୍ଷେତରୁ ଉତ୍ପନ୍ନ ହେଉଥିବା ବିଭିନ୍ନ ପ୍ରକାରର ଖାଦ୍ୟ, ଫଳ ଏବଂ ସମଜାତୀୟ ତଥା ଭିନ୍ନ (ଗୁଣର) ଜଏତୁନ୍ ଓ ଡାଳିମ୍ବ। ଯେତେବେଳେ ଏହା ଫଳ ଧାରଣ କରେ, ତାହା ଖାଅ ଏବଂ ଏହାକୁ ସଂଗ୍ରହ କରିବା ଦିନ ସେଥିରୁ ଅଲ୍ଲାହଙ୍କର ନିର୍ଦ୍ଦିଷ୍ଟ ପ୍ରାପ୍ୟ (ଅର୍ଥାତ୍ ନିର୍ଦ୍ଧାରିତ ଦାନ) ଦିଅ ଆଉ ଅପବ୍ୟୟ କରନାହିଁ। ଅଲ୍ଲାହ୍ ଅପବ୍ୟୟକାରୀଙ୍କୁ ପସନ୍ଦ କରନ୍ତି ନାହିଁ। (୬/୧୪୧)

وَهُوَ الَّذِيْۤ اَنْشَاَ جَنّٰتٍ مَّعْرُوْشٰتٍ وَّ غَيْرَ مَعْرُوْشٰتٍ وَّ النَّخْلَ وَ الزَّرْعَ مُخْتَلِفًا اُكُلُهٗ وَ الزَّيْتُوْنَ وَ الرُّمَّانَ مُتَشَابِهًا وَّ غَيْرَ مُتَشَابِهٍ ؕ كُلُوْا مِنْ ثَمَرِهٖۤ اِذَاۤ اَثْمَرَ وَ اٰتُوْا حَقَّهٗ يَوْمَ حَصَادِهٖ ۖ وَ لَا تُسْرِفُوْا ؕ اِنَّهٗ لَا يُحِبُّ الْمُسْرِفِيْنَ ﴿۱۴۱﴾

### ୧୪୨. ଧର୍ମର ମାର୍ଗ ସଳଖ

ସେମାନଙ୍କୁ କୁହ "ଆସ, ମୁଁ ତୁମମାନଙ୍କୁ ପଢ଼ି ଶୁଣାଉଛି ଯାହା ତୁମମାନଙ୍କ ପାଳନକର୍ତ୍ତା ତୁମ ପାଇଁ ନିଷିଦ୍ଧ କରିଛନ୍ତି। ତାହା ହେଲା, କାହାରିକୁ ତାଙ୍କର ସମକକ୍ଷ କରନାହିଁ, ପିତାମାତାଙ୍କ ପ୍ରତି ଉଚିତ କର୍ତ୍ତବ୍ୟ କର ଏବଂ ଦାରିଦ୍ର୍ୟ ଆଶଂକାରେ ନିଜ ସଂତାନମାନଙ୍କୁ ହତ୍ୟା କରନାହିଁ। ଆମ୍ଭେ ତୁମମାନଙ୍କୁ ଆହାର ଦେଉ ଏବଂ ସେମାନଙ୍କୁ ମଧ୍ୟ। ଅଶ୍ଳୀଳତାର ପାଖ ମାଡ଼ ନାହିଁ, ତାହା ପ୍ରକାଶ୍ୟ ରୂପରେ ହେଉ ବା ଗୋପନରେ ଏବଂ ଅଲ୍ଲାହ୍ ଯେଉଁ ଜୀବର ହତ୍ୟା ନିଷିଦ୍ଧ କରିଛନ୍ତି ତାକୁ ଉଚିତ କାରଣ ବିନା ହତ୍ୟା କରନାହିଁ। ସେ ତୁମମାନଙ୍କୁ ଏହି ଆଦେଶ ଦେଉଛନ୍ତି ଯେ ସମ୍ଭବତଃ ତୁମେମାନେ ବୁଝିବ।

قُلْ تَعَالَوْا اَتْلُ مَا حَرَّمَ رَبُّكُمْ عَلَيْكُمْ اَلَّا تُشْرِكُوْا بِهٖ شَيْـًٔا وَّ بِالْوَالِدَيْنِ اِحْسَانًا ۚ وَ لَا تَقْتُلُوْۤا اَوْلَادَكُمْ مِّنْ اِمْلَاقٍ ؕ نَحْنُ نَرْزُقُكُمْ وَ اِيَّاهُمْ ۚ وَ لَا تَقْرَبُوا الْفَوَاحِشَ مَا ظَهَرَ مِنْهَا وَ مَا بَطَنَ ۚ وَ لَا تَقْتُلُوا النَّفْسَ الَّتِيْ حَرَّمَ اللّٰهُ اِلَّا بِالْحَقِّ ؕ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَعْقِلُوْنَ ﴿۱۵۱﴾

ଅନାଥମାନେ ପ୍ରାପ୍ତବୟସ୍କ ନ ହେବା ପର୍ଯ୍ୟନ୍ତ କୌଣସି ଭଲ ଉଦ୍ଦେଶ୍ୟ ବିନା ସେମାନଙ୍କ ସମ୍ପତ୍ତିର ପାଖ ମାଡ଼ନାହିଁ ଏବଂ ମାପ ଓଜନ ନ୍ୟାୟସଂଗତ ଭାବରେ ସଂପୂର୍ଣ୍ଣ କର। ଆମ୍ଭେ କୌଣସି ଜୀବକୁ ତା' ଶକ୍ତି ଠାରୁ ଅଧିକ ବୋଝ ଦେଉ ନା। ଯେତେବେଳେ କଥା କୁହ, ତାହା ତୁମ ପ୍ରିୟଜନଙ୍କ (ସଂପର୍କରେ) ହେଉ ପଛେ, ନ୍ୟାୟସଂଗତ କଥା କୁହ ଏବଂ ଅଲ୍ଲାହଙ୍କୁ ଦେଇଥିବା ପ୍ରତିଶ୍ରୁତି ପୂରଣ କର। ସେ ତୁମମାନଙ୍କୁ ଏହି ଆଦେଶ ଦେଉଛନ୍ତି ଯେପରିକି ତୁମେମାନେ ଶିକ୍ଷାଲାଭ କରିବ।

ଏହାହିଁ ଆମ୍ଭର ସଳଖ ମାର୍ଗ। ସୁତରାଂ, ଏହି ମାର୍ଗରେ ଚାଲ। ଅନ୍ୟ ମାର୍ଗରେ ଚାଲନାହିଁ, କାରଣ ସେଗୁଡ଼ିକ ତୁମମାନଙ୍କୁ ଅଲ୍ଲାହଙ୍କ ପଥରୁ ବିଚ୍ୟୁତ କରିଦେବ। ସେ ତୁମମାନଙ୍କୁ ଏ ବିଷୟରେ ଆକଟ କରୁଛନ୍ତି, ସମ୍ଭବତଃ ତୁମେମାନେ ସଦାଚାରୀ ହେବ। (୬/୧୫୧-୧୫୩)

وَ لَا تَقْرَبُوْا مَالَ الْيَتِيْمِ اِلَّا بِالَّتِيْ هِيَ اَحْسَنُ حَتّٰى يَبْلُغَ اَشُدَّهٗ ۚ وَ اَوْفُوا الْكَيْلَ وَ الْمِيْزَانَ بِالْقِسْطِ ۚ لَا نُكَلِّفُ نَفْسًا اِلَّا وُسْعَهَا ۚ وَ اِذَا قُلْتُمْ فَاعْدِلُوْا وَ لَوْ كَانَ ذَا قُرْبٰى ۚ وَ بِعَهْدِ اللّٰهِ اَوْفُوْا ؕ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَذَكَّرُوْنَ ﴿۱۵۲﴾

وَ اَنَّ هٰذَا صِرَاطِيْ مُسْتَقِيْمًا فَاتَّبِعُوْهُ ۚ وَ لَا تَتَّبِعُوا السُّبُلَ فَتَفَرَّقَ بِكُمْ عَنْ سَبِيْلِهٖ ؕ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَتَّقُوْنَ ﴿۱۵۳﴾

## ୧୪୩. ଧର୍ମରେ ବିଭାଜନ ଗୁରୁତର ଅପରାଧ

ଯେଉଁମାନେ ନିଜ ଧର୍ମକୁ ଖଣ୍ଡ ଖଣ୍ଡ କରିଛନ୍ତି ଏବଂ ବିଭିନ୍ନ ଦଳରେ ବିଭକ୍ତ ହୋଇ ଯାଇଛନ୍ତି, ସେମାନଙ୍କ ସହିତ ତୁମର କୌଣସି ସଂପର୍କ ନାହିଁ। ସେମାନଙ୍କର ବିଚାର ଅଲ୍ଲାହ୍ କରିବେ। ସେମାନେ ଯାହାକିଛି କରୁଥିଲେ, ତାହା ସେ ସେମାନଙ୍କୁ ଜଣାଇଦେବେ। (୬/୧୫୯)

اِنَّ الَّذِيْنَ فَرَّقُوْا دِيْنَهُمْ وَ كَانُوْا شِيَعًا لَّسْتَ مِنْهُمْ فِيْ شَيْءٍ ؕ اِنَّمَاۤ اَمْرُهُمْ اِلَى اللّٰهِ ثُمَّ يُنَبِّئُهُمْ بِمَا كَانُوْا يَفْعَلُوْنَ ﴿۱۵۹﴾

## ୧୪୪. କର୍ମଫଳର ନିୟମ

ଯେଉଁ ବ୍ୟକ୍ତି କୌଣସି ସତକର୍ମ କରିଥିବ, ସେ (ପ୍ରତିବଦଳରେ) ଏହାର ଦଶଗୁଣ ପୁଣ୍ୟ ଲାଭ କରିବ ଏବଂ ଯିଏ କୌଣସି ଦୁଷ୍କର୍ମ କରିଥିବ, ତାକୁ କେବଳ ସେହି ଦୁଷ୍କର୍ମର ଦଣ୍ଡ ମିଳିବ ଏବଂ ତା'ପ୍ରତି ଅନ୍ୟାୟ ହେବ ନାହିଁ। (୬/୧୬୦)

مَنْ جَآءَ بِالْحَسَنَةِ فَلَهٗ عَشْرُ اَمْثَالِهَا ۚ وَ مَنْ جَآءَ بِالسَّيِّئَةِ فَلَا يُجْزٰۤى اِلَّا مِثْلَهَا وَ هُمْ لَا يُظْلَمُوْنَ ﴿۱۶۰﴾

## ୧୪୫. ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କର

କହିଦିଅ "ମୋ ପ୍ରାର୍ଥନା, ମୋର ସକଳ ସେବା-ଉପାସନା, ମୋ' ଜିଇଁବା, ମୋ' ମରିବା, ସବୁକିଛି ଜଗତର ସ୍ୱାମୀ ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ। ତାଙ୍କର କେହି ଅଂଶୀଦାର ନାହାନ୍ତି। ମୋତେ ଏହି ଆଜ୍ଞା ଦିଆଯାଇଛି ଏବଂ ମୁଁ ସର୍ବପ୍ରଥମେ (ତାଙ୍କଠାରେ) ନିଜକୁ ସମର୍ପଣ କରୁଛି।" (୬/୧୬୨-୧୬୩)

قُلْ اِنَّ صَلَاتِيْ وَ نُسُكِيْ وَ مَحْيَايَ وَ مَمَاتِيْ لِلّٰهِ رَبِّ الْعٰلَمِيْنَ ﴿۱۶۲﴾ لَا شَرِيْكَ لَهٗ ۚ وَ بِذٰلِكَ اُمِرْتُ وَ اَنَا اَوَّلُ الْمُسْلِمِيْنَ ﴿۱۶۳﴾

### ୧୪୬. କେହି କାହାରି ବୋଝ ମୁଣ୍ଡାଇବ ନାହିଁ

କୁହ, "କ'ଣ ମୁଁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କୌଣସି ଈଶ୍ୱରଙ୍କୁ ଖୋଜିବି, ଅଥଚ ସେ ହିଁ ସକଳ ବସ୍ତୁର ମାଲିକ? ପ୍ରତ୍ୟେକ ବ୍ୟକ୍ତି ଯାହା ଅର୍ଜନ କରେ, କେବଳ ନିଜ ପାଇଁ କରେ ଏବଂ କେହି ଅନ୍ୟର (ପାପପୁଣ୍ୟର) ଭାର ବହନ କରିବ ନାହିଁ। ପୁଣି ତୁମମାନଙ୍କୁ ତୁମ ପ୍ରଭୁଙ୍କ ନିକଟକୁ ଫେରି ଯିବାକୁ ହେବ ଏବଂ ଯେଉଁ ବିଷୟରେ ତୁମେମାନେ ମତଭେଦ କରୁଥିଲ, ସେ ତୁମମାନଙ୍କୁ ତାହା ଜଣାଇ ଦେବେ।" (୬/୧୬୪)

قُلْ أَغَيْرَ اللَّهِ أَبْغِي رَبًّا وَهُوَ رَبُّ كُلِّ شَيْءٍ ۚ وَلَا
تَكْسِبُ كُلُّ نَفْسٍ إِلَّا عَلَيْهَا ۚ وَلَا تَزِرُ وَازِرَةٌ
وِزْرَ أُخْرَىٰ ۚ ثُمَّ إِلَىٰ رَبِّكُمْ مَرْجِعُكُمْ فَيُنَبِّئُكُمْ
بِمَا كُنْتُمْ فِيهِ تَخْتَلِفُونَ ﴿١٦٤﴾

### ୧୪୭. କୁରଆନର ଉପଦେଶ ମାନି ଚଳ

(ହେ ମନୁଷ୍ୟଗଣ!) ତୁମ ପରମେଶ୍ୱରଙ୍କଠାରୁ ତୁମମାନଙ୍କ ପାଖକୁ ଯେଉଁ ଗ୍ରନ୍ଥ ଆସିଛି, ତାକୁ ମାନି ଚଳ ଏବଂ ତାଙ୍କ ବ୍ୟତୀତ ଅନ୍ୟ କୌଣସି (ପଥପ୍ରଦର୍ଶକ) ବନ୍ଧୁଙ୍କ କଥା ମାନନାହିଁ। ତୁମେମାନେ ଖୁବ୍ କମ୍ ଧ୍ୟାନ ଦିଅ। (୭/୩)

اتَّبِعُوا مَا أُنْزِلَ إِلَيْكُمْ مِنْ رَبِّكُمْ وَلَا تَتَّبِعُوا
مِنْ دُونِهِ أَوْلِيَاءَ ۗ قَلِيلًا مَا تَذَكَّرُونَ ﴿٣﴾

### ୧୪୮. ଈଶ୍ୱରଦୂତମାନେ ମଧ୍ୟ ଉତ୍ତରଦାୟୀ

ଯେଉଁମାନଙ୍କ ପାଖକୁ ଈଶ୍ୱରଦୂତମାନଙ୍କୁ ପଠାଯାଇଛି, ଆମ୍ଭେ ସେମାନଙ୍କୁ ଅବଶ୍ୟ ପ୍ରଶ୍ନ କରିବୁ ଏବଂ ଆମ୍ଭେ ଈଶ୍ୱଦୂତମାନଙ୍କୁ ମଧ୍ୟ ପ୍ରଶ୍ନ କରିବୁ। (୭/୬)

فَلَنَسْأَلَنَّ الَّذِينَ أُرْسِلَ إِلَيْهِمْ وَلَنَسْأَلَنَّ
الْمُرْسَلِينَ ﴿٦﴾

### ୧୪୯. ବିଚାର ଦିନ କର୍ମର ଓଜନ ହେବ

ସେଦିନ କର୍ମର ଓଜନ ହେବା ଅଟଳ ସତ୍ୟ। ସୁତରାଂ, ଯେଉଁମାନଙ୍କ ପୁଣ୍ୟଭାର ଅଧିକ ହେବ ସେହିମାନେ ସଫଳ ହେବେ ଏବଂ ଯେଉଁମାନଙ୍କ ପୁଣ୍ୟଭାର ହାଲୁକା ହେବ, ସେମାନେ ନିଜର ଅନିଷ୍ଟ କଲେ, କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ଅବିଚାର କରିଥିଲେ। ଆମ୍ଭେ ତୁମମାନଙ୍କୁ ପୃଥିବୀରେ ବସବାସ କରିବା ପାଇଁ ସ୍ଥାନ ଦେଲୁ ଏବଂ ତୁମମାନଙ୍କ ଜୀବନନିର୍ବାହ ପାଇଁ ବିଭିନ୍ନ ସାମଗ୍ରୀର ବ୍ୟବସ୍ଥା କଲୁ, ମାତ୍ର ତୁମେମାନେ କ୍ୱଚିତ କୃତଜ୍ଞ ହୋଇଥାଅ। (୭/୮-୧୦)

وَالْوَزْنُ يَوْمَئِذٍ الْحَقُّ ۚ فَمَنْ ثَقُلَتْ مَوَازِينُهُ
فَأُولَٰئِكَ هُمُ الْمُفْلِحُونَ ﴿٨﴾ وَمَنْ خَفَّتْ مَوَازِينُهُ
فَأُولَٰئِكَ الَّذِينَ خَسِرُوا أَنْفُسَهُمْ بِمَا كَانُوا بِآيَاتِنَا
يَظْلِمُونَ ﴿٩﴾ وَلَقَدْ مَكَّنَّاكُمْ فِي الْأَرْضِ وَجَعَلْنَا
لَكُمْ فِيهَا مَعَايِشَ ۗ قَلِيلًا مَا تَشْكُرُونَ ﴿١٠﴾

### ୧୫୦. ସେ ତୁମପାଇଁ ବସ୍ତ୍ର ସୃଷ୍ଟି କଲେ

ହେ ଆଦମଙ୍କ ସଂତାନ! ଆମ୍ଭେ ତୁମମାନଙ୍କୁ ବସ୍ତ୍ର ପ୍ରଦାନ କଲୁ, ଯାହା ତୁମ ଗୁପ୍ତାଂଗକୁ ଘୋଡ଼ାଇ ରଖେ ଏବଂ ତୁମ ଶରୀର ପାଇଁ

يَا بَنِي آدَمَ قَدْ أَنْزَلْنَا عَلَيْكُمْ لِبَاسًا يُوَارِي
سَوْآتِكُمْ وَرِيشًا ۖ وَلِبَاسُ التَّقْوَىٰ ذَٰلِكَ خَيْرٌ ۚ

ذٰلِكَ مِنْ اٰيٰتِ اللّٰهِ لَعَلَّهُمْ يَذَّكَّرُوْنَ ﴿٢٦﴾

ସୁରକ୍ଷା ଓ ସୌନ୍ଦର୍ଯ୍ୟର ସାଧନ ମଧ୍ୟ । ମାତ୍ର ଧର୍ମପରାୟଣତାର ପୋଷାକ ସବୁଠାରୁ ଭଲ । ଏହା ଅଲ୍ଲାହଙ୍କର ନିଦର୍ଶନ । ସମ୍ଭବତଃ ଲୋକେ ଏଥିରୁ ଶିକ୍ଷାଲାଭ କରିବେ । (୭/୨୬)

## ୧୫୧. ଅଶ୍ଳୀଳତା, ଅନ୍ୟାୟ ଓ ଅତ୍ୟାଚାର ନିଷିଦ୍ଧ

قُلْ اِنَّمَا حَرَّمَ رَبِّيَ الْفَوَاحِشَ مَا ظَهَرَ مِنْهَا وَ
مَا بَطَنَ وَ الْاِثْمَ وَ الْبَغْيَ بِغَيْرِ الْحَقِّ وَ اَنْ تُشْرِكُوْا
بِاللّٰهِ مَا لَمْ يُنَزِّلْ بِهٖ سُلْطٰنًا وَّ اَنْ تَقُوْلُوْا عَلَى
اللّٰهِ مَا لَا تَعْلَمُوْنَ ﴿٣٣﴾

କହିଦିଅ, "ମୋ' ପ୍ରଭୁ ଅଶ୍ଳୀଳ କର୍ମ ନିଷିଦ୍ଧ କରିଛନ୍ତି, ତାହା ପ୍ରକାଶ୍ୟରେ ହେଉ ବା ଗୋପନରେ । (ସେହିପରି) ପ୍ରତ୍ୟେକ ପାପାଚାର ଏବଂ ଉଚିତ କାରଣ ନଥାଇ ଅନ୍ୟ ପ୍ରତି ଅତ୍ୟାଚାର (ନିଷିଦ୍ଧ କରିଛନ୍ତି) ତଥା ଏହା ମଧ୍ୟ (ନିଷିଦ୍ଧ କରିଛନ୍ତି) ଯେ ତୁମେମାନେ କାହାରିକୁ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅଂଶୀଦାର କର ଯାହା ସଂବନ୍ଧରେ ଅଲ୍ଲାହ୍ କୌଣସି ଆଦେଶ ଦେଇନାହାନ୍ତି ଏବଂ ତୁମେମାନେ ଅଲ୍ଲାହଙ୍କ ପ୍ରତି ଏଭଳି ଆରୋପ କର ଯାହାର ବାସ୍ତବତା ସଂପର୍କରେ ତୁମର ଜ୍ଞାନ ନାହିଁ ।" (୭/୩୩)

## ୧୫୨. ଅନ୍ୟକୁ ଭୁଲ ବାଟରେ ନେଲେ ଦ୍ୱିଗୁଣ ଦଣ୍ଡ

قَالَ ادْخُلُوْا فِيْۤ اُمَمٍ قَدْ خَلَتْ مِنْ قَبْلِكُمْ
مِّنَ الْجِنِّ وَ الْاِنْسِ فِي النَّارِ ؕ كُلَّمَا دَخَلَتْ اُمَّةٌ
لَّعَنَتْ اُخْتَهَا ؕ حَتّٰۤى اِذَا ادَّارَكُوْا فِيْهَا جَمِيْعًا ۙ
قَالَتْ اُخْرٰىهُمْ لِاُوْلٰىهُمْ رَبَّنَا هٰۤؤُلَآءِ اَضَلُّوْنَا
فَاٰتِهِمْ عَذَابًا ضِعْفًا مِّنَ النَّارِ ؕ۬ قَالَ لِكُلٍّ ضِعْفٌ
وَّ لٰكِنْ لَّا تَعْلَمُوْنَ ﴿٣٨﴾

(ବିଚାର ଦିନ) ଅଲ୍ଲାହ୍ ଆଜ୍ଞା ଦେବେ, "ଯାଅ, ତୁମ ପୂର୍ବରୁ ଯେଉଁ ମାନବ ଓ ଦାନବ ଦଳ ନର୍କାଗ୍ନିରେ ପ୍ରବେଶ କରିଛନ୍ତି, ତୁମେମାନେ ମଧ୍ୟ ସେମାନଙ୍କ ସହିତ ପ୍ରବେଶ କର ।" ଯେତେବେଳେ କୌଣସି ଦଳ ନର୍କରେ ପ୍ରବେଶ କରିବ, ସେ (ପୂର୍ବରୁ ସେଠାରେ ଥିବା) ନିଜର ମିତ୍ର ଦଳକୁ ଧିକ୍କାର କରିବ । ଯେତେବେଳେ ସମସ୍ତେ ସେଠାରେ ଏକାଠି ହୋଇଯିବେ, ସେତେବେଳେ ପଛ ଦଳଗୁଡ଼ିକ ପୂର୍ବ ଦଳ ସଂପର୍କରେ କହିବେ, "ହେ ପ୍ରଭୁ! ଏଇମାନେ ହିଁ ଆମକୁ ପଥଭ୍ରଷ୍ଟ କରିଥିଲେ, ତେଣୁ ଏମାନଙ୍କୁ ଦ୍ୱିଗୁଣ ନର୍କଦଣ୍ଡ ଦିଅ ।" (ଅଲ୍ଲାହ) ଉତ୍ତର ଦେବେ, "ପ୍ରତ୍ୟେକଙ୍କ ପାଇଁ ଦ୍ୱିଗୁଣ ଶାସ୍ତି ରହିଛି, ମାତ୍ର ତୁମେମାନେ ଏହା ଜାଣ ନାହିଁ ।" (୭/୩୮)

## ୧୫୩. ଦୈବବାଣୀକୁ ପ୍ରତ୍ୟାଖ୍ୟାନ କଲେ ସ୍ୱର୍ଗପ୍ରାପ୍ତି ସମ୍ଭବ ନୁହେଁ

اِنَّ الَّذِيْنَ كَذَّبُوْا بِاٰيٰتِنَا وَ اسْتَكْبَرُوْا عَنْهَا لَا
تُفَتَّحُ لَهُمْ اَبْوَابُ السَّمَآءِ وَ لَا يَدْخُلُوْنَ الْجَنَّةَ
حَتّٰى يَلِجَ الْجَمَلُ فِيْ سَمِّ الْخِيَاطِ ؕ وَ كَذٰلِكَ نَجْزِي
الْمُجْرِمِيْنَ ﴿٤٠﴾

ଯେଉଁମାନେ ଅହଂକାର ବଶତଃ ଆମ୍ଭର ବାଣୀକୁ ମିଥ୍ୟା ବୋଲି କହିଲେ, ସେମାନଙ୍କ ପାଇଁ ସ୍ୱର୍ଗର ଦ୍ୱାର ଖୋଲିବ ନାହିଁ । ସେମାନଙ୍କର ବୈକୁଣ୍ଠରେ ପ୍ରବେଶ ସେହିପରି ସମ୍ଭବ ନୁହେଁ, ଯେପରି ସୂଚୀ ରନ୍ଧ୍ର ମଧ୍ୟରେ ଓଟର ପ୍ରବେଶ ସମ୍ଭବ ନୁହେଁ । ଆମ୍ଭେ ଅପରାଧୀମାନଙ୍କୁ ଏହିପରି ଶାସ୍ତି ଦେଇଥାଉ । (୭/୪୦)

### ୧୫୪. ଆଜ୍ଞା ଦେବା କେବଳ ସ୍ରଷ୍ଟାଙ୍କ ଅଧିକାର

ବାସ୍ତବରେ ଅଲ୍ଲାହ୍ ହିଁ ତୁମମାନଙ୍କର ପ୍ରଭୁ ଅଟନ୍ତି ଯିଏ ପୃଥିବୀ ଓ ଅନ୍ତରୀକ୍ଷକୁ ଛଅ ଦିନରେ ସୃଷ୍ଟି କଲେ, ପୁଣି ନିଜ ସିଂହାସନରେ ବିରାଜମାନ ହେଲେ । ଯିଏ ରାତି ଦ୍ୱାରା ଦିନକୁ ଘୋଡ଼ାଇ ଦିଅନ୍ତି ଯାହା ତା' ପଛେ ପଛେ ଗୋଡ଼ାଇଥାଏ । ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ର ସମସ୍ତେ ତାଙ୍କର ଆଜ୍ଞା ଅନୁଯାୟୀ କାର୍ଯ୍ୟରତ । ସାବଧାନ! ସୃଷ୍ଟି ତାଙ୍କରି ଏବଂ ଆଜ୍ଞା (ଦେବାର ଅଧିକାର) ମଧ୍ୟ ତାଙ୍କରି । ଜଗତପାଳକ ଅଲ୍ଲାହ୍ (ଅତ୍ୟନ୍ତ) ମଂଗଳମୟ । (୭/୫୪)

اِنَّ رَبَّكُمُ اللّٰهُ الَّذِیْ خَلَقَ السَّمٰوٰتِ وَ الْاَرْضَ فِیْ
سِتَّةِ اَیَّامٍ ثُمَّ اسْتَوٰی عَلَی الْعَرْشِ یُغْشِی الَّیْلَ
النَّهَارَ یَطْلُبُهٗ حَثِیْثًا وَّ الشَّمْسَ وَ الْقَمَرَ وَ
النُّجُوْمَ مُسَخَّرٰتٍۭ بِاَمْرِهٖ اَلَا لَهُ الْخَلْقُ وَ الْاَمْرُ
تَبٰرَكَ اللّٰهُ رَبُّ الْعٰلَمِیْنَ

### ୧୫୫. ସମାଜରେ ବିଶୃଂଖଳା ସୃଷ୍ଟି କରନାହିଁ

ଶାନ୍ତି ପ୍ରତିଷ୍ଠା ହେଲା ପରେ ଧରାପୃଷ୍ଠରେ ବିଶୃଂଖଳା ସୃଷ୍ଟି କରନାହିଁ । (ଈଶ୍ୱରଙ୍କ ପ୍ରତି) ଭୟ ରଖି ଏବଂ (ତାଙ୍କଠାରେ) ଆଶା ରଖି ତାଙ୍କୁ ପ୍ରାର୍ଥନା କରୁଥାଅ । ସଦାଚାରୀମାନଙ୍କ ପ୍ରତି ନିଶ୍ଚିତ ଭାବରେ ଅଲ୍ଲାହଙ୍କ କରୁଣା ରହିଛି । (୭/୫୬)

وَ لَا تُفْسِدُوْا فِی الْاَرْضِ بَعْدَ اِصْلَاحِهَا وَ
ادْعُوْهُ خَوْفًا وَّ طَمَعًا اِنَّ رَحْمَتَ اللّٰهِ قَرِیْبٌ
مِّنَ الْمُحْسِنِیْنَ

### ୧୫୬. ମୃତମାନେ କିପରି ପୁନର୍ଜୀବିତ ହେବେ ?

ସେ ହିଁ ନିଜ ଅନୁଗ୍ରହ (ଅର୍ଥାତ୍ ବର୍ଷା) ପୂର୍ବରୁ ଏହାର ଶୁଭସୂଚନା ଦେଇ ବାୟୁ ପ୍ରେରଣ କରନ୍ତି । ପୁଣି ଯେତେବେଳେ ଏହି ବାୟୁ ଓଜନିଆ ବାଦଲଗୁଡ଼ିକୁ ଉଠାଇ ନିଏ, ଆମ୍ଭେ ତାକୁ କୌଣସି ନିର୍ଜୀବ (ଶୁଷ୍କ) ଭୂମି ଆଡ଼କୁ ନେଇଯାଉ । ପୁଣି ବାଦଲରୁ (ସେଠାରେ) ଜଳ ବର୍ଷା କରୁ ଏବଂ ଜଳଦ୍ୱାରା (ସେହି ନିର୍ଜୀବ ଭୂମିରୁ) ବିଭିନ୍ନ ପ୍ରକାରର ଫଳମୂଳ ଉତ୍ପନ୍ନ କରୁ । ଏହିପରି ଆମ୍ଭେ ମୃତମାନଙ୍କୁ ଜୀବିତ (କରି ଭୂମିରୁ ବାହାର) କରିବୁ । (ଏହା ଏଇଥିପାଇଁ ବର୍ଣ୍ଣନା କରାଗଲା ଯେ) ସମ୍ଭବତଃ ତୁମେମାନେ ଶିକ୍ଷାଲାଭ କରିବ । (୭/୫୭)

وَ هُوَ الَّذِیْ یُرْسِلُ الرِّیٰحَ بُشْرًۢا بَیْنَ یَدَیْ رَحْمَتِهٖ
حَتّٰۤی اِذَاۤ اَقَلَّتْ سَحَابًا ثِقَالًا سُقْنٰهُ لِبَلَدٍ مَّیِّتٍ
فَاَنْزَلْنَا بِهِ الْمَآءَ فَاَخْرَجْنَا بِهٖ مِنْ كُلِّ الثَّمَرٰتِ
كَذٰلِكَ نُخْرِجُ الْمَوْتٰی لَعَلَّكُمْ تَذَكَّرُوْنَ

### ୧୫୭. ପ୍ରଭୁଙ୍କ ପ୍ରକୋପକୁ ଭୟ କର

କ'ଣ ସହରବାସୀଙ୍କୁ ଏହାର ଭୟ ନାହିଁ ଯେ ରାତିରେ ଶୋଇଥିବା ବେଳେ କେତେବେଳେ (ହୁଏତ) ସେମାନଙ୍କ ଉପରେ ଆମ୍ଭର କୋପ ପଡ଼ିଯିବ? ଅଥବା କ'ଣ ସେମାନେ ଏ ବିଷୟରେ ନିର୍ଭୀକ ହୋଇ ଯାଇଛନ୍ତି ଯେ ଦିନ ଦ୍ୱିପହରରେ (ହୁଏତ) ସେମାନଙ୍କ ଉପରେ ଆମ୍ଭର କୋପ ପଡ଼ିଯିବ, ଯେତେବେଳେକି ସେମାନେ ଖେଳ-ତାମସାରେ ମାତିଥିବେ? (୭/୯୭-୯୮)

اَفَاَمِنَ اَهْلُ الْقُرٰۤی اَنْ یَّاْتِیَهُمْ بَاْسُنَا بَیَاتًا وَّ
هُمْ نَآئِمُوْنَ اَوَ اَمِنَ اَهْلُ الْقُرٰۤی اَنْ یَّاْتِیَهُمْ
بَاْسُنَا ضُحًی وَّ هُمْ یَلْعَبُوْنَ

**୧୫୮. ମହାମାନ୍ୟ ମୁହମ୍ମଦ ମାନବଜାତିର ମାର୍ଗଦର୍ଶକ**

(ହେ ମୁହମ୍ମଦ!) ତୁମେ କହିଦିଅ, "ହେ ମନୁଷ୍ୟଗଣ! ମୁଁ ତୁମ ସମସ୍ତଙ୍କ ପାଖକୁ ସେହି ଅଲ୍ଲାହଙ୍କର ବାର୍ତ୍ତାବହ ରୂପେ ଆସିଛି, ଯିଏ ପୃଥିବୀ ଓ ଅନ୍ତରୀକ୍ଷର ଅଧୀଶ୍ୱର।" ତାଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି। ସେଇ ଜୀବନ ଦିଅନ୍ତି ଏବଂ ସେହି ମୃତ୍ୟୁ ଦିଅନ୍ତି। ତୁମେମାନେ ଅଲ୍ଲାହଙ୍କୁ ଏବଂ ତାଙ୍କ ନିରକ୍ଷର ବାର୍ତ୍ତାବହଙ୍କୁ ମାନିନିଅ, ଯିଏ ଅଲ୍ଲାହ ଓ ତାଙ୍କ ବାଣୀ ପ୍ରତି ବିଶ୍ୱାସ କରନ୍ତି; ଏବଂ ତାଙ୍କ କଥା ମାନି ଚଳ, ତା'ହେଲେ ସତପଥ ପାଇବ।"

(୭/୧୫୮)

قُلْ يٰۤاَيُّهَا النَّاسُ اِنِّيْ رَسُوْلُ اللّٰهِ اِلَيْكُمْ جَمِيْعَا
الَّذِيْ لَهٗ مُلْكُ السَّمٰوٰتِ وَ الْاَرْضِ لَاۤ اِلٰهَ اِلَّا هُوَ
يُحْيٖ وَ يُمِيْتُ فَاٰمِنُوْا بِاللّٰهِ وَ رَسُوْلِهِ النَّبِيِّ
الْاُمِّيِّ الَّذِيْ يُؤْمِنُ بِاللّٰهِ وَ كَلِمٰتِهٖ وَ اتَّبِعُوْهُ
لَعَلَّكُمْ تَهْتَدُوْنَ ﴿١٥٨﴾

**୧୫୯.ଦୃଢ଼ତାର ସହ କୁରଆନର ଅନୁପାଳନ କର**

ଯେଉଁମାନେ ଦୃଢ଼ ଭାବରେ (ଆମ୍ଭ) ଗ୍ରନ୍ଥର ଅନୁପାଳନ କରନ୍ତି ଏବଂ ନମାଜ ପ୍ରତିଷ୍ଠା କରନ୍ତି, ଏଭଳି ଧର୍ମନିଷ୍ଠ ବ୍ୟକ୍ତିମାନଙ୍କର ଶ୍ରମ ଆମ୍ଭେ କଦାପି ବ୍ୟର୍ଥ କରିଦେବୁ ନାହିଁ। (୭/୧୭୦)

وَ الَّذِيْنَ يُمَسِّكُوْنَ بِالْكِتٰبِ وَ اَقَامُوا
الصَّلٰوةَ اِنَّا لَا نُضِيْعُ اَجْرَ الْمُصْلِحِيْنَ ﴿١٧٠﴾

**୧୬୦. ଇନ୍ଦ୍ରିୟ ବଶବର୍ତ୍ତୀ ହୁଅନାହିଁ**

ଏମାନଙ୍କୁ ସେହି ବ୍ୟକ୍ତିର କଥା ପଢ଼ି ଶୁଣାଅ ଯାହାକୁ ଆମ୍ଭେ ନିଜ ବାଣୀର ଜ୍ଞାନ ପ୍ରଦାନ କରିଥିଲୁ, ମାତ୍ର ସେ ଏହାର ଶୃଂଖଳାରୁ ବାହାରି ଗଲା, ଯାହା ଫଳରେ ଶଇତାନ ତା' ପଛରେ ଲାଗିଗଲା ଏବଂ ସେ ପଥଭ୍ରଷ୍ଟ ହୋଇଗଲା। ଯଦି ଆମ୍ଭେ ଇଚ୍ଛା କରିଥାଆନ୍ତୁ, ତେବେ ସେହି ବାଣୀ ଦ୍ୱାରା ତା' ମର୍ଯ୍ୟାଦା ବୃଦ୍ଧି କରି ଥାଆନ୍ତୁ। ମାତ୍ର ସେ ସଂସାର ପ୍ରତି ଆକୃଷ୍ଟ ହେଲା ଏବଂ ନିଜ ବାସନା ପଛରେ ଲାଗି ରହିଲା। ତା' ଅବସ୍ଥା କୁକୁର ଭଳି ହୋଇଗଲା, ଯାହାକୁ ଆକ୍ରମଣ କଲେ ସେ ଧଇଁ ସଇଁ ହୁଏ ଏବଂ ଛାଡ଼ିଦେଲେ ମଧ୍ୟ ଧଇଁ ସଇଁ ହୁଏ। ଏହା ସେହି ଲୋକମାନଙ୍କର ଦୃଷ୍ଟାନ୍ତ. ଯେଉଁମାନେ ଆମ୍ଭର ବାଣୀକୁ ଅସ୍ୱୀକାର କରନ୍ତି। ସୁତରାଂ, ତୁମେ ସେମାନଙ୍କ ନିକଟରେ ଏହି ଘଟଣା ବର୍ଣ୍ଣନା କର, ହୁଏତ ସେମାନେ ଏ ବିଷୟରେ ଚିନ୍ତା କରିବେ। (୭/୧୭୫-୧୭୬)

وَ اتْلُ عَلَيْهِمْ نَبَاَ الَّذِيْۤ اٰتَيْنٰهُ اٰيٰتِنَا فَانْسَلَخَ
مِنْهَا فَاَتْبَعَهُ الشَّيْطٰنُ فَكَانَ مِنَ الْغٰوِيْنَ ﴿١٧٥﴾
وَ لَوْ شِئْنَا لَرَفَعْنٰهُ بِهَا وَ لٰكِنَّهٗۤ اَخْلَدَ اِلَى
الْاَرْضِ وَ اتَّبَعَ هَوٰىهُ فَمَثَلُهٗ كَمَثَلِ الْكَلْبِ اِنْ
تَحْمِلْ عَلَيْهِ يَلْهَثْ اَوْ تَتْرُكْهُ يَلْهَثْ ذٰلِكَ مَثَلُ
الْقَوْمِ الَّذِيْنَ كَذَّبُوْا بِاٰيٰتِنَا فَاقْصُصِ
الْقَصَصَ لَعَلَّهُمْ يَتَفَكَّرُوْنَ ﴿١٧٦﴾

**୧୬୧. ଅଲ୍ଲାହଙ୍କୁ ଉପଯୁକ୍ତ ନାମରେ ଡାକ**

ଅଲ୍ଲାହଙ୍କର ଭଲ ଭଲ ନାଁ ଅଛି। ତାଙ୍କୁ ସେହି ନାମରେ ଡାକ। ଆଉ ଯେଉଁମାନେ ତାଙ୍କ ନାଁ ବିଷୟରେ ଅଙ୍କାବଙ୍କା ମାର୍ଗ

وَ لِلّٰهِ الْاَسْمَآءُ الْحُسْنٰى فَادْعُوْهُ بِهَا
وَ ذَرُوا الَّذِيْنَ يُلْحِدُوْنَ فِيْۤ اَسْمَآئِهٖ سَيُجْزَوْنَ مَا

ଅନୁସରଣ କରନ୍ତି, ସେମାନଙ୍କୁ ଛାଡ଼ିଦିଅ । ସେମାନେ ଯାହାକିଛି କରୁଛନ୍ତି ତାହାର ଫଳ ଭୋଗ କରିବେ । (୭/୧୮୦)

كَانُوْا يَعْمَلُوْنَ ﴿١٨٠﴾

**୧୬୨. ତୁମର ସବୁ ହାନିଲାଭ ଅଲ୍ଲାହଙ୍କ ହାତରେ**

(ହେ ବାର୍ତ୍ତାବହ!) ତୁମେ କୁହ, "ମୋ ନିଜର ଲାଭ ବା କ୍ଷତିରେ ମଧ୍ୟ ମୋର କୌଣସି ନିୟନ୍ତ୍ରଣ ନାହିଁ । ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି, ତାହାହିଁ ହୁଏ । ଯଦି ମୁଁ ଅଦୃଷ୍ଟ ବିଷୟରେ ଜାଣି ଥାଆନ୍ତି, ତେବେ ନିଜର ଅନେକ କଲ୍ୟାଣ କରିପାରନ୍ତି ଏବଂ ମୋର କୌଣସି ଅନିଷ୍ଟ ହୁଅନ୍ତା ନାହିଁ । ମୁଁ ତ ସେମାନଙ୍କୁ (ନର୍କ ବିଷୟରେ) ସାବଧାନ କରିବାକୁ ଏବଂ (ସ୍ୱର୍ଗର) ସୁସମାଚାର ଦେବାକୁ ଆସିଛି, ଯେଉଁମାନେ (ମୋତେ) ବିଶ୍ୱାସ କରନ୍ତି । (୭/୧୮୮)

قُلْ لَّآ اَمْلِكُ لِنَفْسِيْ نَفْعًا وَّلَا ضَرًّا اِلَّا مَا شَآءَ
اللّٰهُ ۭ وَلَوْ كُنْتُ اَعْلَمُ الْغَيْبَ لَاسْتَكْثَرْتُ مِنَ
الْخَيْرِ ۚ وَمَا مَسَّنِيَ السُّوْٓءُ ۚ اِنْ اَنَا اِلَّا نَذِيْرٌ وَّ
بَشِيْرٌ لِّقَوْمٍ يُّؤْمِنُوْنَ ﴿١٨٨﴾

**୧୬୩. ସୃଷ୍ଟିର ଉପାସନା କରନାହିଁ**

ଏମାନେ କିଭଳି ଅଲ୍ଲାହଙ୍କ ଈଶ୍ୱରତ୍ୱରେ ସେମାନଙ୍କୁ ଅଂଶୀଦାର କରି ପାରୁଛନ୍ତି ଯେଉଁମାନେ କିଛି ସୃଷ୍ଟି କରନ୍ତି ନାହିଁ, ବରଂ ନିଜେ ସୃଷ୍ଟି ହୋଇଛନ୍ତି ? ସେମାନେ ଏମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରିପାରନ୍ତି ନାହିଁ ଅଥବା ନିଜେ ନିଜକୁ ମଧ୍ୟ ସାହାଯ୍ୟ କରିବାକୁ ସମର୍ଥ ନୁହନ୍ତି । (୭/୧୯୧-୧୯୨)

اَيُشْرِكُوْنَ مَا لَا يَخْلُقُ شَيْـًٔا وَّ هُمْ يُخْلَقُوْنَ ﴿١٩١﴾
وَ لَا يَسْتَطِيْعُوْنَ لَهُمْ نَصْرًا وَّ لَآ اَنْفُسَهُمْ
يَنْصُرُوْنَ ﴿١٩٢﴾

**୧୬୪. କ୍ଷମାର ନୀତି ଅବଲମ୍ବନ କର**

(ହେ ବାର୍ତ୍ତାବହ!) କ୍ଷମାର ନୀତି ଅବଲମ୍ବନ କର । ସତକର୍ମ କରିବାର ଉପଦେଶ ଦେଉଥାଅ ଏବଂ ଅଜ୍ଞାନୀମାନଙ୍କଠାରୁ ଦୂରେଇ ରୁହ (ଅର୍ଥାତ୍ ଯୁକ୍ତିତର୍କ କରନାହିଁ) । (୭/୧୯୯)

خُذِ الْعَفْوَ وَ اْمُرْ بِالْعُرْفِ وَ اَعْرِضْ عَنِ
الْجٰهِلِيْنَ ﴿١٩٩﴾

**୧୬୫. କୁଚିନ୍ତା ଆସିଲେ ଅଲ୍ଲାହଙ୍କୁ ସ୍ମରଣ କର**

ଯଦି କେବେ ଶଇତାନ ତୁମକୁ କୁପ୍ରରୋଚନା ଦିଏ, ତେବେ ଅଲ୍ଲାହଙ୍କ ଶରଣ ନିଅ । ଅବଶ୍ୟ ସେ ସବୁ ଜାଣନ୍ତି ଓ ସବୁ ଦେଖନ୍ତି । ଯେଉଁମାନେ ଧର୍ମପରାୟଣ, ସେମାନଙ୍କ ମନରେ ଯଦି ଶୈତାନ ଦୁର୍ଭାବନା ଉତ୍ପନ୍ନ କରେ, ତେବେ ସେମାନେ ଅଲ୍ଲାହଙ୍କୁ ସ୍ମରଣ କରନ୍ତି । ପୁଣି ସଂଗେସଂଗେ ସେମାନଙ୍କର ଆଖି ଖୋଲିଯାଏ । (୭/୨୦୦-୨୦୧)

وَ اِمَّا يَنْزَغَنَّكَ مِنَ الشَّيْطٰنِ نَزْغٌ فَاسْتَعِذْ
بِاللّٰهِ ۭ اِنَّهٗ سَمِيْعٌ عَلِيْمٌ ﴿٢٠٠﴾ اِنَّ الَّذِيْنَ اتَّقَوْا اِذَا
مَسَّهُمْ طٰٓئِفٌ مِّنَ الشَّيْطٰنِ تَذَكَّرُوْا فَاِذَا هُمْ
مُّبْصِرُوْنَ ﴿٢٠١﴾

**୧୬୬. କୁରଆନ୍‌ପାଠ ସମୟରେ ଧ୍ୟାନ ଦେଇ ଶୁଣ**

ଯେତେବେଳେ କୁରଆନ୍ ପାଠ କରାଯାଏ, ଧ୍ୟାନ ଦେଇ ଶୁଣ ଏବଂ

وَ اِذَا قُرِئَ الْقُرْاٰنُ فَاسْتَمِعُوْا لَهٗ وَ اَنْصِتُوْا

لَعَلَّكُمْ تُرْحَمُوْنَ ﴿٢٠٤﴾

ନୀରବ ରୁହ । ସମ୍ଭବତଃ ତୁମ ପ୍ରତି ପ୍ରଭୁଙ୍କ କୃପା ହେବ ।
(୭/୨୦୪)

**୧୬୭. ସଂଜ ସକାଳେ ପ୍ରଭୁଙ୍କୁ ସ୍ମରଣ କର**

وَ اذْكُرْ رَّبَّكَ فِيْ نَفْسِكَ تَضَرُّعًا وَّ خِيْفَةً وَّ دُوْنَ الْجَهْرِ مِنَ الْقَوْلِ بِالْغُدُوِّ وَ الْاٰصَالِ وَ لَا تَكُنْ مِّنَ الْغٰفِلِيْنَ ﴿٢٠٥﴾

ନିଜ ପାଳନକର୍ତ୍ତାଙ୍କୁ ସକାଳେ ଓ ସଂଧ୍ୟାରେ ବିନୀତ ଭାବରେ (ମନରେ) ଭୟ ରଖି ଅନ୍ତର ମଧ୍ୟରେ ସ୍ମରଣ କରୁଥାଅ ଏବଂ ଧୀର ସ୍ୱରରେ ମଧ୍ୟ । ଏ ବିଷୟରେ ଅବହେଳା କର ନାହିଁ ।
(୭/୨୦୫)

**୧୬୮. ପ୍ରକୃତ ଈଶ୍ୱରବିଶ୍ୱାସୀ କିଏ ?**

اِنَّمَا الْمُؤْمِنُوْنَ الَّذِيْنَ اِذَا ذُكِرَ اللّٰهُ وَجِلَتْ قُلُوْبُهُمْ وَاِذَا تُلِيَتْ عَلَيْهِمْ اٰيٰتُهٗ زَادَتْهُمْ اِيْمَانًا وَّعَلٰى رَبِّهِمْ يَتَوَكَّلُوْنَ ﴿٢﴾ الَّذِيْنَ يُقِيْمُوْنَ الصَّلٰوةَ وَ مِمَّا رَزَقْنٰهُمْ يُنْفِقُوْنَ ﴿٣﴾ اُولٰٓئِكَ هُمُ الْمُؤْمِنُوْنَ حَقًّا ؕ لَهُمْ دَرَجٰتٌ عِنْدَ رَبِّهِمْ وَ مَغْفِرَةٌ وَّ رِزْقٌ كَرِيْمٌ ﴿٤﴾

(ପ୍ରକୃତ) ଈଶ୍ୱରବିଶ୍ୱାସୀ ସେଇମାନେ, ଯେଉଁମାନଙ୍କର ହୃଦୟ ଅଲ୍ଲାହଙ୍କ କଥା ଶୁଣିଲେ (ଭୟରେ) ଥରି ଉଠେ ଏବଂ ଯଦି ସେମାନଙ୍କ ନିକଟରେ ତାଙ୍କର ବାଣୀ ପାଠ କରାଯାଏ, ତେବେ ସେମାନଙ୍କ ଆସ୍ଥା ଅଧିକ ଦୃଢ଼ ହୋଇଯାଏ ଏବଂ ସେମାନେ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା ରଖନ୍ତି । ସେମାନେ (ଦୈନିକ) ନମାଜ ପ୍ରତିଷ୍ଠା କରନ୍ତି ଏବଂ ଯାହା ଧନ ଆମ୍ଭେ ସେମାନଙ୍କୁ ଦେଇଛୁ, ସେଥିରୁ (ସତ୍‌କାର୍ଯ୍ୟରେ) ଖର୍ଚ୍ଚ କରନ୍ତି । ଏଇମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ । ଏଇମାନଙ୍କ ପାଇଁ ସେମାନଙ୍କ ପ୍ରଭୁଙ୍କ ନିକଟରେ ଅଛି ମର୍ଯ୍ୟାଦାଜନକ ସ୍ଥାନ, (ଦୋଷତ୍ରୁଟି ପାଇଁ) କ୍ଷମା, ଏବଂ ଜୀବନର ସର୍ବୋତ୍ତମ ସାଧନ । (୮/୨-୪)

**୧୬୯. ଅଲ୍ଲାହ ବୁଦ୍ଧିହୀନ ଲୋକଙ୍କର ମାର୍ଗଦର୍ଶନ କରନ୍ତି ନାହିଁ**

اِنَّ شَرَّ الدَّوَآبِّ عِنْدَ اللّٰهِ الصُّمُّ الْبُكْمُ الَّذِيْنَ لَا يَعْقِلُوْنَ ﴿٢٢﴾ وَ لَوْ عَلِمَ اللّٰهُ فِيْهِمْ خَيْرًا لَّاَسْمَعَهُمْ ؕ وَلَوْ اَسْمَعَهُمْ لَتَوَلَّوْا وَّهُمْ مُّعْرِضُوْنَ ﴿٢٣﴾

ଅଲ୍ଲାହଙ୍କ ଦୃଷ୍ଟିରେ ପ୍ରାଣୀମାନଙ୍କ ମଧ୍ୟରେ ସବୁଠାରୁ ହୀନ ହେଉଛନ୍ତି ସେହି ମୂକ ଓ ବଧିର ଲୋକମାନେ ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି ନାହିଁ । ଯଦି ଅଲ୍ଲାହ୍ ସେମାନଙ୍କଠାରେ କିଛି ଭଲ ଗୁଣ ଦେଖନ୍ତେ, ତେବେ ନିଶ୍ଚୟ ସେମାନଙ୍କୁ (ତାଙ୍କ ବାଣୀ) ଶୁଣିବାର ସୌଭାଗ୍ୟ ପ୍ରଦାନ କରନ୍ତେ । ମାତ୍ର ଏବେ ଯଦି ସେମାନଙ୍କୁ ଶୁଣାଇ ଦିଆଯାଏ, ସେମାନେ ମୁହଁ ଫେରାଇ ନେବେ । (୮/୨୨-୨୩)

**୧୭୦. ବିଶ୍ୱାସଘାତକତା କରନାହିଁ**

يٰٓاَيُّهَا الَّذِيْنَ اٰمَنُوْا لَا تَخُوْنُوا اللّٰهَ وَ الرَّسُوْلَ وَ تَخُوْنُوْٓا اَمٰنٰتِكُمْ وَاَنْتُمْ تَعْلَمُوْنَ ﴿٢٧﴾

ହେ ମୁସଲମାନମାନେ ! ଅଲ୍ଲାହ ଓ ତାଙ୍କ ବାର୍ତ୍ତାବହଙ୍କ ପ୍ରତି ବିଶ୍ୱାସଘାତକତା କରନାହିଁ ଏବଂ ଜାଣିଶୁଣି ପରସ୍ପରର ଅମାନତ ଆତ୍ମସାତ୍ କରନାହିଁ । (୮/୨୭)

**୧୭୧. ଧନ ଓ ପରିବାର ତୁମ ପରୀକ୍ଷାର ମାଧ୍ୟମ**

ଜାଣିରଖ, ତୁମମାନଙ୍କର ଧନସଂପତ୍ତି ଓ ସନ୍ତାନ-ସନ୍ତତି ତୁମମାନଙ୍କ ପରୀକ୍ଷାର ମାଧ୍ୟମ ଏବଂ (ପୁଣ୍ୟବାନ ଲୋକଙ୍କ ପାଇଁ) ଅଲ୍ଲାହଙ୍କ ନିକଟରେ ଭଲ ପୁରସ୍କାର ରହିଛି । (୮/୨୮)

وَاعْلَمُوْٓا اَنَّمَآ اَمْوَالُكُمْ وَاَوْلَادُكُمْ فِتْنَةٌ ۙ وَّ
اَنَّ اللّٰهَ عِنْدَهٗٓ اَجْرٌ عَظِيْمٌ ﴿٢٨﴾

**୧୭୨. ସଂଘର୍ଷ ବେଳେ ଅବିଚଳିତ ରୁହ**

ହେ ସଦ୍‌ବିଶ୍ୱାସୀମାନେ! ଯଦି କୌଣସି ଶତ୍ରୁ ଗୋଷ୍ଠୀ ସହ ତୁମମାଙ୍କର ସଂଘର୍ଷ ହୁଏ, ତେବେ (ସେ ସମୟରେ) ଦୃଢ଼ ଓ ଅବିଚଳିତ ରୁହ ଏବଂ ଅଲ୍ଲାହଙ୍କୁ ଅଧିକରୁ ଅଧିକ ସ୍ମରଣ କର । ତା'ହେଲେ ତୁମେମାନେ ସଫଳ ହେବ । (୮/୪୫)

يٰٓاَيُّهَا الَّذِيْنَ اٰمَنُوْٓا اِذَا لَقِيْتُمْ فِئَةً فَاثْبُتُوْا وَ
اذْكُرُوا اللّٰهَ كَثِيْرًا لَّعَلَّكُمْ تُفْلِحُوْنَ ﴿٤٥﴾

**୧୭୩. ଅନ୍ତର୍ଦ୍ୱନ୍ଦ ତୁମମାନଙ୍କୁ ଦୁର୍ବଳ କରିଦେବ**

ଅଲ୍ଲାହଙ୍କର ଆଜ୍ଞା ମାନ ଏବଂ ତାଙ୍କ ଧର୍ମଦୂତଙ୍କ ଆଜ୍ଞା ମାନ ଆଉ ପରସ୍ପର ମଧ୍ୟରେ ବିବାଦ କରନାହିଁ । ଏହା କଲେ ତୁମମାନଙ୍କ ମନୋବଳ ଭାଂଗିଯିବ ଆଉ ତୁମେମାନେ ଶକ୍ତିହୀନ ହୋଇ ପଡ଼ିବ । ଧୈର୍ଯ୍ୟ ଅବଲମ୍ବନ କର । ଅଲ୍ଲାହ୍ ଅବଶ୍ୟ ଧୈର୍ଯ୍ୟବାନ ବ୍ୟକ୍ତିମାନଙ୍କ ସହିତ ଥାଆନ୍ତି । (୮/୪୬)

وَاَطِيْعُوا اللّٰهَ وَرَسُوْلَهٗ وَلَا تَنَازَعُوْا فَتَفْشَلُوْا
وَ تَذْهَبَ رِيْحُكُمْ وَ اصْبِرُوْا ۗ اِنَّ اللّٰهَ مَعَ
الصّٰبِرِيْنَ ﴿٤٦﴾

**୧୭୪. ଯୁଦ୍ଧ ଅପେକ୍ଷା ସନ୍ଧି ଭଲ**

ଯଦି ଶତ୍ରୁପକ୍ଷ ସନ୍ଧି ପାଇଁ ଆଗ୍ରହ ପ୍ରକାଶ କରନ୍ତି, ତେବେ ତୁମେମାନେ ମଧ୍ୟ ସେଥିରେ ସମ୍ମତ ହୋଇଯାଅ ଏବଂ ଅଲ୍ଲାହଙ୍କ ପ୍ରତି ଭରସା ରଖ । ନିଶ୍ଚିତ ଭାବରେ ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । (୮/୬୧)

وَ اِنْ جَنَحُوْا لِلسَّلْمِ فَاجْنَحْ لَهَا وَ تَوَكَّلْ عَلَى
اللّٰهِ ۗ اِنَّهٗ هُوَ السَّمِيْعُ الْعَلِيْمُ ﴿٦١﴾

**୧୭୫. ଭକ୍ତକୁ ସବୁଠୁ ପ୍ରିୟ ତା' ପରମେଶ୍ୱର**

(ହେ ଈଶ୍ୱରଦୂତ!) କହିଦିଅ, "ତୁମ ପିତା, ତୁମ ପୁତ୍ର, ତୁମ ଭାଇ, ତୁମ ପତ୍ନୀ, ତୁମ ଜ୍ଞାତି-କୁଟୁମ୍ବ ଏବଂ ତୁମମାନଙ୍କର ଅର୍ଜିତ ଧନ ଓ ତୁମ ବ୍ୟବସାୟ, ଯାହା ମାନ୍ଦା ପଡ଼ିଯିବ ବୋଲି ତୁମେମାନେ ଆଶଙ୍କା କର ଏବଂ ତୁମର ପ୍ରିୟ ଘର, ଯଦି ତୁମମାନଙ୍କୁ ଅଲ୍ଲାହ୍ ଓ ତାଙ୍କ ଧର୍ମଦୂତଙ୍କ ଅପେକ୍ଷା ଏବଂ ତାଙ୍କ ମାର୍ଗରେ ସଂଘର୍ଷ କରିବା ଅପେକ୍ଷା ଅଧିକ ପ୍ରିୟ ହୋଇଥାଏ, ତେବେ ଅଲ୍ଲାହଙ୍କ ନିଷ୍ପତ୍ତିର (ଅର୍ଥାତ୍ ଶାସ୍ତିର) ପ୍ରତୀକ୍ଷା କର । ଅଲ୍ଲାହ୍ ଅବଜ୍ଞାକାରୀମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ ।

(୯/୨୪)

قُلْ اِنْ كَانَ اٰبَآؤُكُمْ وَ اَبْنَآؤُكُمْ وَ اِخْوَانُكُمْ وَ
اَزْوَاجُكُمْ وَعَشِيْرَتُكُمْ وَاَمْوَالُ ِۨاقْتَرَفْتُمُوْهَا
وَ تِجَارَةٌ تَخْشَوْنَ كَسَادَهَا وَ مَسٰكِنُ تَرْضَوْنَهَآ
اَحَبَّ اِلَيْكُمْ مِّنَ اللّٰهِ وَ رَسُوْلِهٖ وَ جِهَادٍ فِيْ
سَبِيْلِهٖ فَتَرَبَّصُوْا حَتّٰى يَاْتِيَ اللّٰهُ بِاَمْرِهٖ ۗ وَاللّٰهُ لَا
يَهْدِى الْقَوْمَ الْفٰسِقِيْنَ ﴿٢٤﴾

**୧୭୬. ଧର୍ମଗୁରୁ ବା ସାଧୁସନ୍ଥଙ୍କୁ ଈଶ୍ୱର କରିଦିଅ ନାହିଁ**

ଏମାନେ ଅଲ୍ଲାହଙ୍କୁ ଛାଡ଼ି ନିଜର ଧର୍ମଗୁରୁ ଓ ସନ୍ଥମାନଙ୍କୁ ଈଶ୍ୱର ମାନି ନେଇଛନ୍ତି ଏବଂ ମରିୟମପୁତ୍ର ଯିଶୁଙ୍କୁ ମଧ୍ୟ । ଅଥଚ ସେମାନଙ୍କୁ ଆଦେଶ ଦିଆ ଯାଇଥିଲା ଯେ ସେମାନେ କେବଳ ଏକ ଈଶ୍ୱରଙ୍କର ଉପାସନା କରନ୍ତୁ । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହନ୍ତି । ଏମାନଙ୍କ ବହୁଈଶ୍ୱରବାଦର ଆରୋପରୁ ଅଲ୍ଲାହ୍ ପବିତ୍ର । (୯/୩୧)

اِتَّخَذُوْٓا اَحْبَارَهُمْ وَ رُهْبَانَهُمْ اَرْبَابًا مِّنْ دُوْنِ
اللّٰهِ وَ الْمَسِيْحَ ابْنَ مَرْيَمَ ۚ وَ مَآ اُمِرُوْٓا اِلَّا
لِيَعْبُدُوْٓا اِلٰـهًا وَّاحِدًا ۚ لَآ اِلٰهَ اِلَّا هُوَ ؕ سُبْحٰنَهٗ
عَمَّا يُشْرِكُوْنَ ﴿۳۱﴾

**୧୭୭.ଭଣ୍ଡ ଗୁରୁମାନେ ଲୋକଙ୍କ ଧନ ଖାଇଯାଆନ୍ତି**

ହେ ସଦ୍‌ବିଶ୍ୱାସୀମାନେ ! (ଜାଣିରଖ) ଅଧିକାଂଶ ଧର୍ମଜ୍ଞ ଓ ସନ୍ଥ ଲୋକମାନଙ୍କର ଧନ ଅସଦ୍ ଉପାୟରେ ଖାଇ ଯାଆନ୍ତି ଏବଂ ସେମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ଅଟକାଇ ଦିଅନ୍ତି । (୯/୩୪)

يٰۤاَيُّهَا الَّذِيْنَ اٰمَنُوْٓا اِنَّ كَثِيْرًا مِّنَ الْاَحْبَارِ وَ
الرُّهْبَانِ لَيَاْكُلُوْنَ اَمْوَالَ النَّاسِ بِالْبَاطِلِ وَ
يَصُدُّوْنَ عَنْ سَبِيْلِ اللّٰهِ ؕ

**୧୭୮. ଧନ ସଂଚି ରଖିଲେ ନର୍କ ଯନ୍ତ୍ରଣା ଭୋଗିବ**

ଯେଉଁମାନେ ସୁନାରୂପା ସଂଚୟ କରି ରଖନ୍ତି ଏବଂ ତାକୁ ଅଲ୍ଲାହଙ୍କ ମାର୍ଗରେ ଖର୍ଚ୍ଚ କରନ୍ତି ନାହିଁ, ସେମାନଙ୍କୁ (ସେହି ଦିନର) କଠୋର ଶାସ୍ତି ବିଷୟରେ ସୁସମ୍ବାଦ ଦିଅ, ଯେଉଁଦିନ ସେହି ଧନକୁ ନରକର ନିଆଁରେ ଗରମ କରି ସେଥିରେ ସେମାନଙ୍କ ମୁହଁ, ପାର୍ଶ୍ୱ ଓ ପିଠିରେ ଚେଙ୍କ ଦିଆଯିବ (ଏବଂ କୁହାଯିବ) "ଏହା (ତୁମମାନଙ୍କର) ସେହି ଧନ, ଯାହାକୁ ତୁମେ ନିଜ ପାଇଁ ସଂଚୟ କରି ରଖିଥିଲ । ସୁତରାଂ, ଯାହା ଯୋଡ଼ି ଯୋଡ଼ି ରଖୁଥିଲ, ଏବେ ତା'ର ମଜା ଚାଖ ।"

(୯/୩୪-୩୫)

وَ الَّذِيْنَ يَكْنِزُوْنَ الذَّهَبَ وَ الْفِضَّةَ وَ لَا يُنْفِقُوْ
نَهَا فِيْ سَبِيْلِ اللّٰهِ ۙ فَبَشِّرْهُمْ بِعَذَابٍ اَلِيْمٍ ﴿۳۴﴾ يَّوْمَ
يُحْمٰى عَلَيْهَا فِيْ نَارِ جَهَنَّمَ فَتُكْوٰى بِهَا جِبَاهُهُمْ
وَ جُنُوْبُهُمْ وَ ظُهُوْرُهُمْ ؕ هٰذَا مَا كَنَزْتُمْ لِاَنْفُسِكُمْ
فَذُوْقُوْا مَا كُنْتُمْ تَكْنِزُوْنَ ﴿۳۵﴾

**୧୭୯. ଦାନ (ଜକାତ୍) କାହା ପାଇଁ ଉଦ୍ଦିଷ୍ଟ ?**

ଦାନ (ଜକାତ୍) ପ୍ରକୃତରେ ଉଦ୍ଦିଷ୍ଟ ଦରିଦ୍ର ଓ ଅଭାବଗ୍ରସ୍ତ ଲୋକମାନଙ୍କ ପାଇଁ, ଦାନ ସଂଗ୍ରହ ହେତୁ ନିଯୁକ୍ତ କର୍ମଚାରୀମାନଙ୍କ ପାଇଁ ଆଉ ସେମାନଙ୍କ ପାଇଁ, ଯେଉଁମାନଙ୍କ ମନ ଖୁସି କରିବା ଅଭିପ୍ରାୟ ଥାଏ ଏବଂ (କ୍ରୀତଦାସମାନଙ୍କୁ) ମୁକ୍ତ କରିବା ପାଇଁ, ଋଣଗ୍ରସ୍ତମାନଙ୍କ ପାଇଁ, ଅଲ୍ଲାହଙ୍କ ମାର୍ଗରେ ବ୍ୟବହାର କରିବା ପାଇଁ ତଥା (ଅସହାୟ) ପଥଚାରୀମାନଙ୍କର ସହାୟତା ପାଇଁ । ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ଏକ ଅନିବାର୍ଯ୍ୟ ଆଦେଶ ଏବଂ (ମନେରଖ) ଅଲ୍ଲାହ୍ ସର୍ବଜ୍ଞ ଓ ତତ୍ତ୍ୱଦର୍ଶୀ । (୯/୬୦)

اِنَّمَا الصَّدَقٰتُ لِلْفُقَرَآءِ وَ الْمَسٰكِيْنِ وَ الْعٰمِلِيْنَ
عَلَيْهَا وَ الْمُؤَلَّفَةِ قُلُوْبُهُمْ وَ فِي الرِّقَابِ وَ
الْغٰرِمِيْنَ وَ فِيْ سَبِيْلِ اللّٰهِ وَ ابْنِ السَّبِيْلِ ؕ
فَرِيْضَةً مِّنَ اللّٰهِ ؕ وَ اللّٰهُ عَلِيْمٌ حَكِيْمٌ ﴿۶۰﴾

## ୧୮୦. କପଟାଚାରୀମାନେ ନର୍କଦଣ୍ଡ ଭୋଗିବେ

وَعَدَ اللّٰهُ الْمُنٰفِقِيْنَ وَ الْمُنٰفِقٰتِ وَ الْكُفَّارَ نَارَ جَهَنَّمَ خٰلِدِيْنَ فِيْهَا ؕ هِيَ حَسْبُهُمْ ۚ وَلَعَنَهُمُ اللّٰهُ ۚ وَلَهُمْ عَذَابٌ مُّقِيْمٌ ۝٦٨

କପଟୀ ପୁରୁଷ ଓ କପଟୀ ନାରୀ ତଥା ଅବିଶ୍ୱାସକାରୀମାନଙ୍କ ପାଇଁ ଅଲ୍ଲାହ୍ ନର୍କାଗ୍ନିର ସଂକଳ୍ପ ନେଇଛନ୍ତି । ସେମାନେ ସେଥିରେ ସର୍ବଦା ରହିବେ । ଏହାହିଁ ସେମାନଙ୍କ ପାଇଁ ଉପଯୁକ୍ତ (ସ୍ଥାନ) । ସେମାନଙ୍କୁ ଅଲ୍ଲାହଙ୍କର ଧିକ୍କାର ଏବଂ ସେମାନଙ୍କ ନିମନ୍ତେ ଚିରସ୍ଥାୟୀ ଶାସ୍ତି ପ୍ରସ୍ତୁତ ରହିଛି । (୯/୬୮)

## ୧୮୧. ବିପଦ ଟଳିଗଲେ ତୁମେ ଈଶ୍ୱରଙ୍କୁ ଭୁଲିଯାଅ

وَ اِذَا مَسَّ الْاِنْسَانَ الضُّرُّ دَعَانَا لِجَنْۢبِهٖۤ اَوْ قَاعِدًا اَوْ قَآئِمًا ۚ فَلَمَّا كَشَفْنَا عَنْهُ ضُرَّهٗ مَرَّ كَاَنْ لَّمْ يَدْعُنَاۤ اِلٰى ضُرٍّ مَّسَّهٗ ؕ

ଯେତେବେଳେ ମନୁଷ୍ୟ ପ୍ରତି କୌଣସି ବିପଦ ଆସେ, ସେ ଶୋଇବା, ବସିବା ଓ ଛିଡ଼ା ହୋଇଥିବା ଅବସ୍ଥାରେ ମଧ୍ୟ ଆମ୍ଭଙ୍କୁ ଡାକ ପକାଏ । ପୁଣି ଯେତେବେଳେ ଆମ୍ଭେ ତା' ଦୁଃଖ ଦୂର କରିଦେଉ, ସେ ଏଭଳି ହୋଇଯାଏ, ଯେପରି ବିପଦରେ ଆମ୍ଭଙ୍କୁ ଆଦୌ ଡାକି ନଥିଲା । (୧୦/୧୨)

## ୧୮୨. ମାନବସମାଜ ଗୋଟିଏ ସଂପ୍ରଦାୟ ଥିଲା

وَمَا كَانَ النَّاسُ اِلَّاۤ اُمَّةً وَّاحِدَةً فَاخْتَلَفُوْا ؕ وَ لَوْ لَا كَلِمَةٌ سَبَقَتْ مِنْ رَّبِّكَ لَقُضِيَ بَيْنَهُمْ فِيْمَا فِيْهِ يَخْتَلِفُوْنَ ۝١٩

(ଆରମ୍ଭରେ) ମାନବସମାଜ ଗୋଟିଏ (ଧର୍ମ) ସଂପ୍ରଦାୟ ଥିଲା, ମାତ୍ର (ପରେ) ଲୋକମାନେ ମତଭେଦ ସୃଷ୍ଟି କଲେ । ଯଦି ତୁମ ପ୍ରଭୁଙ୍କ ଦ୍ୱାରା ପୂର୍ବରୁ ଗୋଟିଏ କଥା ନିର୍ଦ୍ଧାରିତ ହୋଇ ନଥାଆନ୍ତା, ତେବେ ଯେଉଁ ବିଷୟରେ ସେମାନେ ମତଭେଦ କରୁଛନ୍ତି, ତାହାର ନିଷ୍ପତ୍ତି (ଏହି ସଂସାରରେ) ହୋଇ ଯାଇଥାଆନ୍ତା । (୧୦/୧୯)

## ୧୮୩. ପାର୍ଥିବ ବସ୍ତୁର ସୁଖ କ୍ଷଣସ୍ଥାୟୀ

اِنَّمَا مَثَلُ الْحَيٰوةِ الدُّنْيَا كَمَآءٍ اَنْزَلْنٰهُ مِنَ السَّمَآءِ فَاخْتَلَطَ بِهٖ نَبَاتُ الْاَرْضِ مِمَّا يَاْكُلُ النَّاسُ وَ الْاَنْعَامُ ؕ حَتّٰۤى اِذَاۤ اَخَذَتِ الْاَرْضُ زُخْرُفَهَا وَ ازَّيَّنَتْ وَ ظَنَّ اَهْلُهَاۤ اَنَّهُمْ قٰدِرُوْنَ عَلَيْهَاۤ ۙ اَتٰىهَاۤ اَمْرُنَا لَيْلًا اَوْ نَهَارًا فَجَعَلْنٰهَا حَصِيْدًا كَاَنْ لَّمْ تَغْنَ بِالْاَمْسِ ؕ كَذٰلِكَ نُفَصِّلُ

ଭୌତିକ ଜୀବନର ଦୃଷ୍ଟାନ୍ତ ହେଉଛି, ଯେପରି ଆକାଶରୁ ଆମ୍ଭେ ମେଘ ବର୍ଷା କରୁ, ଯାହାଫଳରେ ଜମିରେ ମଣିଷ ଓ ପଶୁ ଖାଉଥିବା ଶସ୍ୟ ଖୁବ୍ ଫଳେ । ଠିକ୍ ଯେତେବେଳେ କ୍ଷେତ ନିଜର ପୂର୍ଣ୍ଣ ସବୁଜିମା ବିସ୍ତାର କରେ ଆଉ (ଖୁବ) ସୁନ୍ଦର ଦେଖାଯାଏ ଏବଂ ଜମି ମାଲିକ ଭାବି ନିଅନ୍ତି ଯେ ଏବେ ଏହା ପୁରାପୁରି ସେମାନଙ୍କର (ସଂପତ୍ତି) ହୋଇଗଲା, ସେତେବେଳେ ଆମ୍ଭ ଆଜ୍ଞାରୁ କୌଣସି ଦିନ ବା ରାତି ବେଳେ ଫସଲ ପ୍ରତି ହଠାତ୍ କୌଣସି ବିପତ୍ତି ମାଡ଼ିଆସେ । ପୁଣି ଆମ୍ଭେ ତାହାକୁ ଫସଲକଟା କ୍ଷେତ ପରି ଏଭଳି ସଫା କରିଦେଉ, ଯେପରି କାଲି ସେହି ଯାଗାରେ କିଛି ନଥିଲା । ଆମ୍ଭେ ଏହିଭଳି ପରିଷ୍କାର ଭାବରେ ନିଜ ନିଦର୍ଶନଗୁଡ଼ିକୁ

ସେଇମାନଙ୍କ ପାଇଁ ବର୍ଣ୍ଣନା କରିଥାଉ, ଯେଉଁମାନେ (ଆମ୍ଭ କଥା ପ୍ରତି) ଧ୍ୟାନ ଦିଅନ୍ତି । (୧୦/୨୪)

الْاٰيٰتِ لِقَوْمٍ يَّتَفَكَّرُوْنَ ﴿٢٤﴾

### ୧୮୪. ପ୍ରକୃତ ଈଶ୍ୱର କିଏ ?

(ସେମାନଙ୍କୁ ପଚାର) "କିଏ ଧରିତ୍ରୀ ଓ ଆକାଶରୁ ତୁମମାନଙ୍କୁ ଆହାର ଯୋଗାଏ ? ତୁମମାନଙ୍କ ଶ୍ରବଣଶକ୍ତି ଓ ଦୃଷ୍ଟିଶକ୍ତି କାହା ନିୟନ୍ତ୍ରଣରେ ଅଛି ? କିଏ ସଜୀବକୁ ନିର୍ଜୀବ ମଧ୍ୟରୁ ଏବଂ ନିର୍ଜୀବକୁ ସଜୀବ ମଧ୍ୟରୁ ବାହାର କରେ ଏବଂ କିଏ (ବ୍ରହ୍ମାଣ୍ଡ) ବ୍ୟବସ୍ଥା ପରିଚାଳନା କରେ ?" ସେମାନେ ନିଶ୍ଚୟ ଉତ୍ତର ଦେବେ, "ଅଲ୍ଲାହ୍" । ପଚାର, "ପୁଣି ତୁମେମାନେ କାହିଁକି ତାଙ୍କୁ ଭୟ କରୁନାହଁ ? ଏଇ ହେଉଛନ୍ତି ଅଲ୍ଲାହ୍, ଯିଏ ତୁମମାନଙ୍କର ପ୍ରକୃତ ଈଶ୍ୱର । ସତ୍ୟ ସ୍ପଷ୍ଟ ହୋଇଗଲା ପରେ ଏବେ କେବଳ ମିଥ୍ୟା ବ୍ୟତୀତ ଆଉ କ'ଣ ବାକି ରହୁଛି ? ପୁଣି ତୁମେମାନେ କୁଆଡ଼େ ଓଲଟା ବାଟରେ ଚାଲି ଯାଉଛ ?" (୧୦/୩୧-୩୨)

قُلْ مَنْ يَّرْزُقُكُمْ مِّنَ السَّمَآءِ وَ الْاَرْضِ اَمَّنْ
يَّمْلِكُ السَّمْعَ وَ الْاَبْصَارَ وَ مَنْ يُّخْرِجُ الْحَيَّ مِنَ
الْمَيِّتِ وَ يُخْرِجُ الْمَيِّتَ مِنَ الْحَيِّ وَ مَنْ يُّدَبِّرُ
الْاَمْرَ ؕ فَسَيَقُوْلُوْنَ اللّٰهُ ۚ فَقُلْ اَفَلَا تَتَّقُوْنَ ﴿٣١﴾
فَذٰلِكُمُ اللّٰهُ رَبُّكُمُ الْحَقُّ ۚ فَمَاذَا بَعْدَ الْحَقِّ اِلَّا
الضَّلٰلُ ۖۚ فَاَنّٰى تُصْرَفُوْنَ ﴿٣٢﴾

### ୧୮୫. କୁରଆନରେ ପୂର୍ବଗ୍ରନ୍ଥମାନଙ୍କର ଶିକ୍ଷା ରହିଛି

ଏହି କୁରଆନ୍ ଏଭଳି ଗ୍ରନ୍ଥ ନୁହେଁ ଯେ ଏହାକୁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ରଚନା କରିପାରିବ, ବରଂ ପୂର୍ବରୁ ପ୍ରକଟ ହୋଇଥିବା ଦିବ୍ୟଗ୍ରନ୍ଥଗୁଡ଼ିକର ଏହା ପୁଷ୍ଟି କରେ ଏବଂ ଏଥିରେ ସେହି ଗ୍ରନ୍ଥଗୁଡ଼ିକର ଶିକ୍ଷା ବିସ୍ତୃତ ଭାବରେ ରହିଛି । ନିଃସନ୍ଦେହରେ ଏହା ସର୍ବଲୋକେଶ୍ୱର ଅଲ୍ଲାହଙ୍କର ଗ୍ରନ୍ଥ । (୧୦/୩୭)

وَ مَا كَانَ هٰذَا الْقُرْاٰنُ اَنْ يُّفْتَرٰى مِنْ دُوْنِ اللّٰهِ
وَلٰكِنْ تَصْدِيْقَ الَّذِيْ بَيْنَ يَدَيْهِ وَ تَفْصِيْلَ
الْكِتٰبِ لَا رَيْبَ فِيْهِ مِنْ رَّبِّ الْعٰلَمِيْنَ ﴿٣٧﴾

### ୧୮୬.ମାନବ ପକ୍ଷରେ କୁରଆନର ରଚନା ଅସମ୍ଭବ

କ'ଣ ଏମାନେ କହୁଛନ୍ତି ଯେ ସେ (ମହାମାନ୍ୟ ମୁହମ୍ମଦ) ନିଜେ ଏହି କୁରଆନ ଲେଖିଦେଇଛନ୍ତି ? କହିଦିଅ, "ଯଦି ତୁମେମାନେ (ପ୍ରକୃତରେ) ସତ୍ୟବାଦୀ, ତେବେ ଏହାରି ପରି ଗୋଟିଏ ଅଧ୍ୟାୟ ରଚନା କରିଆଣ ଏବଂ (ସାହାଯ୍ୟ ପାଇଁ) ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଯାହାକୁ ଚାହଁ ଡାକିଆଣ ।" (୧୦/୩୮)

اَمْ يَقُوْلُوْنَ افْتَرٰىهُ ؕ قُلْ فَاْتُوْا بِسُوْرَةٍ مِّثْلِهٖ وَ
ادْعُوْا مَنِ اسْتَطَعْتُمْ مِّنْ دُوْنِ اللّٰهِ اِنْ كُنْتُمْ
صٰدِقِيْنَ ﴿٣٨﴾

### ୧୮୭. ଈଶ୍ୱର କାହାରି ପ୍ରତି ଅନ୍ୟାୟ କରନ୍ତି ନାହିଁ

ବାସ୍ତବରେ ଅଲ୍ଲାହ୍ ମନୁଷ୍ୟମାନଙ୍କ ପ୍ରତି ତିଳେ ହେଲେ ଅନ୍ୟାୟ କରନ୍ତି ନାହିଁ, ମାତ୍ର ଲୋକେ ନିଜ ପ୍ରତି ନିଜେ ଅନ୍ୟାୟ କରିଥାଆନ୍ତି । (୧୦/୪୪)

اِنَّ اللّٰهَ لَا يَظْلِمُ النَّاسَ شَيْـًٔا وَّلٰكِنَّ النَّاسَ
اَنْفُسَهُمْ يَظْلِمُوْنَ ﴿٤٤﴾

**୧୮୮. ଅଲ୍ଲାହ୍ ସର୍ବଦ୍ରଷ୍ଟା**

ତୁମେ ଯେଉଁ ଅବସ୍ଥାରେ ଥାଅ ବା କୁରଆନପାଠ କରୁଥାଅ ବା ତୁମେମାନେ ଯାହାକିଛି କର୍ମ କରନା କାହିଁକି, ଯେତେବେଳେ ସେଥିରେ ମଗ୍ନ ହୋଇଯାଅ, ଆମ୍ଭେ ତୁମମାନଙ୍କୁ ଦେଖୁଥାଉ । ଧରିତ୍ରୀ ଓ ଅକାଶରେ ଅଣୁ ପରିମାଣରେ ଏଭଳି କିଛି ନାହିଁ ଯାହା ତୁମ ପ୍ରଭୁଙ୍କଠାରୁ ଛପି ଯାଇପାରେ । ଏହାଠାରୁ ଛୋଟ ହେଉ ବା ଏହାଠାରୁ ବଡ଼, ପ୍ରତ୍ୟେକ କଥା ଏକ ସ୍ପଷ୍ଟ ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିଛି । (୧୦/୬୧)

وَ مَا تَكُوْنُ فِيْ شَاْنٍ وَّ مَا تَتْلُوْا مِنْهُ مِنْ قُرْاٰنٍ وَّلَا تَعْمَلُوْنَ مِنْ عَمَلٍ اِلَّا كُنَّا عَلَيْكُمْ شُهُوْدًا اِذْ تُفِيْضُوْنَ فِيْهِ ؕ وَ مَا يَعْزُبُ عَنْ رَّبِّكَ مِنْ مِّثْقَالِ ذَرَّةٍ فِي الْاَرْضِ وَلَا فِي السَّمَآءِ وَلَآ اَصْغَرَ مِنْ ذٰلِكَ وَلَآ اَكْبَرَ اِلَّا فِيْ كِتٰبٍ مُّبِيْنٍ ﴿٦١﴾

**୧୮୯. ଅଲ୍ଲାହଙ୍କ ମିତ୍ର କିଏ ?**

ଶୁଣ ! ଯେଉଁମାନେ ଅଲ୍ଲାହଙ୍କର ମିତ୍ର, ସେମାନଙ୍କର କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ । ଏମାନେ ସେହି ଲୋକ, ଯେଉଁମାନେ ଆସ୍ଥା ରଖିଲେ ଏବଂ ଦୁଷ୍କର୍ମରୁ ନିବୃତ୍ତ ରହିଲେ । ଇହଲୋକ ଓ ପରଲୋକ, ଉଭୟଲୋକ ପାଇଁ ସେମାନଙ୍କ ପାଇଁ ଭଲ ଖବର । ଅଲ୍ଲାହଙ୍କ ବାଣୀ ବଦଳେ ନାହିଁ । ଏହାହିଁ ସବୁଠାରୁ ବଡ଼ ସଫଳତା । (୧୦/୬୨-୬୪)

اَلَآ اِنَّ اَوْلِيَآءَ اللّٰهِ لَا خَوْفٌ عَلَيْهِمْ وَ لَا هُمْ يَحْزَنُوْنَ ﴿٦٢﴾ الَّذِيْنَ اٰمَنُوْا وَ كَانُوْا يَتَّقُوْنَ ﴿٦٣﴾ لَهُمُ الْبُشْرٰى فِي الْحَيٰوةِ الدُّنْيَا وَ فِي الْاٰخِرَةِ ؕ لَا تَبْدِيْلَ لِكَلِمٰتِ اللّٰهِ ؕ ذٰلِكَ هُوَ الْفَوْزُ الْعَظِيْمُ ﴿٦٤﴾

**୧୯୦. ଅନୁମାନ କରି ଉପାସନା କରନାହିଁ**

ମନେରଖ, ଯେଉଁମାନେ ଅନ୍ତରୀକ୍ଷରେ ବାସ କରନ୍ତି ଏବଂ ଯେଉଁମାନେ ପୃଥିବୀରେ ବାସ କରନ୍ତି, ସମସ୍ତଙ୍କର ମାଲିକ ଅଲ୍ଲାହ୍ । ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନେ ଅନ୍ୟ (କଳ୍ପିତ) ଉପାସ୍ୟମାନଙ୍କୁ ଡ଼ାକନ୍ତି, ସେମାନେ ଅନୁମାନ ପଛରେ ଧାଇଁଛନ୍ତି ଆଉ କେବଳ ଅଟକଳ କରୁଛନ୍ତି । (୧୦/୬୬)

اَلَآ اِنَّ لِلّٰهِ مَنْ فِي السَّمٰوٰتِ وَمَنْ فِي الْاَرْضِ ؕ وَمَا يَتَّبِعُ الَّذِيْنَ يَدْعُوْنَ مِنْ دُوْنِ اللّٰهِ شُرَكَآءَ ؕ اِنْ يَّتَّبِعُوْنَ اِلَّا الظَّنَّ وَاِنْ هُمْ اِلَّا يَخْرُصُوْنَ ﴿٦٦﴾

**୧୯୧. ମିଶରର ଶାସକ ଫ୍ୟାରୋର ଶବ ସୁରକ୍ଷିତ**

ସୁତରାଂ, ଆଜି ଆମ୍ଭେ ତୋ'ର (ଅର୍ଥାତ୍ ଫ୍ୟାରୋର) ମରଶରୀରକୁ (ସମୁଦ୍ରରୁ) ଉଦ୍ଧାର କରିନେବୁ, ଯାହାଫଳରେ ତୁ ପରବର୍ତ୍ତୀ ଲୋକମାନଙ୍କ ପାଇଁ ଏକ ନିଦର୍ଶନ ହୋଇ ରହିବୁ । ବାସ୍ତବରେ ଅଧିକାଂଶ ଲୋକ ଆମ୍ଭର ନିଦର୍ଶନ ପ୍ରତି ଧ୍ୟାନ ଦିଅନ୍ତି ନାହିଁ । (୧୦/୯୨)

فَالْيَوْمَ نُنَجِّيْكَ بِبَدَنِكَ لِتَكُوْنَ لِمَنْ خَلْفَكَ اٰيَةً ؕ وَ اِنَّ كَثِيْرًا مِّنَ النَّاسِ عَنْ اٰيٰتِنَا لَغٰفِلُوْنَ ﴿٩٢﴾

**୧୯୨. ଈଶ୍ୱର ଚାହିଁଲେ ସମଗ୍ର ବିଶ୍ୱ ମାନି ନିଅନ୍ତା**

ଯଦି ତୁମ ପରମେଶ୍ୱର ଇଚ୍ଛା କରନ୍ତେ, ସମଗ୍ର ବିଶ୍ୱବାସୀ ଅବଶ୍ୟ

وَلَوْ شَآءَ رَبُّكَ لَاٰمَنَ مَنْ فِي الْاَرْضِ كُلُّهُمْ جَمِيْعًا ؕ

ବିଶ୍ୱାସ କରନ୍ତେ । ତେବେ କ'ଣ ତୁମେ ଲୋକମାନଙ୍କୁ ସଦ୍‌-ବିଶ୍ୱାସୀ ହେବାପାଇଁ ବାଧ୍ୟ କରିବ? ଅଲ୍ଲାହଙ୍କ ଅନୁମତି ବିନା ଆସ୍ଥା ରଖିବା କୌଣସି ବ୍ୟକ୍ତି ପକ୍ଷରେ ସମ୍ଭବ ନୁହେଁ । ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି ନାହିଁ, ଅଲ୍ଲାହ ସେମାନଙ୍କୁ ଅଶୁଦ୍ଧତା ମଧ୍ୟରେ ରହିବାକୁ ଛାଡ଼ିଦିଅନ୍ତି । (୧୦/୯୯-୧୦୦)

اَفَاَنۡتَ تُكۡرِهُ النَّاسَ حَتّٰى يَكُوۡنُوۡا مُؤۡمِنِيۡنَ ﴿۹۹﴾
وَ مَا كَانَ لِنَفۡسٍ اَنۡ تُؤۡمِنَ اِلَّا بِاِذۡنِ اللّٰهِ ؕ وَ
يَجۡعَلُ الرِّجۡسَ عَلَى الَّذِيۡنَ لَا يَعۡقِلُوۡنَ ﴿۱۰۰﴾

## ୧୯୩. ସେ ସଦ୍‌ବିଶ୍ୱାସୀମାନଙ୍କୁ ରକ୍ଷା କରନ୍ତି

(ଯେତେବେଳେ ଦୈବୀବିପତ୍ତି ଆସେ) ଆମେ ନିଜ ବାର୍ତ୍ତାବହ ଏବଂ (ସେମାନଙ୍କ ପ୍ରତି) ବିଶ୍ୱାସ କରିଥିବା ଲୋକମାନଙ୍କୁ ରକ୍ଷା କରିଥାଉ । ଏହିପରି, ବିଶ୍ୱାସକାରୀମାନଙ୍କୁ ରକ୍ଷା କରିବା ଆମ୍ଭର ଦାୟିତ୍ୱ । (୧୦/୧୦୩)

ثُمَّ نُنَجِّىۡ رُسُلَنَا وَ الَّذِيۡنَ اٰمَنُوۡا كَذٰلِكَ ۚ
حَقًّا عَلَيۡنَا نُنۡجِ الۡمُؤۡمِنِيۡنَ ﴿۱۰۳﴾

## ୧୯୪. ଏକେଶ୍ୱରବାଦ ଏକ ପ୍ରାକୃତିକ ଧର୍ମଧାରଣା

ଏକନିଷ୍ଠ ଭାବରେ ସ୍ୱଭାବଗତ (ଅର୍ଥାତ୍ ପ୍ରାକୃତିକ) ଧର୍ମର ପାଳନ କର ଆଉ ବହୁଦେବବାଦୀ ହୁଅନାହିଁ । ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଡ଼ାକନାହିଁ, ଯେଉଁମାନେ ତୁମର କୌଣସି ଲାଭ କରିପାରନ୍ତି ନାହିଁ ବା କ୍ଷତି କରିପାରନ୍ତି ନାହିଁ । ଯଦି ଏହା କର, ତେବେ ନିଶ୍ଚୟ ଦୁରାଚାରୀମାନଙ୍କ ମଧ୍ୟରେ ଗଣାଯିବ । (୧୦/୧୦୫-୧୦୬)

وَ اَنۡ اَقِمۡ وَجۡهَكَ لِلدِّيۡنِ حَنِيۡفًا ۚ وَ لَا تَكُوۡنَنَّ
مِنَ الۡمُشۡرِكِيۡنَ ﴿۱۰۵﴾ وَ لَا تَدۡعُ مِنۡ دُوۡنِ اللّٰهِ مَا لَا
يَنۡفَعُكَ وَ لَا يَضُرُّكَ ۚ فَاِنۡ فَعَلۡتَ فَاِنَّكَ اِذًا مِّنَ
الظّٰلِمِيۡنَ ﴿۱۰۶﴾

## ୧୯୫. ଅଲ୍ଲାହ୍ ଅପ୍ରତିରୋଧ

ଯଦି ଅଲ୍ଲାହ୍ ତୁମମାନଙ୍କୁ କୌଣସି ସଂକଟରେ ପକାଇ ଦିଅନ୍ତି, ତେବେ ସ୍ୱୟଂ ତାଙ୍କ ବ୍ୟତୀତ ଆଉ କେହି ତାହା ଦୂର କରିପାରିବ ନାହିଁ ଏବଂ ଯଦି ସେ ତୁମର କୌଣସି କଲ୍ୟାଣ କରିବାକୁ ଚାହାନ୍ତି, ତା'ହେଲେ ତାଙ୍କ ଅନୁଗ୍ରହକୁ କେହି ରୋକି ଦେଇ ପାରିବନାହିଁ । (୧୦/୧୦୭)

وَ اِنۡ يَّمۡسَسۡكَ اللّٰهُ بِضُرٍّ فَلَا كَاشِفَ لَهٗۤ اِلَّا هُوَ ۚ وَ
اِنۡ يُّرِدۡكَ بِخَيۡرٍ فَلَا رَآدَّ لِفَضۡلِهٖ ؕ يُصِيۡبُ بِهٖ مَنۡ
يَّشَآءُ مِنۡ عِبَادِهٖ ؕ وَ هُوَ الۡغَفُوۡرُ الرَّحِيۡمُ ﴿۱۰۷﴾

## ୧୯୬. ଆହାର ଯୋଗାଇବା ଅଲ୍ଲାହଙ୍କ ଦାୟିତ୍ୱ

ଧରାପୃଷ୍ଠରେ ଏଭଳି କୌଣସି ଜୀବ ନାହିଁ, ଯାହାକୁ ଆହାର ଯୋଗାଇବାର ଦାୟିତ୍ୱ ଅଲ୍ଲାହ ନେଇ ନାହାନ୍ତି ଏବଂ ସେମାନଙ୍କର ସ୍ଥାୟୀ ଓ ଅସ୍ଥାୟୀ ବାସସ୍ଥଳ ବିଷୟରେ ମଧ୍ୟ ସେ ଜାଣନ୍ତି । ପ୍ରତ୍ୟେକ କଥା ଏକ ପରିଷ୍କାର ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିଛି । (୧୧/୬)

وَ مَا مِنۡ دَآبَّةٍ فِى الۡاَرۡضِ اِلَّا عَلَى اللّٰهِ رِزۡقُهَا وَ
يَعۡلَمُ مُسۡتَقَرَّهَا وَ مُسۡتَوۡدَعَهَا ؕ كُلٌّ فِىۡ كِتٰبٍ
مُّبِيۡنٍ ﴿۶﴾

## ୧୯୭. ସୃଷ୍ଟିର ଉଦ୍ଦେଶ୍ୟ

ସେ ହିଁ ଧରିତ୍ରୀ ଓ ଆକାଶମଣ୍ଡଳକୁ ଛଅ ଦିନରେ ସୃଷ୍ଟି କଲେ, ଯେତେବେଳେ ତାଙ୍କ ସିଂହାସନ ଜଳ ଉପରେ ଥିଲା । ଏହି ଉଦ୍ଦେଶ୍ୟରେ ସେ (ସୃଷ୍ଟି) କଲେ ଯେ (ଏହା ଦ୍ୱାରା) ତୁମମାନଙ୍କୁ ପରୀକ୍ଷା କରି ଦେଖିବେ ଯେ ତୁମମାନଙ୍କ ମଧ୍ୟରୁ କିଏ ଭଲ କର୍ମ କରୁଛି । (୧୧/୭)

وَ هُوَ الَّذِىۡ خَلَقَ السَّمٰوٰتِ وَ الۡاَرۡضَ فِىۡ سِتَّةِ
اَيَّامٍ وَّ كَانَ عَرۡشُهٗ عَلَى الۡمَآءِ لِيَبۡلُوَكُمۡ اَيُّكُمۡ
اَحۡسَنُ عَمَلًا ؕ

## ୧୯୮. ସୁଖ ଓ ଦୁଃଖରେ ସ୍ଥିତପ୍ରଜ୍ଞ ରୁହ

ଯଦି ଆମ୍ଭେ ମାନବକୁ ନିଜର କୌଣସି ଅନୁଗ୍ରହର ସ୍ୱାଦ ଚଖାଇ (ପୁଣି) ସେଥିରୁ ବଂଚିତ କରିଦେଉ, ସେ ପୂରା ନିରାଶ ଓ ଅକୃତଜ୍ଞ ହୋଇଯାଏ । ଯଦି ଦୁଃଖ ପରେ (ପୁଣି) ତାକୁ ଅନୁଗ୍ରହର ସ୍ୱାଦ ଚଖାଇଦେଉ, ତେବେ ସେ କହେ, "ମୋର ଦୁଃସମୟ କଟିଗଲା" । ସେ ଗର୍ବରେ ଫୁଲିଯାଇ ଅହଂକାର କରେ । ଏହି ଦୋଷରୁ ସେଇମାନେ ମୁକ୍ତ, ଯେଉଁମାନେ (ଉଭୟ ସୁଖ ଓ ଦୁଃଖରେ) ସନ୍ତୁଷ୍ଟ ଥାଆନ୍ତି ଏବଂ ସତକର୍ମ କରନ୍ତି । ଏଇମାନଙ୍କ ପାଇଁ ଅଛି କ୍ଷମା ଓ ଭଲ ପୁରସ୍କାର । (୧୧/୯-୧୧)

وَلَـئِنۡ اَذَقۡنَا الۡاِنۡسَانَ مِنَّا رَحۡمَةً ثُمَّ نَزَعۡنٰهَا
مِنۡهُ ۚ اِنَّهٗ لَيَـئُوۡسٌ كَفُوۡرٌ ﴿۹﴾ وَلَـئِنۡ اَذَقۡنٰهُ نَعۡمَآءَ
بَعۡدَ ضَرَّآءَ مَسَّتۡهُ لَيَقُوۡلَنَّ ذَهَبَ السَّيِّاٰتُ عَنِّىۡ ؕ
اِنَّهٗ لَفَرِحٌ فَخُوۡرٌ ﴿۱۰﴾ اِلَّا الَّذِيۡنَ صَبَرُوۡا وَ عَمِلُوا
الصّٰلِحٰتِ ؕ اُولٰۤـئِكَ لَهُمۡ مَّغۡفِرَةٌ وَّ اَجۡرٌ كَبِيۡرٌ ﴿۱۱﴾

## ୧୯୯. ନାସ୍ତିକମାନଙ୍କ ଭଲ କର୍ମର ଫଳ ସଂସାରରେ ମିଳିଯାଏ

ଯିଏ ପାର୍ଥିବ ଜୀବନ ଓ ଏହାର ଐଶ୍ୱର୍ଯ୍ୟ ପାଇଁ ଲାଳାୟିତ, ଆମ୍ଭେ ତାକୁ ତା' କର୍ମର ସଂପୂର୍ଣ୍ଣ ପ୍ରତିଦାନ ଏହି ସଂସାର ମଧ୍ୟରେ ଦେଇଦେଉ ଏବଂ ସେମାନଙ୍କ ପ୍ରାପ୍ୟରୁ କିଛି କମ୍ କରାଯାଏ ନାହିଁ । ପରଲୋକରେ ଏଭଳି ଲୋକଙ୍କ ପାଇଁ କେବଳ ନର୍କର ନିଆଁ ବ୍ୟତୀତ ଆଉ କିଛି ନାହିଁ । ଏମାନେ ଯାହାକିଛି ଭଲ କର୍ମ ଏଠାରେ କଲେ, ସେସବୁ ନଷ୍ଟ ହେଲା ଏବଂ ସେମାନଙ୍କର କର୍ମସବୁ ବୃଥା ହୋଇଗଲା । (୧୧/୧୫-୧୬)

مَنۡ كَانَ يُرِيۡدُ الۡحَيٰوةَ الدُّنۡيَا وَ زِيۡنَتَهَا نُوَفِّ
اِلَيۡهِمۡ اَعۡمَالَهُمۡ فِيۡهَا وَهُمۡ فِيۡهَا لَا يُبۡخَسُوۡنَ ﴿۱۵﴾
اُولٰۤـئِكَ الَّذِيۡنَ لَيۡسَ لَهُمۡ فِى الۡاٰخِرَةِ اِلَّا النَّارُ ۖ
وَ حَبِطَ مَا صَنَعُوۡا فِيۡهَا وَ بٰطِلٌ مَّا كَانُوۡا
يَعۡمَلُوۡنَ ﴿۱۶﴾

## ୨୦୦.ସତ୍‌କର୍ମ ଅସତ୍ କର୍ମର ପ୍ରଭାବ ନଷ୍ଟ କରିଦିଏ

ଦିନର ଉଭୟ ପ୍ରାନ୍ତରେ ଏବଂ ରାତିର କିଛି ଭାଗରେ ନମାଜ (ଦୈନିକ ଉପାସନା) ପ୍ରତିଷ୍ଠା କର । ବାସ୍ତବରେ ସତକର୍ମ, ଅସତ୍ କର୍ମର ପ୍ରଭାବକୁ ନଷ୍ଟ କରିଦିଏ । ଏହା ସେମାନଙ୍କ ପାଇଁ ଏକ ଉପଦେଶ, ଯେଉଁମାନେ ଉପଦେଶ ଗ୍ରହଣ କରନ୍ତି । ସହିଷ୍ଣୁ ହୁଅ ।

وَ اَقِمِ الصَّلٰوةَ طَرَفَىِ النَّهَارِ وَ زُلَفًا مِّنَ الَّيۡلِ ؕ
اِنَّ الۡحَسَنٰتِ يُذۡهِبۡنَ السَّيِّاٰتِ ؕ ذٰلِكَ ذِكۡرٰى
لِلذّٰكِرِيۡنَ ﴿۱۱۴﴾ وَاصۡبِرۡ فَاِنَّ اللّٰهَ لَا يُضِيۡعُ اَجۡرَ

الْمُحْسِنِيْنَ ﴿١١٥﴾

ଅଲ୍ଲାହ୍ ସଦାଚାରୀମାନଙ୍କର ପୁରସ୍କାର ବ୍ୟର୍ଥ କରନ୍ତି ନାହିଁ ।
(୧୧/୧୧୪-୧୧୫)

**୨୦୧. ବିଶୃଂଖଳା ସୃଷ୍ଟିକାରୀମାନଙ୍କୁ ବାଧା ଦିଅ**

فَلَوْلَا كَانَ مِنَ الْقُرُوْنِ مِنْ قَبْلِكُمْ اُولُوْا
بَقِيَّةٍ يَّنْهَوْنَ عَنِ الْفَسَادِ فِي الْاَرْضِ اِلَّا قَلِيْلًا
مِّمَّنْ اَنْجَيْنَا مِنْهُمْ ۚ وَاتَّبَعَ الَّذِيْنَ ظَلَمُوْا مَآ
اُتْرِفُوْا فِيْهِ وَكَانُوْا مُجْرِمِيْنَ ﴿١١٦﴾

ତୁମ ପୂର୍ବଜମାନଙ୍କ ମଧ୍ୟରେ ଏଭଳି ବିଚାରଶୀଳ ବ୍ୟକ୍ତି କାହିଁକି ରହିଲେ ନାହିଁ, ଯେଉଁମାନେ ଧରାପୃଷ୍ଠରେ ବିଶୃଂଖଳା ସୃଷ୍ଟି କରୁଥିବା ଲୋକମାନଙ୍କୁ ବାଧା ଦିଅନ୍ତେ? (ଅବଶ୍ୟ) ଏଭଳି ଲୋକ ଖୁବ୍ ଅଳ୍ପ ଥିଲେ, ଯେଉଁମାନଙ୍କୁ ଆମ୍ଭେ ରକ୍ଷା କରିଥିଲୁ । ଦୁରାଚାରୀମାନେ ନିଜ ଭୋଗ ବିଳାସରେ ବୁଡ଼ି ରହିଲେ, ଯାହାର ପ୍ରଚୁର ସାଧନ ସେମାନଙ୍କୁ ଦିଆଯାଇଥିଲା ଆଉ (ଶେଷରେ) ଅପରାଧୀରେ ପରିଣତ ହୋଇଗଲେ । (୧୧/୧୧୬)

**୨୦୨. ଅକାରଣରେ ଜନବସତି ନଷ୍ଟ କରାଯାଏ ନାହିଁ**

وَمَا كَانَ رَبُّكَ لِيُهْلِكَ الْقُرٰى بِظُلْمٍ وَّ اَهْلُهَا
مُصْلِحُوْنَ ﴿١١٧﴾

ତୁମ ପରମେଶ୍ୱର ଏମିତି ନୁହନ୍ତି ଯେ ଜନବସତିଗୁଡ଼ିକୁ ଅନ୍ୟାୟରେ ଧ୍ୱଂସ କରିଦେବେ, ଯାହାର ବାସିନ୍ଦାମାନେ ନିଜର ସୁଧାର କରିବାରେ ଲାଗିଛନ୍ତି । (୧୧/୧୧୭)

**୨୦୩. ସମାଜରେ ବିଚାରଗତ ଭିନ୍ନତାର କାରଣ**

وَلَوْ شَآءَ رَبُّكَ لَجَعَلَ النَّاسَ اُمَّةً وَّاحِدَةً وَّلَا
يَزَالُوْنَ مُخْتَلِفِيْنَ ﴿١١٨﴾

ଯଦି ତୁମ ପ୍ରଭୁ ଇଚ୍ଛା କରି ଥାଆନ୍ତେ, ତେବେ ସବୁ ମଣିଷ ଗୋଟିଏ ପନ୍ଥା ଅନୁସରଣ କରନ୍ତେ । ମାତ୍ର (ଯେହେତୁ ସେମାନଙ୍କୁ ମାର୍ଗ ବାଛିବାର ସ୍ୱତନ୍ତ୍ରତା ଦିଆଯାଇଛି) ସେମାନେ ଭିନ୍ନ ଭିନ୍ନ ପନ୍ଥା ଅବଲମ୍ବନ କରିବେ । (୧୧/୧୧୮)

**୨୦୪. ଅଧିକାଂଶ ଲୋକ ଏକ ଈଶ୍ୱରଙ୍କୁ ମାନିବା ସତ୍ତ୍ୱେ ବହୁ ଈଶ୍ୱରଙ୍କ ଉପାସନା କରନ୍ତି**

وَمَا يُؤْمِنُ اَكْثَرُهُمْ بِاللّٰهِ اِلَّا وَهُمْ مُّشْرِكُوْنَ ﴿١٠٦﴾
اَفَاَمِنُوْٓا اَنْ تَاْتِيَهُمْ غَاشِيَةٌ مِّنْ عَذَابِ اللّٰهِ اَوْ
تَاْتِيَهُمُ السَّاعَةُ بَغْتَةً وَّهُمْ لَا يَشْعُرُوْنَ ﴿١٠٧﴾

ଅଧିକାଂଶ ଲୋକ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତି, ମାତ୍ର (ଅନ୍ୟମାନଙ୍କୁ) ତାଙ୍କ (ଈଶ୍ୱରତ୍ୱରେ) ଅଂଶୀଦାର ମଧ୍ୟ ମାନନ୍ତି । କ'ଣ ସେମାନଙ୍କର ଟିକିଏ ହେଲେ ଭୟ ନାହିଁ ଯେ, ହୁଏତ ସେମାନଙ୍କ ଉପରେ ଅଲ୍ଲାହଙ୍କଠାରୁ କୌଣସି ବିପତ୍ତି ଆସିଯିବ ବା ହଠାତ୍ ପ୍ରଳୟ ଆସିଯିବ ଆଉ ସେମାନଙ୍କୁ ଏହାର ଖବର ନଥିବ?
(୧୨/୧୦୬-୧୦୭)

**୨୦୫. ମହାମାନ୍ୟ ଈଶ୍ୱରଦୂତଗଣ ମାନବ ଥିଲେ**

ଆମ୍ଭେ ତୁମ ପୂର୍ବରୁ ଯେଉଁମାନଙ୍କୁ (ବାର୍ତ୍ତାବହ ରୂପେ) ପଠାଇଥିଲୁ, ସେମାନେ ସମସ୍ତେ ମନୁଷ୍ୟ ଥିଲେ ଏବଂ ବିଭିନ୍ନ ଜନବସତିରେ ବସବାସ କରୁଥିଲେ। ସେମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ। (୧୨/୧୦୯)

وَمَآ اَرۡسَلۡنَا مِنۡ قَبۡلِكَ اِلَّا رِجَالًا نُّوۡحِىۡۤ اِلَيۡهِمۡ مِّنۡ اَهۡلِ الۡقُرٰى ؕ

**୨୦୬. ସୂର୍ଯ୍ୟ-ଚନ୍ଦ୍ର କକ୍ଷପଥରେ ପରିକ୍ରମା କରୁଛନ୍ତି**

ଅଲ୍ଲାହ୍ ସେଇ, ଯିଏ ବିନା ସ୍ତମ୍ଭରେ ସୁଉଚ୍ଚ ଆକାଶ ନିର୍ମାଣ କଲେ ଯେପରିକି ତୁମେମାନେ ଦେଖିପାରିବ। ପୁଣି ସେ ସିଂହାସନରେ ଅଧିଷ୍ଠିତ ହେଲେ ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମମାନଙ୍କ ସେବାରେ ଲଗାଇ ଦେଲେ। ପ୍ରତ୍ୟେକ (ଗ୍ରହ ନକ୍ଷତ୍ର) ଏକ ନିର୍ଦ୍ଧାରିତ ସମୟ ପାଇଁ (ନିଜନିଜ କକ୍ଷପଥରେ) ପ୍ରରିକ୍ରମା କରୁଛନ୍ତି। ସେ ହିଁ ସକଳ କାର୍ଯ୍ୟ ପରିଚାଳନା କରନ୍ତି। ନିଜର ନିଦର୍ଶନଗୁଡ଼ିକୁ ସେ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି, ଯେପରିକି ତୁମମାନଙ୍କର ବିଶ୍ୱାସ ହୋଇଯାଉ ଯେ ତୁମେମାନେ (ଦିନେ) ତୁମ ପାଳନକର୍ତ୍ତାଙ୍କ ସହ ସାକ୍ଷାତ କରିବ। ସେ ହିଁ ଭୂପୃଷ୍ଠକୁ ବିଛାଇଦେଲେ ଏବଂ ସେଥିରେ ପାହାଡ଼-ପର୍ବତ ଓ ନଦନଦୀ (ଆଦି) ସୃଷ୍ଟି କଲେ ଏବଂ ପ୍ରତ୍ୟେକ ପ୍ରକାରର ଫଳକୁ ଯୋଡ଼ି ରୂପରେ ସୃଷ୍ଟି କଲେ। ସେ ରାତି ଦ୍ୱାରା ଦିନକୁ ଘୋଡ଼ାଇ ଦିଅନ୍ତି। ଯେଉଁମାନେ ଧ୍ୟାନ ଦିଅନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ରହିଛି। (୧୩/୨-୩)

اَللّٰهُ الَّذِىۡ رَفَعَ السَّمٰوٰتِ بِغَيۡرِ عَمَدٍ تَرَوۡنَهَا ثُمَّ اسۡتَوٰى عَلَى الۡعَرۡشِ وَسَخَّرَ الشَّمۡسَ وَالۡقَمَرَ ؕ كُلٌّ يَّجۡرِىۡ لِاَجَلٍ مُّسَمًّى ؕ يُدَبِّرُ الۡاَمۡرَ يُفَصِّلُ الۡاٰيٰتِ لَعَلَّكُمۡ بِلِقَآءِ رَبِّكُمۡ تُوۡقِنُوۡنَ ۝ وَهُوَ الَّذِىۡ مَدَّ الۡاَرۡضَ وَجَعَلَ فِيۡهَا رَوَاسِىَ وَاَنۡهٰرًا ؕ وَمِنۡ كُلِّ الثَّمَرٰتِ جَعَلَ فِيۡهَا زَوۡجَيۡنِ اثۡنَيۡنِ يُغۡشِى الَّيۡلَ النَّهَارَ ؕ اِنَّ فِىۡ ذٰلِكَ لَاٰيٰتٍ لِّقَوۡمٍ يَّتَفَكَّرُوۡنَ ۝

**୨୦୭. ସୃଷ୍ଟିରେ ଈଶ୍ୱରଙ୍କର ବହୁ ନିଦର୍ଶନ ରହିଛି**

ଭୂପୃଷ୍ଠରେ ବିଭିନ୍ନ ପ୍ରକାରର ଭୂମି ପରସ୍ପର ସହିତ ଲାଗି ରହିଛି। (ସେଥିରେ) ଅଂଗୁର ଉଦ୍ୟାନ, ଶସ୍ୟକ୍ଷେତ୍ର ଓ ଖଜୁରୀ ଗଛ (ମଧ୍ୟ) ଅଛି, ତନ୍ମଧ୍ୟରୁ କେତେକ ଶାଖା-ବିଶିଷ୍ଟ ଓ କେତେକ ଶାଖା-ବିହୀନ। ସମସ୍ତଙ୍କୁ ଏକା ଜଳ ମିଳେ, କିନ୍ତୁ ଆମ୍ଭେ ଗୋଟିଏ ଫଳକୁ ଅନ୍ୟ ଫଳ ତୁଳନାରେ ଅଧିକ ସ୍ୱାଦିଷ୍ଟ କରିଦେଉ। ଏଥିରେ ସେହି ଲୋକମାନଙ୍କ ପାଇଁ ନିଦର୍ଶନ ରହିଛି, ଯେଉଁମାନେ ବୁଦ୍ଧି ପ୍ରୟୋଗ କରନ୍ତି। (୧୩/୪)

وَفِى الۡاَرۡضِ قِطَعٌ مُّتَجٰوِرٰتٌ وَّجَنّٰتٌ مِّنۡ اَعۡنَابٍ وَّزَرۡعٌ وَّنَخِيۡلٌ صِنۡوَانٌ وَّغَيۡرُ صِنۡوَانٍ يُّسۡقٰى بِمَآءٍ وَّاحِدٍ وَنُفَضِّلُ بَعۡضَهَا عَلٰى بَعۡضٍ فِى الۡاُكُلِ ؕ اِنَّ فِىۡ ذٰلِكَ لَاٰيٰتٍ لِّقَوۡمٍ يَّعۡقِلُوۡنَ ۝

**୨୦୮. ତୁମ ସୁରକ୍ଷା ପାଇଁ ଦେବଦୂତ ନିଯୁକ୍ତ ଅଛନ୍ତି**

ପ୍ରତ୍ୟେକ ବ୍ୟକ୍ତିର ଆଗ ଓ ପଛରେ ଦେବଦୂତ ନିଯୁକ୍ତ ହୋଇଛନ୍ତି,

لَهٗ مُعَقِّبٰتٌ مِّنۡۢ بَيۡنِ يَدَيۡهِ وَمِنۡ خَلۡفِهٖ يَحۡفَظُوۡنَهٗ

ଯେଉଁମାନେ ଅଲ୍ଲାହଙ୍କ ନିର୍ଦ୍ଦେଶରେ ତାକୁ ସୁରକ୍ଷା ଦେଇ ଥାଆନ୍ତି ।
(୧୩/୧୧)

مِنْ اَمْرِ اللّٰهِ ؕ

## ୨୦୯. ମଣିଷର ଇଚ୍ଛା ନଥିଲେ ଅଲ୍ଲାହ ପଥପ୍ରଦର୍ଶନ କରନ୍ତି ନାହିଁ

ପ୍ରକୃତରେ ଅଲ୍ଲାହ୍ କୌଣସି ସମାଜର ଅବସ୍ଥାରେ ପରିବର୍ତ୍ତନ କରନ୍ତି ନାହିଁ, ଯେପର୍ଯ୍ୟନ୍ତ ସେମାନେ ନିଜର ଅନ୍ତରକୁ ପରିବର୍ତ୍ତନ କରିନାହାନ୍ତି । ଯଦି ଅଲ୍ଲାହ କୌଣସି ସମୁଦାୟକୁ ବିପଦରେ ପକାଇବାକୁ ସ୍ଥିର କରନ୍ତି, ତେବେ ତାହା ଆଦୌ ଟଳେ ନାହିଁ । ତାଙ୍କ ବ୍ୟତୀତ କେହି ସେମାନଙ୍କର ଆଶ୍ରୟଦାତା ନାହାନ୍ତି ।
(୧୩/୧୧)

اِنَّ اللّٰهَ لَا يُغَيِّرُ مَا بِقَوْمٍ حَتّٰى يُغَيِّرُوْا مَا
بِاَنْفُسِهِمْ ؕ وَاِذَآ اَرَادَ اللّٰهُ بِقَوْمٍ سُوْٓءًا فَلَا مَرَدَّ لَهٗ ۚ
وَمَا لَهُمْ مِّنْ دُوْنِهٖ مِنْ وَّالٍ ﴿١١﴾

## ୨୧୦. କେବଳ ତାଙ୍କୁ ହିଁ ଡାକିବା ଠିକ୍

କେବଳ ତାଙ୍କୁ ହିଁ ଡାକିବା ଠିକ୍ । ତାଙ୍କୁ ଛାଡ଼ି ଯେଉଁମାନଙ୍କୁ ଏମାନେ (ଅଭିଷ୍ଟସିଦ୍ଧି ବା ବିଘ୍ନନାଶନ ପାଇଁ) ଡାକନ୍ତି, ସେମାନେ ଏମାନଙ୍କ ପ୍ରାର୍ଥନାର ଉତ୍ତର ଦେଇ ପାରିବେ ନାହିଁ, ବରଂ ସେମାନଙ୍କୁ ଡ଼ାକିବା ଏମିତି, ଯେମିତି କୌଣସି ବ୍ୟକ୍ତି ଜଳ ଆଡ଼କୁ ହାତ ବଢ଼ାଇ ଗୁହାରି କରେ ଯେ ଏହା ତା' ଶୋଷ ମେଣ୍ଟାଇ ଦେଉ । ଅଥଚ ଜଳ ତା' ପାଖରେ ଆଦୌ ପହଁଚିବ ନାହିଁ । ଅଧର୍ମୀମାନଙ୍କର ପ୍ରାର୍ଥନା ଏକ ବିଭ୍ରାନ୍ତି ମାତ୍ର । (୧୩/୧୪)

لَهٗ دَعْوَةُ الْحَقِّ ؕ وَالَّذِيْنَ يَدْعُوْنَ مِنْ دُوْنِهٖ لَا
يَسْتَجِيْبُوْنَ لَهُمْ بِشَيْءٍ اِلَّا كَبَاسِطِ كَفَّيْهِ اِلَى
الْمَآءِ لِيَبْلُغَ فَاهُ وَمَا هُوَ بِبَالِغِهٖ ؕ وَمَا دُعَآءُ
الْكٰفِرِيْنَ اِلَّا فِيْ ضَلٰلٍ ﴿١٤﴾

## ୨୧୧. ସମଗ୍ର ସୃଷ୍ଟି ତାଙ୍କର ଆଜ୍ଞାଧୀନ

ସ୍ୱେଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ, ଅଲ୍ଲାହଙ୍କୁ ହିଁ ସଂଜ-ସକାଳେ ପ୍ରଣାମ କରନ୍ତି ଧରିତ୍ରୀ ଓ ଆକାଶର ସକଳ ସୃଷ୍ଟି ତଥା ସେମାନଙ୍କର ଛାୟାଗୁଡ଼ିକ ମଧ୍ୟ । (୧୩/୧୫)

وَلِلّٰهِ يَسْجُدُ مَنْ فِي السَّمٰوٰتِ وَالْاَرْضِ طَوْعًا وَّ
كَرْهًا وَّظِلٰلُهُمْ بِالْغُدُوِّ وَالْاٰصَالِ ﴿١٥﴾ السجدة

## ୨୧୨. ବୈକୁଣ୍ଠବାସୀଙ୍କ ଲକ୍ଷଣ

ଯେଉଁମାନେ ଅଲ୍ଲାହଙ୍କୁ ଦେଇଥିବା ବଚନ ରକ୍ଷା କରନ୍ତି ଏବଂ ବଚନବଦ୍ଧ ହେଲାପରେ ତାହା ଭାଂଗି ଦିଅନ୍ତିନାହିଁ, ଯେଉଁ (ଆତ୍ମୀୟମାନଙ୍କର) ସମ୍ବନ୍ଧଗୁଡ଼ିକୁ ଅଲ୍ଲାହ୍ ଯୋଡ଼ି ରଖିବାର ଆଦେଶ ଦେଇଛନ୍ତି, ସେଗୁଡ଼ିକୁ ଯୋଡ଼ି ରଖନ୍ତି, ନିଜ ପ୍ରଭୁଙ୍କୁ ଭୟ କରନ୍ତି ତଥା (ନିଜ କର୍ମର) ମନ୍ଦ ପରିଣତି ବିଷୟରେ ସଦାବେଳେ ଶଙ୍କିତ ରହି ଥାଆନ୍ତି, ଏବଂ ଯେଉଁମାନେ ନିଜ ପ୍ରଭୁଙ୍କ ପ୍ରସନ୍ନତା

وَالَّذِيْنَ يَصِلُوْنَ مَآ اَمَرَ اللّٰهُ بِهٖٓ اَنْ يُّوْصَلَ وَ
يَخْشَوْنَ رَبَّهُمْ وَيَخَافُوْنَ سُوْٓءَ الْحِسَابِ ﴿٢١﴾ ؕ
وَالَّذِيْنَ صَبَرُوا ابْتِغَآءَ وَجْهِ رَبِّهِمْ وَاَقَامُوا
الصَّلٰوةَ وَاَنْفَقُوْا مِمَّا رَزَقْنٰهُمْ سِرًّا وَّعَلَانِيَةً وَّ

ଲାଗି (ବିପଦ ଆପଦରେ) ଧୈର୍ଯ୍ୟ ଅବଲମ୍ବନ କରନ୍ତି, ନମାଜ ପ୍ରତିଷ୍ଠା କରନ୍ତି, ଆମ୍ଭେ ଦେଇଥିବା ଧନରୁ ଗୁପ୍ତ ଓ ପ୍ରକାଶ୍ୟରେ (ସତକାର୍ଯ୍ୟରେ) ଖର୍ଚ୍ଚ କରନ୍ତି ଏବଂ ଦୁର୍ବ୍ୟବହାର ଉତ୍ତର ସଦ୍‌ବ୍ୟବହାର ଦ୍ୱାରା ଦିଅନ୍ତି, ପରଲୋକର ଘର ଏହିମାନଙ୍କ ପାଇଁ ଉଦ୍ଦିଷ୍ଟ । (୧୩/୨୧-୨୨)

يَدْرَءُوْنَ بِالْحَسَنَةِ السَّيِّئَةَ أُولٰٓئِكَ لَهُمْ عُقْبَى الدَّارِ ﴿٢٢﴾

**୨୧୩. ରକ୍ତସଂପର୍କ କାଟିଲେ ନର୍କଦଣ୍ଡ ଭୋଗିବ**

ଯେଉଁମାନେ ଅଲ୍ଲାହଙ୍କୁ ବଚନ ଦେଇ ଦୃଢ଼ ସଂକଳ୍ପ କଲା ପରେ ତାହା ଭାଂଗିଦିଅନ୍ତି, ଯେଉଁ ସଂମ୍ବନ୍ଧଗୁଡ଼ିକୁ ଅଲ୍ଲାହ ଯୋଡ଼ି ରଖିବାର ଆଜ୍ଞା ଦେଇଛନ୍ତି, ସେଗୁଡ଼ିକୁ କାଟିଦିଅନ୍ତି ଆଉ ଭୂପୃଷ୍ଠରେ ବିଶୃଂଖଳା ସୃଷ୍ଟି କରନ୍ତି, ଏହି ଲୋକମାନଙ୍କୁ ଧିକ୍କାର । ଏମାନଙ୍କ ପାଇଁ (ପରଲୋକରେ) ଅତି କଦର୍ଯ୍ୟ ସ୍ଥାନ ଅଛି । (୧୩/୨୫)

وَالَّذِيْنَ يَنْقُضُوْنَ عَهْدَ اللّٰهِ مِنْۢ بَعْدِ مِيْثَاقِهٖ وَيَقْطَعُوْنَ مَآ اَمَرَ اللّٰهُ بِهٖٓ اَنْ يُّوْصَلَ وَيُفْسِدُوْنَ فِى الْاَرْضِ ۙ اُولٰٓئِكَ لَهُمُ اللَّعْنَةُ وَلَهُمْ سُوْٓءُ الدَّارِ ﴿٢٥﴾

**୨୧୪. ସଂସାରରେ ମଗ୍ନ ହୋଇଯାଅ ନାହିଁ**

ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ଅମାପ ଜୀବିକା ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି । ଏମାନେ ସାଂସାରିକ ଜୀବନରେ ମଗ୍ନ ହୋଇ ଯାଇଛନ୍ତି, ମାତ୍ର ପରଲୋକ ତୁଳନାରେ ସାଂସାରିକ ଜୀବନର ସୁଖ ଅତି କ୍ଷଣସ୍ଥାୟୀ । (୧୩/୨୬)

اَللّٰهُ يَبْسُطُ الرِّزْقَ لِمَنْ يَّشَآءُ وَيَقْدِرُ ؕ وَفَرِحُوْا بِالْحَيٰوةِ الدُّنْيَا ؕ وَمَا الْحَيٰوةُ الدُّنْيَا فِى الْاٰخِرَةِ اِلَّا مَتَاعٌ ﴿٢٦﴾

**୨୧୫. ଅନୁତାପ କଲେ ଈଶ୍ୱର ମାର୍ଗଦର୍ଶନ କରନ୍ତି**

ସେମାନଙ୍କୁ କହିଦିଅ, "ଅଲ୍ଲାହ ଯାହାକୁ ଚାହାନ୍ତି ତାକୁ ପଥଭ୍ରଷ୍ଟ କରନ୍ତି ଏବଂ ସେ ନିଜର ମାର୍ଗ ତାକୁ ହିଁ ଦେଖାଇ ଥାଆନ୍ତି ଯିଏ ତାଙ୍କ ନିକଟରେ ଅନୁତାପ କରେ ।" (୧୩/୨୭)

قُلْ اِنَّ اللّٰهَ يُضِلُّ مَنْ يَّشَآءُ وَيَهْدِيْٓ اِلَيْهِ مَنْ اَنَابَ ﴿٢٧﴾

**୨୧୬. ପ୍ରଭୁଙ୍କୁ ସ୍ମରଣ କଲେ ମନକୁ ଶାନ୍ତି ମିଳିଥାଏ**

ଜାଣିରଖ, ଅଲ୍ଲାହଙ୍କୁ ସ୍ମରଣ କରିବା ଦ୍ୱାରା ମନକୁ ଶାନ୍ତି ମିଳିଥାଏ । (୧୩/୨୮)

اَلَا بِذِكْرِ اللّٰهِ تَطْمَئِنُّ الْقُلُوْبُ ﴿٢٨﴾

**୨୧୭. ପ୍ରତ୍ୟେକ ଯୁଗପାଇଁ ପୃଥକ ଗ୍ରନ୍ଥ ଦିଆ ଯାଇଥିଲା**

ବାସ୍ତବରେ ତୁମ ପୂର୍ବରୁ ମଧ୍ୟ ଆମ୍ଭେ ବହୁ ଈଶ୍ୱରଦୂତଙ୍କୁ ପଠାଇ ସାରିଛୁ ଆଉ ଆମ୍ଭେ ସେମାନଙ୍କୁ ପତ୍ନୀ ଓ ସନ୍ତାନ ମଧ୍ୟ ପ୍ରଦାନ କରିଥିଲୁ । କୌଣସି ଈଶ୍ୱରଦୂତଙ୍କର ସାଧ୍ୟ ନାହିଁ ଯେ ସେ ଅଲ୍ଲାହଙ୍କ ଆଜ୍ଞା ବିନା ନିଜେ କୌଣସି ନିଦର୍ଶନ ଆଣି ପାରିବେ । ପ୍ରତ୍ୟେକ ଯୁଗ ପାଇଁ (ପୃଥକ) ଗ୍ରନ୍ଥ ଦିଆଯାଇଛି । (୧୩/୩୮)

وَلَقَدْ اَرْسَلْنَا رُسُلًا مِّنْ قَبْلِكَ وَجَعَلْنَا لَهُمْ اَزْوَاجًا وَّذُرِّيَّةً ؕ وَمَا كَانَ لِرَسُوْلٍ اَنْ يَّاْتِيَ بِاٰيَةٍ اِلَّا بِاِذْنِ اللّٰهِ ؕ لِكُلِّ اَجَلٍ كِتَابٌ ﴿٣٨﴾

**୨୧୮. ବାର୍ତ୍ତାବହମାନେ ନିଜ ଭାଷାରେ ବାର୍ତ୍ତା ଦେଉଥିଲେ**

وَ مَآ اَرۡسَلۡنَا مِنۡ رَّسُوۡلٍ اِلَّا بِلِسَانِ قَوۡمِهٖ لِيُبَيِّنَ لَهُمۡ ؕ فَيُضِلُّ اللّٰهُ مَنۡ يَّشَآءُ وَ يَهۡدِىۡ مَنۡ يَّشَآءُ ؕ وَهُوَ الۡعَزِيۡزُ الۡحَكِيۡمُ ۝

ଆମ୍ଭେ ଯେତେବେଳେ ଯେଉଁ ବାର୍ତ୍ତାବହ ପଠାଇଛୁ, ସେ ତାଙ୍କରି ସଂପ୍ରଦାୟର ଭାଷାରେ (ଆମ୍ଭର) ବାର୍ତ୍ତା ଦେଇଛନ୍ତି, ଯେପରିକି ସେମାନଙ୍କୁ ପରିଷ୍କାର ଭାବରେ ବୁଝାଇ ପାରିବେ । ଏହାପରେ ଅଲ୍ଲାହ୍ ଯାହାକୁ ଚାହାନ୍ତି ପଥଭ୍ରଷ୍ଟ କରନ୍ତି ଏବଂ ଯାହାକୁ ଚାହାନ୍ତି ପଥପ୍ରଦର୍ଶନ କରନ୍ତି । ସେ ପ୍ରଭୁତ୍ୱଶାଳୀ ଏବଂ ତତ୍ତ୍ୱଦର୍ଶୀ ।

(୧୪/୪)

**୨୧୯. କୁରଆନ ସମଗ୍ର ମାନବଜଗତ ପାଇଁ ଉଦ୍ଦିଷ୍ଟ**

هٰذَا بَلٰغٌ لِّلنَّاسِ وَلِيُنۡذَرُوۡا بِهٖ وَلِيَعۡلَمُوۡۤا اَنَّمَا هُوَ اِلٰهٌ وَّاحِدٌ وَّلِيَذَّكَّرَ اُولُوا الۡاَلۡبَابِ ۝

ଏହି କୁରଆନ୍ ମାନବଜାତି ପାଇଁ ଏକ (ସ୍ପଷ୍ଟ) ସନ୍ଦେଶ ଏବଂ ଏହି ସନ୍ଦେଶ ଲୋକମାନଙ୍କୁ ସତର୍କ କରିବା ପାଇଁ ଦିଆଯାଉଛି, ଯାହା ଫଳରେ ସେମାନେ ଜାଣିନିଅନ୍ତୁ ଯେ ପ୍ରକୃତରେ ଉପାସ୍ୟ କେବଳ ଜଣେ ଏବଂ ବୁଦ୍ଧିମାନ ଲୋକମାନେ ସଚେତନ ହୋଇ ଯାଆନ୍ତୁ ।

(୧୪/୫୨)

**୨୨୦. କୁରଆନର ସୁରକ୍ଷା ଈଶ୍ୱରଙ୍କ ଦାୟିତ୍ୱ**

اِنَّا نَحۡنُ نَزَّلۡنَا الذِّكۡرَ وَاِنَّا لَهٗ لَحٰفِظُوۡنَ ۝

ଏହି କୁରଆନକୁ ଆମ୍ଭେ ହିଁ ଅବତୀର୍ଣ୍ଣ କରିଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ । (୧୫/୯)

**୨୨୧. ଅଲ୍ଲାହ ଜଗତପାଳକ**

وَ الۡاَرۡضَ مَدَدۡنٰهَا وَ اَلۡقَيۡنَا فِيۡهَا رَوَاسِىَ وَ اَنۡۢبَتۡنَا فِيۡهَا مِنۡ كُلِّ شَىۡءٍ مَّوۡزُوۡنٍ ۝ وَ جَعَلۡنَا لَـكُمۡ فِيۡهَا مَعَايِشَ وَمَنۡ لَّسۡتُمۡ لَهٗ بِرٰزِقِيۡنَ ۝ وَ اِنۡ مِّنۡ شَىۡءٍ اِلَّا عِنۡدَنَا خَزَآئِنُهٗ وَ مَا نُنَزِّلُهٗۤ اِلَّا بِقَدَرٍ مَّعۡلُوۡمٍ ۝ وَ اَرۡسَلۡنَا الرِّيٰحَ لَوَاقِحَ فَاَنۡزَلۡنَا مِنَ السَّمَآءِ مَآءً فَاَسۡقَيۡنٰكُمُوۡهُ ۚ وَمَاۤ اَنۡتُمۡ لَهٗ بِخٰزِنِيۡنَ ۝

ଆମ୍ଭେ ଧରିତ୍ରୀକୁ ବିଛାଇ ଦେଲୁ ଏବଂ (ତାକୁ ସ୍ଥିର ରଖିବା ପାଇଁ) ତା' ଉପରେ ପାହାଡ଼ମାନ ଅବସ୍ଥାପିତ କଲୁ ଏବଂ ସେଥିରେ ବିଭିନ୍ନ ପ୍ରକାରର ବୃକ୍ଷଲତା ସଠିକ୍ ଅନୁପାତରେ ଉତ୍ପନ୍ନ କଲୁ । (ସେଥିରେ) ତୁମମାନଙ୍କ ପାଇଁ ଜୀବନ ନିର୍ବାହର ସାଧନମାନ ଖଂଜିଦେଲୁ ଏବଂ (ସୃଷ୍ଟିର) ଅନ୍ୟ ପ୍ରାଣୀମାନଙ୍କ ପାଇଁ ମଧ୍ୟ, ଯେଉଁମାନଙ୍କୁ ତୁମେ ଆହାର ଦିଅନାହିଁ । ଏଭଳି କୌଣସି ବସ୍ତୁ ନାହିଁ ଯାହାର ଭଣ୍ଡାର ଆମ୍ଭ ପାଖରେ ନାହିଁ, ମାତ୍ର ଆମ୍ଭେ ତାହାକୁ ଏକ ନିର୍ଦ୍ଧାରିତ ମାତ୍ରାରେ ପଠାଇଥାଉ । ଆମ୍ଭେ ହିଁ ମେଘବାହୀ ବାୟୁ ପଠାଉ ଏବଂ ଆକାଶରୁ ଜଳ ବର୍ଷା କରି ତୁମମାନଙ୍କୁ ପିଇବାକୁ ଦେଉ । ତୁମେମାନେ ଏହାକୁ ମହଜୁଦ କରି ରଖିପାରି ନଥାଆନ୍ତ । (୧୫/୧୯-୨୨)

## ୨୨୨. ଏହି ସୃଷ୍ଟି ଉଦ୍ଦେଶ୍ୟହୀନ ନୁହେଁ

وَ مَا خَلَقْنَا السَّمٰوٰتِ وَ الْاَرْضَ وَ مَا بَيْنَهُمَاۤ اِلَّا بِالْحَقِّ ؕ وَ اِنَّ السَّاعَةَ لَاٰتِيَةٌ فَاصْفَحِ الصَّفْحَ الْجَمِيْلَ ﴿۸۵﴾

ପୃଥିବୀ ଓ ଅନ୍ତରୀକ୍ଷ ତଥା ତନ୍ମଧ୍ୟରେ ଯାହାକିଛି ଅଛି, ସେଗୁଡ଼ିକୁ ଆମ୍ଭେ ଉଚିତ ଲକ୍ଷ୍ୟ ବିନା ସୃଷ୍ଟି କରିନାହୁଁ ଏବଂ (ଜାଣିରଖ) ଅନ୍ତିମ ବିଚାରର ସମୟ ଅବଶ୍ୟ ପାଖେଇ ଆସୁଛି। ତେଣୁ, ସେମାନଙ୍କୁ ଉଦାରତାର ସହିତ କ୍ଷମା କରିଦିଅ। (୧୫/୮୫)

## ୨୨୩. ସତମାର୍ଗ ଦେଖାଇଦେବା ଈଶ୍ୱରଙ୍କ କର୍ତ୍ତବ୍ୟ

وَ عَلَى اللّٰهِ قَصْدُ السَّبِيْلِ وَ مِنْهَا جَآئِرٌ ؕ وَ لَوْ شَآءَ لَهَدٰىكُمْ اَجْمَعِيْنَ ﴿۹﴾

ସତ୍‌ମାର୍ଗ ଦେଖାଇ ଦେବା ଅଲ୍ଲାହଙ୍କର ଦାୟିତ୍ୱ, କାରଣ ଅନେକ ଅସତ୍‌ମାର୍ଗ ମଧ୍ୟ ରହିଛି। ଯଦି ସେ ଇଚ୍ଛା କରନ୍ତେ, ତେବେ ସମସ୍ତଙ୍କୁ ସତମାର୍ଗରେ ନେଇ ଯାଆନ୍ତେ। (୧୬/୯)

## ୨୨୪. ଉଦ୍ଭିଦଜଗତର ସୃଷ୍ଟି ତୁମରି ପାଇଁ

هُوَ الَّذِيْۤ اَنْزَلَ مِنَ السَّمَآءِ مَآءً لَّكُمْ مِّنْهُ شَرَابٌ وَّ مِنْهُ شَجَرٌ فِيْهِ تُسِيْمُوْنَ ﴿۱۰﴾ يُنْۢبِتُ لَكُمْ بِهِ الزَّرْعَ وَ الزَّيْتُوْنَ وَ النَّخِيْلَ وَ الْاَعْنَابَ وَ مِنْ كُلِّ الثَّمَرٰتِ ؕ اِنَّ فِيْ ذٰلِكَ لَاٰيَةً لِّقَوْمٍ يَّتَفَكَّرُوْنَ ﴿۱۱﴾

ସେ ହିଁ ଆକାଶରୁ ଜଳବୃଷ୍ଟି କରନ୍ତି ଯାହା ଫଳରେ ତୁମମାନଙ୍କୁ ପିଇବା ପାଇଁ ଜଳ ମିଳେ ଏବଂ ତୁମ ପଶୁମାନଙ୍କ ଚରିବା ପାଇଁ ଉଦ୍ଭିଦରାଜି ସୃଷ୍ଟି ହୁଏ। ସେହି ଜଳ ଦ୍ୱାରା ସେ ଶସ୍ୟ ଉତ୍ପନ୍ନ କରନ୍ତି ତଥା ଜଳପାଇ, ଖଜୁରୀ ଓ ଅଂଗୁର ଆଦି ବିଭିନ୍ନ ପ୍ରକାର ଫଳ ଉତ୍ପନ୍ନ କରିଥାଆନ୍ତି। ଯେଉଁମାନେ ଧ୍ୟାନ ଦିଅନ୍ତି, ସେମାନଙ୍କ ପାଇଁ ଏଥିରେ (ଅନେକ) ନିଦର୍ଶନ ରହିଛି। (୧୬/୧୦-୧୧)

## ୨୨୫. ସୂର୍ଯ୍ୟ-ଚନ୍ଦ୍ର ତୁମରି ସେବାରେ ନିୟୋଜିତ

وَ سَخَّرَ لَكُمُ الَّيْلَ وَ النَّهَارَ ۙ وَ الشَّمْسَ وَ الْقَمَرَ ؕ وَ النُّجُوْمُ مُسَخَّرٰتٌۢ بِاَمْرِهٖ ؕ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّعْقِلُوْنَ ﴿۱۲﴾

ଦିନ ଓ ରାତି ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ସେ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ଏବଂ ତାଙ୍କରି ଆଜ୍ଞାରୁ (ଅନ୍ୟ) ଗ୍ରହନକ୍ଷତ୍ର ଗୁଡ଼ିକ ମଧ୍ୟ କାର୍ଯ୍ୟରତ ଅଛନ୍ତି। ବାସ୍ତବରେ ଯେଉଁମାନଙ୍କର ବୁଦ୍ଧି ଅଛି, ସେମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ରହିଛି।

(୧୬/୧୨)

## ୨୨୬. ସାଗରଗୁଡ଼ିକ ତୁମରି ସେବାରତ

وَ هُوَ الَّذِيْ سَخَّرَ الْبَحْرَ لِتَاْكُلُوْا مِنْهُ لَحْمًا طَرِيًّا وَّ تَسْتَخْرِجُوْا مِنْهُ حِلْيَةً تَلْبَسُوْنَهَا ۚ وَ

ସମୁଦ୍ରଗୁଡ଼ିକୁ ମଧ୍ୟ ସେ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ଯାହାଫଳରେ ତୁମେମାନେ (ବିଭିନ୍ନ ଜଳଚର ଜୀବଙ୍କର) ତଟକା ମାଂସ ଖାଅ ଏବଂ ସେଥିରୁ ଅଳଙ୍କାର ସଂଗ୍ରହ କରି ପିନ୍ଧିଥାଅ। ତୁମେ ଲକ୍ଷ୍ୟ କରୁଥିବ ଯେ ନୌକାଗୁଡ଼ିକ ସମୁଦ୍ର ବକ୍ଷକୁ ବିଦୀର୍ଣ୍ଣ

تَرَى الْفُلْكَ مَوَاخِرَ فِيْهِ وَ لِتَبْتَغُوْا مِنْ فَضْلِهٖ وَ
لَعَلَّكُمْ تَشْكُرُوْنَ ﴿١٤﴾

କରି ଚାଲିଥାଆନ୍ତି ଯେପରିକି ତୁମେମାନେ (ବାଣିଜ୍ୟ ଦ୍ୱାରା) ଅଲ୍ଲାହଙ୍କର ଅନୁଗ୍ରହର ସନ୍ଧାନ କରିବ ଏବଂ ତାଙ୍କ ପ୍ରତି କୃତଜ୍ଞ ହେବ । (୧୬/୧୪)

## ୨୨୭. ନଦୀ ଓ ପାହାଡ଼ର ସୃଷ୍ଟି ତୁମରି ପାଇଁ

وَ اَلْقٰى فِى الْاَرْضِ رَوَاسِىَ اَنْ تَمِيْدَ بِكُمْ وَ اَنْهٰرًا
وَّ سُبُلًا لَّعَلَّكُمْ تَهْتَدُوْنَ ﴿١٥﴾ وَ عَلٰمٰتٍ ؕ وَ
بِالنَّجْمِ هُمْ يَهْتَدُوْنَ ﴿١٦﴾ اَفَمَنْ يَّخْلُقُ كَمَنْ لَّا
يَخْلُقُ ؕ اَفَلَا تَذَكَّرُوْنَ ﴿١٧﴾

ସେ ଭୂପୃଷ୍ଠରେ ପାହାଡ଼ଗୁଡ଼ିକୁ ଅବସ୍ଥାପିତ କଲେ ଯେପରିକି ଧରିତ୍ରୀ ତୁମମାନଙ୍କୁ ଧରି ଦୋହଲି ନଯାଉ । ସେ ନଦନଦୀ ପ୍ରବାହିତ କଲେ ଏବଂ (ପ୍ରାକୃତିକ) ପଥ ସୃଷ୍ଟି କଲେ ଯେପରିକି ତୁମେମାନେ ଗନ୍ତବ୍ୟ ସ୍ଥଳରେ ପହଁଚି ପାରିବ । ସେ (ବାଟ ଜାଣିବା ପାଇଁ) ଅନେକ ସ୍ପଷ୍ଟ ଚିହ୍ନ ସୃଷ୍ଟି କରିଛନ୍ତି ଏବଂ ନକ୍ଷତ୍ର ଦ୍ୱାରା ମଧ୍ୟ ଲୋକେ (ଦିଗନିର୍ଣ୍ଣୟ କରି) ରାସ୍ତା ପାଇ ଥାଆନ୍ତି । ତେବେ ଯିଏ (ଏଭଳି) ସୃଷ୍ଟି କରେ, କ'ଣ ସେ ସେମାନଙ୍କ ସହ ସମାନ ହୋଇପାରେ, ଯେଉଁମାନେ କିଛି ସୃଷ୍ଟି କରନ୍ତି ନାହିଁ? କ'ଣ ତୁମେମାନେ ସଚେତନ ହେବନାହିଁ? (୧୬/୧୫-୧୭)

## ୨୨୮. ସୃଷ୍ଟିର ଉପାସନା କରନାହିଁ

وَ الَّذِيْنَ يَدْعُوْنَ مِنْ دُوْنِ اللّٰهِ لَا يَخْلُقُوْنَ شَيْـًٔا
وَّ هُمْ يُخْلَقُوْنَ ﴿٢٠﴾ اَمْوَاتٌ غَيْرُ اَحْيَآءٍ ۚ وَ مَا
يَشْعُرُوْنَ ۙ اَيَّانَ يُبْعَثُوْنَ ﴿٢١﴾

ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କୁ ଏମାନେ (କାର୍ଯ୍ୟସିଦ୍ଧି ପାଇଁ) ଡାକନ୍ତି, ସେମାନେ କିଛି ସୃଷ୍ଟି କରନ୍ତି ନାହିଁ ବରଂ ସେମାନେ ନିଜେ ସୃଷ୍ଟି ହୋଇଛନ୍ତି । ସେମାନେ ମୃତ, ପ୍ରାଣରହିତ ଏବଂ ସେମାନଙ୍କୁ ଏହା ଜଣାନାହିଁ ଯେ ସେମାନଙ୍କୁ କେବେ ପୁନର୍ଜୀବିତ କରାଯିବ । (୧୬/୨୦-୨୧)

## ୨୨୯. ଲୋକମାନଙ୍କୁ କୁରଆନର ବାର୍ତ୍ତା ଦିଅ

وَ مَاۤ اَرْسَلْنَا مِنْ قَبْلِكَ اِلَّا رِجَالًا نُّوْحِىْۤ اِلَيْهِمْ
فَسْـَٔلُوْۤا اَهْلَ الذِّكْرِ اِنْ كُنْتُمْ لَا تَعْلَمُوْنَ ﴿٤٣﴾
بِالْبَيِّنٰتِ وَ الزُّبُرِ ؕ وَ اَنْزَلْنَاۤ اِلَيْكَ الذِّكْرَ لِتُبَيِّنَ
لِلنَّاسِ مَا نُزِّلَ اِلَيْهِمْ وَ لَعَلَّهُمْ يَتَفَكَّرُوْنَ ﴿٤٤﴾

(ହେ ବାର୍ତ୍ତାବହ!) ତୁମ ପୂର୍ବରୁ ମଧ୍ୟ ଆମ୍ଭେ ମନୁଷ୍ୟମାନଙ୍କୁ ହିଁ ବାର୍ତ୍ତାବହ ରୂପେ ପଠାଇଥିଲୁ, ଯେଉଁମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ । (କୁହ) "ଯଦି ତୁମମାନଙ୍କର ଏହାର ଜ୍ଞାନ ନାହିଁ, ତେବେ ଯେଉଁମାନଙ୍କର ଜ୍ଞାନ ଅଛି, ସେମାନଙ୍କୁ ପଚାର ।" (ଆମ୍ଭେ ସେମାନଙ୍କୁ) ସ୍ପଷ୍ଟ ପ୍ରମାଣ ସହ ଦିବ୍ୟଗ୍ରନ୍ଥ ଦେଇ ପଠାଇଥିଲୁ । ତୁମପ୍ରତି ମଧ୍ୟ ଆମ୍ଭେ ଏହି ଉଦ୍ଦେଶ୍ୟରେ ଗ୍ରନ୍ଥ ପ୍ରକଟ କରିଛୁ ଯେ ଲୋକମାନଙ୍କ ପାଇଁ ପଠାଯାଇଥିବା ଗ୍ରନ୍ଥକୁ ସେମାନଙ୍କ ନିକଟରେ ପରିଷ୍କାର ଭାବରେ ବର୍ଣ୍ଣନା କରିଦିଅ, ହୁଏତ ସେମାନେ ଧ୍ୟାନ ଦେବେ । (୧୬/୪୩-୪୪)

**୨୩୦. ତୁମକୁ ଯାହା ମିଳେ, ତାହା ପ୍ରଭୁଙ୍କ ଅନୁଗ୍ରହ**

ଧରିତ୍ରୀ ଓ ଆକାଶରେ ଯାହାକିଛି ଅଛି ସବୁ ତାଙ୍କରି ଏବଂ ତାଙ୍କରି ଆଜ୍ଞା ସର୍ବାଦୌ ପାଳନୀୟ । ତେବେ କ'ଣ ତୁମେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରିକୁ ଭୟ କରୁଛ ? ତୁମମାନଙ୍କ ପାଖରେ ଯାହାକିଛି ଅଛି, ତାହା (କେବଳ) ଅଲ୍ଲାହ୍‌ଙ୍କର ଅନୁଗ୍ରହ । ପୁଣି ଯେତେବେଳେ ତୁମମାନଙ୍କ ପ୍ରତି କୌଣସି ବିପଦ ଆସେ, ସେତେବେଳେ ତୁମେମାନେ ତାଙ୍କ ପାଖରେ ଗୁହାରି ମଧ୍ୟ କରିଥାଅ । (୧୬/୫୨-୫୩)

وَ لَهٗ مَا فِی السَّمٰوٰتِ وَ الْاَرْضِ وَ لَهُ الدِّیْنُ وَاصِبًا ؕ اَفَغَیْرَ اللّٰهِ تَتَّقُوْنَ ﴿۵۲﴾ وَ مَا بِكُمْ مِّنْ نِّعْمَةٍ فَمِنَ اللّٰهِ ثُمَّ اِذَا مَسَّكُمُ الضُّرُّ فَاِلَیْهِ تَجْـَٔرُوْنَ ﴿ۚ۵۳﴾

**୨୩୧. ଈଶ୍ୱର ତୁରନ୍ତ ଦୋଷ ଧରନ୍ତି ନାହିଁ**

ଯଦି ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କ ଦୋଷ ପାଇଁ (ତୁରନ୍ତ) ଦଣ୍ଡ ଦିଅନ୍ତେ, ତେବେ ଧରାପୃଷ୍ଠରେ ଗୋଟିଏ ହେଲେ ପ୍ରାଣୀ ଜୀବିତ ରୁହନ୍ତା ନାହିଁ । ମାତ୍ର ସେ ସେମାନଙ୍କୁ ଏକ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ସୁଯୋଗ ଦିଅନ୍ତି ଏବଂ ଯେତେବେଳେ ସେମାନଙ୍କର ସେହି ସମୟ ଆସିଯିବ, ସେତେବେଳେ କେହି ମୁହୂର୍ତ୍ତିଟିଏ ମଧ୍ୟ ଆଗପଛ ହୋଇ ପାରିବେ ନାହିଁ । (୧୬/୬୧)

وَلَوْ یُؤَاخِذُ اللّٰهُ النَّاسَ بِظُلْمِهِمْ مَّا تَرَكَ عَلَیْهَا مِنْ دَآبَّةٍ وَّلٰكِنْ یُّؤَخِّرُهُمْ اِلٰۤى اَجَلٍ مُّسَمًّى ۚ فَاِذَا جَآءَ اَجَلُهُمْ لَا یَسْتَاْخِرُوْنَ سَاعَةً وَّ لَا یَسْتَقْدِمُوْنَ ﴿۶۱﴾

**୨୩୨. ପ୍ରଭୁଙ୍କ ଅନୁଗ୍ରହଗୁଡ଼ିକୁ ସ୍ୱୀକାର କର**

ଅଲ୍ଲାହ୍ ତୁମମାନଙ୍କୁ ମାତୃଗର୍ଭରୁ ଏଭଳି ଅବସ୍ଥାରେ ବାହାର କରି ଆଣିଲେ ଯେ ତୁମେମାନେ କିଛି ଜାଣି ନଥିଲ । ସେ ତୁମମାନଙ୍କୁ ଆଖି ଦେଲେ, କାନ ଦେଲେ ଏବଂ ହୃଦୟ ଦେଲେ, ଯେପରିକି ତୁମେମାନେ ତାଙ୍କ ଉପକାର ମାନିବ । (୧୬/୭୮)

وَ اللّٰهُ اَخْرَجَكُمْ مِّنْۢ بُطُوْنِ اُمَّهٰتِكُمْ لَا تَعْلَمُوْنَ شَیْـًٔا ۙ وَّ جَعَلَ لَكُمُ السَّمْعَ وَ الْاَبْصَارَ وَ الْاَفْـِٕدَةَ ۙ لَعَلَّكُمْ تَشْكُرُوْنَ ﴿۷۸﴾

**୨୩୩. ଅନ୍ୟାୟ, ଅତ୍ୟାଚାର ଓ ଅଶ୍ଳୀଳତା ନିଷିଦ୍ଧ**

ଅଲ୍ଲାହ୍ ତୁମମାନଙ୍କୁ ନ୍ୟାୟ ବିଚାର କରିବା, (ଅନ୍ୟର) ଉପକାର କରିବା ଏବଂ ନିକଟ ସଂପର୍କୀୟମାନଙ୍କୁ (ସେମାନଙ୍କର ପ୍ରାପ୍ୟ) ଦେବାର ଆଜ୍ଞା ଦେଉଛନ୍ତି ଏବଂ ଅଶ୍ଳୀଳତା, ଅପକର୍ମ ତଥା ଅନ୍ୟାୟ-ଅତ୍ୟାଚାରରୁ ବିରତ ରହିବାର ମଧ୍ୟ ଆଜ୍ଞା ଦେଉଛନ୍ତି । ସେ ତୁମମାନଙ୍କୁ ଏହି ଉପଦେଶ ଦେଉଛନ୍ତି, ଯେପରିକି ତୁମେମାନେ ମନେରଖିବ । (୧୬/୯୦)

اِنَّ اللّٰهَ یَاْمُرُ بِالْعَدْلِ وَ الْاِحْسَانِ وَ اِیْتَآئِ ذِی الْقُرْبٰى وَ یَنْهٰى عَنِ الْفَحْشَآءِ وَ الْمُنْكَرِ وَ الْبَغْیِ ۚ یَعِظُكُمْ لَعَلَّكُمْ تَذَكَّرُوْنَ ﴿۹۰﴾

## ୨୩୪. ନିଜର ପ୍ରତିଶ୍ରୁତି ପୂରଣ କର

وَ اَوۡفُوۡا بِعَهۡدِ اللّٰهِ اِذَا عٰهَدۡتُّمۡ وَ لَا تَنۡقُضُوا الۡاَيۡمَانَ بَعۡدَ تَوۡكِيۡدِهَا وَ قَدۡ جَعَلۡتُمُ اللّٰهَ عَلَيۡكُمۡ كَفِيۡلًا ؕ اِنَّ اللّٰهَ يَعۡلَمُ مَا تَفۡعَلُوۡنَ ﴿۹۱﴾

ଯଦି ତୁମେମାନେ (ପରସ୍ପର ମଧ୍ୟରେ) କୌଣସି ଚୁକ୍ତି କର, ତେବେ ଅଲ୍ଲାହଙ୍କୁ ଦେଇଥିବା ବଚନ ରକ୍ଷା କର । ଅଲ୍ଲାହଙ୍କୁ ସାକ୍ଷୀ ରଖି ଦୃଢ଼ ପ୍ରତିଶ୍ରୁତି ଦେଲାପରେ ତାହା ଭାଂଗି ଦିଅନାହିଁ । ତୁମେମାନେ ଯାହା କରୁଛ, ଅଲ୍ଲାହ୍ ତାହା ଜାଣନ୍ତି । (୧୬/୯୧)

## ୨୩୫. ସଦାଚାରୀଙ୍କ ପାର୍ଥିବ ଜୀବନ ମଧ୍ୟ ଆନନ୍ଦମୟ ହେବ

مَنۡ عَمِلَ صَالِحًا مِّنۡ ذَكَرٍ اَوۡ اُنۡثٰى وَ هُوَ مُؤۡمِنٌ فَلَنُحۡيِيَنَّهٗ حَيٰوةً طَيِّبَةً ۚ وَلَنَجۡزِيَنَّهُمۡ اَجۡرَهُمۡ بِاَحۡسَنِ مَا كَانُوۡا يَعۡمَلُوۡنَ ﴿۹۷﴾

ପୁରୁଷ ହେଉ ବା ନାରୀ, ଯିଏ ସତକର୍ମ କରେ ଆଉ ସଦ୍‌ବିଶ୍ୱାସୀ ହୋଇଥାଏ, ଆମ୍ଭେ ଅବଶ୍ୟ ତା' ସାଂସାରିକ ଜୀବନକୁ ଆନନ୍ଦମୟ କରିବୁ ଏବଂ ଏଭଳି ଲୋକମାନଙ୍କୁ (ପରଲୋକରେ) ସେମାନଙ୍କ ସୁକର୍ମର ସମୁଚିତ ପୁରସ୍କାର (ମଧ୍ୟ) ଦେବୁ । (୧୬/୯୭)

## ୨୩୬. ନିଷିଦ୍ଧ ଭୋଜନ

اِنَّمَا حَرَّمَ عَلَيۡكُمُ الۡمَيۡتَةَ وَ الدَّمَ وَ لَحۡمَ الۡخِنۡزِيۡرِ وَ مَاۤ اُهِلَّ لِغَيۡرِ اللّٰهِ بِهٖ ۚ فَمَنِ اضۡطُرَّ غَيۡرَ بَاغٍ وَّلَا عَادٍ فَاِنَّ اللّٰهَ غَفُوۡرٌ رَّحِيۡمٌ ﴿۱۱۵﴾

ସେ ତୁମମାନଙ୍କ ପାଇଁ କେବଳ ମୁର୍ଦ୍ଦାର, ରକ୍ତ ଓ ଶୁକର ମାଂସ ଏବଂ ସେହି ଖାଦ୍ୟ ନିଷିଦ୍ଧ କରିଛନ୍ତି, ଯାହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇ ଥାଏ । ଯଦି କେହି ନିରୁପାୟ ହୋଇ ଅନିଚ୍ଛା ସତ୍ତ୍ୱେ ଖାଇବାକୁ ବାଧ୍ୟ ହୁଏ ଏବଂ (ନିଜ ଆବଶ୍ୟକତାର) ସୀମା ଲଂଘନ କରେ, ତେବେ ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଏବଂ କରୁଣାମୟ । (୧୬/୧୧୫)

## ୨୩୭. ମନଇଚ୍ଛା ବୈଧକୁ ଅବୈଧ ଆଖ୍ୟା ଦେଲେ ନର୍କଦଣ୍ଡ ଭୋଗିବ

وَ لَا تَقُوۡلُوۡا لِمَا تَصِفُ اَلۡسِنَتُكُمُ الۡكَذِبَ هٰذَا حَلٰلٌ وَّ هٰذَا حَرَامٌ لِّتَفۡتَرُوۡا عَلَى اللّٰهِ الۡكَذِبَ ؕ اِنَّ الَّذِيۡنَ يَفۡتَرُوۡنَ عَلَى اللّٰهِ الۡكَذِبَ لَا يُفۡلِحُوۡنَ ﴿۱۱۶﴾ مَتَاعٌ قَلِيۡلٌ ۖ وَّلَهُمۡ عَذَابٌ اَلِيۡمٌ ﴿۱۱۷﴾

ଯାହା ମୁହଁକୁ ଆସିଲା ସତମିଛ କରି କହିଦିଅନା ଯେ ଏହା ବୈଧ ଏବଂ ତାହା ଅବୈଧ, କାରଣ ଏହାଦ୍ୱାରା ତୁମେମାନେ ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ କରିବ । ଅଲ୍ଲାହଙ୍କ ନାମରେ ମିଥ୍ୟା ଗଢୁଥିବା ଲୋକମାନେ ଆଦୌ ସଫଳ ହେବେ ନାହିଁ । (ଏହା ଦ୍ୱାରା) ସାମାନ୍ୟ ସୁଖ ମିଳେ, ମାତ୍ର ଏଥିପାଇଁ ସେମାନଙ୍କୁ କଠୋର ଶାସ୍ତି ଭୋଗିବାକୁ ପଡ଼ିବ । (୧୬/୧୧୬-୧୧୭)

**୨୩୮. ବିଜ୍ଞତାର ସହ ଉପଦେଶ ଦିଅ**

ବିଜ୍ଞତାର ସହ ହିତୋପଦେଶ ଦେଇ (ଲୋକମାନଙ୍କୁ) ନିଜ ପରମେଶ୍ୱରଙ୍କ ମାର୍ଗକୁ ଡାକ ଏବଂ ସେମାନଙ୍କ ସହିତ ଉତ୍ତମ ଶୈଳୀରେ ଆଲୋଚନା କର । ତୁମ ପ୍ରଭୁ ବେଶ୍ ଜାଣନ୍ତି ଯେ କିଏ ତାଙ୍କ ପଥରେ ଅଛି ଆଉ କିଏ ପଥଭ୍ରଷ୍ଟ ହେଲା । (୧୬/୧୨୫)

ادْعُ إِلَىٰ سَبِيلِ رَبِّكَ بِالْحِكْمَةِ وَالْمَوْعِظَةِ
الْحَسَنَةِ ۖ وَجَادِلْهُم بِالَّتِي هِيَ أَحْسَنُ ۚ إِنَّ رَبَّكَ
هُوَ أَعْلَمُ بِمَن ضَلَّ عَن سَبِيلِهِ ۖ وَهُوَ أَعْلَمُ
بِالْمُهْتَدِينَ ﴿١٢٥﴾

**୨୩୯. କେହି ଅତ୍ୟାଚାର କଲେ ତାକୁ କ୍ଷମା କରିଦିଅ**

ଯଦି ତୁମେମାନେ (ଅନ୍ୟାୟର) ପ୍ରତିବଦଳ ସ୍ୱରୂପ (କାହାରିକୁ) ଦଣ୍ଡ ଦେବାକୁ ଚାହଁ, ତେବେ (କେବଳ) ସେହି ମାତ୍ରାରେ ଦିଅ, ଯେଉଁ ମାତ୍ରାରେ ତୁମପ୍ରତି ଅତ୍ୟାଚାର ହେଲା, ମାତ୍ର ଯଦି ତୁମେମାନେ ସହିଯାଅ, ତେବେ ସହନଶୀଳ ଲୋକମାନଙ୍କ ପାଇଁ (ଏହାର ପରିଣାମ) ଖୁବ ଭଲ ହେବ । (୧୬/୧୨୬)

وَإِنْ عَاقَبْتُمْ فَعَاقِبُوا بِمِثْلِ مَا عُوقِبْتُم بِهِ ۖ وَ
لَئِن صَبَرْتُمْ لَهُوَ خَيْرٌ لِّلصَّابِرِينَ ﴿١٢٦﴾

**୨୪୦. ଅଲ୍ଲାହ ପରୋପକାରୀମାନଙ୍କର ପରମ ମିତ୍ର**

ଅଲ୍ଲାହ୍ ସଦାଚାରୀ ଏବଂ ପରୋପକାରୀ ଲୋକମାନଙ୍କ ସହିତ ଅବଶ୍ୟ ରହିଥାଆନ୍ତି । (୧୬/୧୨୮)

إِنَّ اللَّهَ مَعَ الَّذِينَ اتَّقَوا وَّالَّذِينَ هُم مُّحْسِنُونَ ﴿١٢٨﴾

**୨୪୧. ତୁମ କର୍ମକୁ ତୁମ ଗଳାର ହାର କରାଯାଇଛି**

ପ୍ରତ୍ୟେକ ବ୍ୟକ୍ତିର କର୍ମକୁ ଆମ୍ଭେ ତା' ଗଳାର ହାର କରି ଦେଇଛୁ ଏବଂ ବିଚାର ଦିନ ତା' କର୍ମପଂଜିକା ବହାର କରି ତା' ସମ୍ମୁଖରେ ଖୋଲିଦେବୁ, ଯାହାକୁ ସେ ପରିଷ୍କାର ଦେଖି ପାରିବ । (ତାକୁ କହିବୁ) "ନିଜର କର୍ମପଂଜିକା ତୁ ନିଜେ ପଢ଼ । ଆଜି ତୁ ନିଜେ ନିଜର ହିସାବ ନେବା ପାଇଁ ଯଥେଷ୍ଟ ।" (୧୭/୧୩-୧୪)

وَكُلَّ إِنسَانٍ أَلْزَمْنَاهُ طَائِرَهُ فِي عُنُقِهِ ۖ وَنُخْرِجُ
لَهُ يَوْمَ الْقِيَامَةِ كِتَابًا يَلْقَاهُ مَنشُورًا ﴿١٣﴾ اقْرَأْ
كِتَابَكَ كَفَىٰ بِنَفْسِكَ الْيَوْمَ عَلَيْكَ حَسِيبًا ﴿١٤﴾

**୨୪୨. ଯିଏ କର୍ମ କରେ ସେ ହିଁ ଫଳ ଭୋଗିବ**

ଯିଏ ସତପଥ ଅନୁସରଣ କରେ, ନିଜ ମଂଗଳ ପାଇଁ କରେ । ଯିଏ ବିପଥଗାମୀ ହୁଏ, ତାର ପରିଣାମ ମଧ୍ୟ ସେ ହିଁ ଭୋଗିବ । କେହି କାହାରି ବୋଝ ମୁଣ୍ଡାଇବ ନାହିଁ । (୧୭/୧୫)

مَّنِ اهْتَدَىٰ فَإِنَّمَا يَهْتَدِي لِنَفْسِهِ ۖ وَمَن ضَلَّ
فَإِنَّمَا يَضِلُّ عَلَيْهَا ۚ وَلَا تَزِرُ وَازِرَةٌ وِزْرَ أُخْرَىٰ ۗ

**୨୪୩. ଈଶ୍ୱର ସାବଧାନ ନକରି ଦଣ୍ଡ ଦିଅନ୍ତି ନାହିଁ**

ଆମ୍ଭେ ଯେପର୍ଯ୍ୟନ୍ତ କୌଣସି ବାର୍ତ୍ତାବହ ନ ପଠାଇଛୁ, ସେପର୍ଯ୍ୟନ୍ତ କାହାରିକୁ ଶାସ୍ତି ଦେଉନା । (୧୭/୧୫)

وَمَا كُنَّا مُعَذِّبِينَ حَتَّىٰ نَبْعَثَ رَسُولًا ﴿١٥﴾

### ୨୪୪.ପ୍ରଭୁଙ୍କର ଅବଜ୍ଞା ହେଲେ ଦୈବୀବିପତ୍ତି ଆସେ

ଯେତେବେଳେ ଆମ୍ଭେ କୌଣସି ଜନବସତିକୁ ବିଲୋପ କରିବାର ନିଷ୍ପତ୍ତି ନେଉ, ସେଠାରେ ସୁଖସ୍ୱାଛନ୍ଦ୍ୟରେ ବାସ କରୁଥିବା ବାସିନ୍ଦାମାନଙ୍କୁ (ବାର୍ତ୍ତାବହଙ୍କ ମାଧ୍ୟମରେ) ନିଜର ଆଜ୍ଞା ଦେଇଥାଉ । ତା'ପରେ ସେମାନେ ଅବଜ୍ଞା କରନ୍ତି, ଯାହାଫଳରେ ସେମାନଙ୍କ ପ୍ରତି ଶାସ୍ତିର ଯଥାର୍ଥତା ସିଦ୍ଧ ହୋଇଯାଏ । ପୁଣି ଆମ୍ଭେ ସେହି ଜନବସତିକୁ ଧ୍ୱଂସ କରିଦେଉ । (୧୭/୧୬)

وَإِذَآ أَرَدْنَآ أَن نُّهْلِكَ قَرْيَةً أَمَرْنَا مُتْرَفِيهَا
فَفَسَقُوا۟ فِيهَا فَحَقَّ عَلَيْهَا ٱلْقَوْلُ فَدَمَّرْنَٰهَا
تَدْمِيرًا ١٦

### ୨୪୫. ପିତାମାତାଙ୍କୁ କଷ୍ଟ ଦିଅନାହିଁ

ତୁମ ପ୍ରଭୁ ଆଜ୍ଞା ଦେଇଛନ୍ତି ଯେ ତାଙ୍କ ବ୍ୟତୀତ ଅନ୍ୟ କାହାରି ପୂଜା-ଉପାସନା କରନାହିଁ ଏବଂ ପିତାମାତାଙ୍କର ସେବା କର । ଯଦି ତୁମ ଜୀବନକାଳରେ ସେମାନଙ୍କ ମଧ୍ୟରୁ ଜଣେ ବା ଉଭୟ ବୃଦ୍ଧାବସ୍ଥାରେ ଉପନୀତ ହୁଅନ୍ତି, ତେବେ ସେମାନଙ୍କୁ (ବିରକ୍ତି ପ୍ରକାଶ କରି) "ଓଃ" ସୁଦ୍ଧା କୁହ ନାହିଁ ବା କଟୁକଥା କୁହନାହିଁ । ସେମାନଙ୍କ ସହିତ ଆଦରପୂର୍ବକ କଥାବାର୍ତ୍ତା କର । ସେମାନଙ୍କ ପ୍ରତି ଦୟାଶୀଳ ଆଉ ବିନମ୍ର ହୁଅ ଏବଂ ସେମାନଙ୍କ ପାଇଁ ପ୍ରାର୍ଥନା କରୁଥାଅ ଯେ, "ହେ ପାଳନକର୍ତ୍ତା ! ତୁମେ ସେମାନଙ୍କ ପ୍ରତି ଦୟା କର, କାରଣ ସେମାନେ ବାଲ୍ୟାବସ୍ଥାରେ (ସ୍ନେହ ମମତା ଦେଇ) ମୋର ଲାଳନପାଳନ କରିଛନ୍ତି ।" ତୁମ ପ୍ରଭୁ ତୁମମାନଙ୍କ ଅନ୍ତର କଥା ଜାଣନ୍ତି । ଯଦି ତୁମେମାନେ ସଦାଚାରୀ ହୁଅ, ତେବେ (ଜାଣିରଖ) ସେ ଅନୁତାପ କରୁଥିବା ଲୋକଙ୍କର ଦୋଷ କ୍ଷମା କରିଦିଅନ୍ତି । (୧୭/୨୩-୨୫)

وَقَضَىٰ رَبُّكَ أَلَّا تَعْبُدُوٓا۟ إِلَّآ إِيَّاهُ وَبِٱلْوَٰلِدَيْنِ
إِحْسَٰنًا ۚ إِمَّا يَبْلُغَنَّ عِندَكَ ٱلْكِبَرَ أَحَدُهُمَآ
أَوْ كِلَاهُمَا فَلَا تَقُل لَّهُمَآ أُفٍّ وَلَا تَنْهَرْهُمَا وَقُل
لَّهُمَا قَوْلًا كَرِيمًا ٢٣ وَٱخْفِضْ لَهُمَا جَنَاحَ
ٱلذُّلِّ مِنَ ٱلرَّحْمَةِ وَقُل رَّبِّ ٱرْحَمْهُمَا كَمَا
رَبَّيَانِى صَغِيرًا ٢٤ رَّبُّكُمْ أَعْلَمُ بِمَا فِى نُفُوسِكُمْ ۚ
إِن تَكُونُوا۟ صَٰلِحِينَ فَإِنَّهُۥ كَانَ لِلْأَوَّٰبِينَ غَفُورًا ٢٥

### ୨୪୬.ଆତ୍ମୀୟସ୍ୱଜନ ଓ ଦୀନଦୁଃଖୀଙ୍କୁ ସାହାଯ୍ୟ କର

ଆତ୍ମୀୟସ୍ୱଜନ, ଦୀନଦୁଃଖୀ ଓ (ଅସହାୟ) ପଥଚାରୀମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଉଥାଅ ଏବଂ ଅଯଥା ଖର୍ଚ୍ଚ କରନାହିଁ । ବାସ୍ତବରେ ଅପବ୍ୟୟ କରୁଥିବା ବ୍ୟକ୍ତିମାନେ ଶଇତାନର ଭାଇ ଏବଂ ଶଇତାନ ତା' ପ୍ରଭୁଙ୍କ ପ୍ରତି ଅତ୍ୟନ୍ତ ଅକୃତଜ୍ଞ । ଯଦି ତୁମ ପାଖରେ ସେମାନଙ୍କୁ ଦେବା ପାଇଁ କିଛି ନାହିଁ ଆଉ ତୁମେ ଅଲ୍ଲାହଙ୍କ ଅନୁଗ୍ରହର ଅପେକ୍ଷାରେ ଅଛ ଏବଂ ଏହି କାରଣରୁ ସେମାନଙ୍କୁ ମନା କରିବାକୁ ପଡ଼େ, ତେବେ ସେମାନଙ୍କୁ ପଦେ ମିଠା କଥା କହି ବୁଝାଇ ଦିଅ । (୧୭/୨୬-୨୮)

وَءَاتِ ذَا ٱلْقُرْبَىٰ حَقَّهُۥ وَٱلْمِسْكِينَ وَٱبْنَ ٱلسَّبِيلِ
وَلَا تُبَذِّرْ تَبْذِيرًا ٢٦ إِنَّ ٱلْمُبَذِّرِينَ كَانُوٓا۟
إِخْوَٰنَ ٱلشَّيَٰطِينِ ۖ وَكَانَ ٱلشَّيْطَٰنُ لِرَبِّهِۦ
كَفُورًا ٢٧ وَإِمَّا تُعْرِضَنَّ عَنْهُمُ ٱبْتِغَآءَ رَحْمَةٍ
مِّن رَّبِّكَ تَرْجُوهَا فَقُل لَّهُمْ قَوْلًا مَّيْسُورًا ٢٨

## ୨୪୭. ମଧ୍ୟମ ମାର୍ଗ ଅବଲମ୍ବନ କର

(କୃପଣ ପରି) ହାତ ବାନ୍ଧି ବସିଯାଅ ନାହିଁ କିମ୍ବା ପୂରାପୁରି ହାତ ଖୋଲିଦିଅ ନାହିଁ, ଅନ୍ୟଥା ତୁମେ (କୃପଣତା ଯୋଗୁଁ) ନିନ୍ଦା-ଭର୍ତ୍ସନା ଶୁଣିବ କିମ୍ବା (ସବୁକିଛି ହରାଇ) ଅନୁଶୋଚନା କରିବ। ତୁମ ପାଳନକର୍ତ୍ତା ଯାହାକୁ ଚାହାନ୍ତି ତାକୁ ପ୍ରଚୁର ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି। ସେ ନିଜ ସେବକମାନଙ୍କ (ଅବସ୍ଥା ସଂପର୍କରେ) ଖବର ରଖନ୍ତି ଏବଂ ସେମାନଙ୍କ ପ୍ରତି ନଜର ରଖି ଥାଆନ୍ତି।(୧୭/୨୯-୩୦)

وَلَا تَجْعَلْ يَدَكَ مَغْلُولَةً إِلَىٰ عُنُقِكَ وَلَا تَبْسُطْهَا
كُلَّ الْبَسْطِ فَتَقْعُدَ مَلُومًا مَّحْسُورًا ﴿٢٩﴾ إِنَّ رَبَّكَ
يَبْسُطُ الرِّزْقَ لِمَن يَشَاءُ وَيَقْدِرُ ۚ إِنَّهُ كَانَ
بِعِبَادِهِ خَبِيرًا بَصِيرًا ﴿٣٠﴾

## ୨୪୮. ଦାରିଦ୍ର୍ୟ ଭୟରେ ସନ୍ତାନର ହତ୍ୟା କର ନାହିଁ

ଗରିବ ହୋଇଯିବା ଭୟରେ ନିଜ ସନ୍ତାନମାନଙ୍କୁ ହତ୍ୟା କରିଦିଅ ନାହିଁ। ଆମ୍ଭେ ସେମାନଙ୍କୁ ଆହାର ଦେଉ ଏବଂ ତୁମମାନଙ୍କୁ ମଧ୍ୟ ଦେଉ। ସେମାନଙ୍କର ହତ୍ୟା ଅବଶ୍ୟ ମହାପାପ। (୧୭/୩୧)

وَلَا تَقْتُلُوا أَوْلَادَكُمْ خَشْيَةَ إِمْلَاقٍ ۖ نَّحْنُ
نَرْزُقُهُمْ وَإِيَّاكُمْ ۚ إِنَّ قَتْلَهُمْ كَانَ خِطْئًا
كَبِيرًا ﴿٣١﴾

## ୨୪୯. ବ୍ୟଭିଚାରର ପାଖ ମାଡ଼ ନାହିଁ

ବ୍ୟଭିଚାରର ପାଖ ମାଡ଼ ନାହିଁ। ନିଃସନ୍ଦେହରେ ଏହା ଏକ ଚରମ ନିର୍ଲଜତା ଏବଂ ଅତିଶୟ କଦର୍ଯ୍ୟ ମାର୍ଗ। (୧୭/୩୨)

وَلَا تَقْرَبُوا الزِّنَىٰ ۖ إِنَّهُ كَانَ فَاحِشَةً وَسَاءَ
سَبِيلًا ﴿٣٢﴾

## ୨୫୦. କାହାରି ପ୍ରାଣ ନିଅନାହିଁ

ଯେଉଁ ଜୀବର ହତ୍ୟା ଅଲ୍ଲାହ୍ ନିଷିଦ୍ଧ କରିଛନ୍ତି, ତାହାକୁ ଉଚିତ କାରଣ ବିନା ହତ୍ୟା କରନାହିଁ। ଯେଉଁ ବ୍ୟକ୍ତିକୁ ଅନ୍ୟାୟରେ ହତ୍ୟା କରାଯାଏ, ଆମ୍ଭେ ତା' ଉତ୍ତରାଧିକାରୀକୁ ପ୍ରତିବଦଳ ଦାବୀ କରିବାର ଅଧିକାର ପ୍ରଦାନ କରିଛୁ, ମାତ୍ର ସେ ପ୍ରତିଶୋଧ ନେବାରେ ସୀମାଲଂଘନ ନକରୁ। ତା'ହେଲେ ତା'ର ସହାୟତା କରାଯିବ। (୧୭/୩୩)

وَلَا تَقْتُلُوا النَّفْسَ الَّتِي حَرَّمَ اللَّهُ إِلَّا بِالْحَقِّ ۗ
وَمَن قُتِلَ مَظْلُومًا فَقَدْ جَعَلْنَا لِوَلِيِّهِ سُلْطَانًا
فَلَا يُسْرِف فِّي الْقَتْلِ ۖ إِنَّهُ كَانَ مَنصُورًا ﴿٣٣﴾

## ୨୫୧. ଅନାଥମାନଙ୍କ ଧନ ଆତ୍ମସାତ କରନାହିଁ

ଅନାଥ ପିଲାମାନେ ପ୍ରାପ୍ତବୟସ୍କ ନ ହେବା ପର୍ଯ୍ୟନ୍ତ ଯଥାର୍ଥ କାରଣ ବିନା ସେମାନଙ୍କ ଧନସଂପତ୍ତିରେ ହାତ ଦିଅ ନାହିଁ ଏବଂ ନିଜର ପ୍ରତିଶ୍ରୁତି ପାଳନ କର। ଜାଣିରଖ ଯେ ପ୍ରତିଶ୍ରୁତି ସଂପର୍କରେ ତୁମମାନଙ୍କୁ ଅବଶ୍ୟ ପ୍ରଶ୍ନ କରାଯିବ। (୧୭/୩୪)

وَلَا تَقْرَبُوا مَالَ الْيَتِيمِ إِلَّا بِالَّتِي هِيَ أَحْسَنُ
حَتَّىٰ يَبْلُغَ أَشُدَّهُ ۚ وَأَوْفُوا بِالْعَهْدِ ۖ إِنَّ الْعَهْدَ
كَانَ مَسْئُولًا ﴿٣٤﴾

**୨୫୨. ମାପ-ଓଜନ ସଠିକ୍ ଭାବରେ କର**

وَ اَوۡفُوا الۡکَیۡلَ اِذَا کِلۡتُمۡ وَ زِنُوۡا بِالۡقِسۡطَاسِ الۡمُسۡتَقِیۡمِ ؕ ذٰلِکَ خَیۡرٌ وَّ اَحۡسَنُ تَاۡوِیۡلًا ﴿۳۵﴾

ଯଦି କାହାରିକୁ କିଛି ମାପ କରି ଦିଅ, ତେବେ ମାପପାତ୍ର ଭଲରୂପେ ପୂରଣ କରି ଦିଅ ଏବଂ (ଯଦି ଓଜନ କରି ଦିଅ, ତେବେ) ସଠିକ୍ ନିକିତିରେ ଓଜନ କର । ଏହା ଭଲ ପନ୍ଥା ଏବଂ ଏହାର ପରିଣାମ ମଧ୍ୟ ଖୁବ ଭଲ । (୧୭/୩୫)

**୨୫୩. ଅନୁମାନ ଆଧାରରେ କର୍ମ କରନାହିଁ**

وَلَا تَقۡفُ مَا لَیۡسَ لَکَ بِهٖ عِلۡمٌ ؕ اِنَّ السَّمۡعَ وَالۡبَصَرَ وَالۡفُؤَادَ کُلُّ اُولٰٓئِکَ کَانَ عَنۡهُ مَسۡـُٔوۡلًا ﴿۳۶﴾

ଯେଉଁ ବିଷୟରେ ତୁମର ସଠିକ୍ ଜ୍ଞାନ ନାହିଁ, (କେବଳ ଅନୁମାନ ଆଧାରରେ) ତାହାର ଅନୁସରଣ କରନାହିଁ । ଜାଣିରଖ ଯେ ଆଖି, କାନ ଓ ମନ - ଏଗୁଡ଼ିକ ସଂପର୍କରେ ପ୍ରତ୍ୟେକ ବ୍ୟକ୍ତିକୁ ପ୍ରଶ୍ନ କରାଯିବ । (୧୭/୩୬)

**୨୫୪. ଅହଂକାର କର ନାହିଁ**

وَ لَا تَمۡشِ فِی الۡاَرۡضِ مَرَحًا ۚ اِنَّکَ لَنۡ تَخۡرِقَ الۡاَرۡضَ وَلَنۡ تَبۡلُغَ الۡجِبَالَ طُوۡلًا ﴿۳۷﴾ کُلُّ ذٰلِکَ کَانَ سَیِّئُهٗ عِنۡدَ رَبِّکَ مَکۡرُوۡهًا ﴿۳۸﴾ ذٰلِکَ مِمَّاۤ اَوۡحٰۤی اِلَیۡکَ رَبُّکَ مِنَ الۡحِکۡمَةِ ؕ وَ لَا تَجۡعَلۡ مَعَ اللّٰهِ اِلٰـهًا اٰخَرَ فَتُلۡقٰی فِیۡ جَهَنَّمَ مَلُوۡمًا مَّدۡحُوۡرًا ﴿۳۹﴾

ଧରାପୃଷ୍ଠରେ ଦାମ୍ଭିକତାର ସହ ଚାଲ ନାହିଁ । ତୁମେ ଧରିତ୍ରୀକୁ ଫଟାଇ ଦେଇପାରିବ ନାହିଁ କିମ୍ବା ଉଚ୍ଚତାରେ ପାହାଡ଼ ସମାନ ହୋଇ ପାରିବ ନାହିଁ । ଏହି ଦୁଷ୍କର୍ମଗୁଡ଼ିକ ତୁମ ପରମେଶ୍ୱରଙ୍କୁ ଆଦୌ ପସନ୍ଦ ନୁହେଁ । (ହେ ବାର୍ତ୍ତାବହ !) ଏସବୁ ସେହି ତତ୍ତ୍ୱଜ୍ଞାନ, ଯାହା ତୁମ ପରମେଶ୍ୱର ତୁମ ପ୍ରତି ଦୈବବାଣୀ କରିଛନ୍ତି । ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସ୍ୟ ରୂପେ ଗ୍ରହଣ କର ନାହିଁ, ଅନ୍ୟଥା ତୁମକୁ ଲାଂଛିତ ଓ ତିରସ୍କୃତ କରି ନର୍କରେ ଫୋପାଡ଼ି ଦିଆଯିବ । (୧୭/୩୭-୩୯)

**୨୫୫. ପଥର ହୋଇଯାଅ ବା ଲୁହା, ପୁନର୍ଜୀବିତ ହେବ**

وَ قَالُوۡۤا ءَ اِذَا کُنَّا عِظَامًا وَّ رُفَاتًا ءَ اِنَّا لَمَبۡعُوۡثُوۡنَ خَلۡقًا جَدِیۡدًا ﴿۴۹﴾ قُلۡ کُوۡنُوۡا حِجَارَةً اَوۡ حَدِیۡدًا ﴿۵۰﴾ اَوۡ خَلۡقًا مِّمَّا یَکۡبُرُ فِیۡ صُدُوۡرِکُمۡ ۚ فَسَیَقُوۡلُوۡنَ مَنۡ یُّعِیۡدُنَا ؕ قُلِ الَّذِیۡ فَطَرَکُمۡ اَوَّلَ مَرَّةٍ ۚ

ସେମାନେ କହନ୍ତି, "କ'ଣ (ମୃତ୍ୟୁ ପରେ) ଆମେ ହାଡ଼ ଆଉ ମାଟିରେ ପରିଣତ ହୋଇ ସାରିବା ପରେ ମଧ୍ୟ ପୁଣି ନୂଆ ଜୀବନ ପାଇ ଉଠିବୁ ?" ସେମାନଙ୍କୁ କହିଦିଅ, "ତୁମେମାନେ ପଥର ହୋଇଯାଅ ବା ଲୁହା କିମ୍ବା ଏଭଳି କୌଣସି ବସ୍ତୁ ହୋଇଯାଅ, ଯାହାକି ତୁମମାନଙ୍କ ଅନୁସାରେ ତା'ଠାରୁ ମଧ୍ୟ ଅଧିକ କଠିନତର, (ତଥାପି ତୁମମାନଙ୍କୁ ପୁନର୍ଜୀବିତ କରାଯିବ) । ପୁଣି ସେମାନେ ପଚାରିବେ, "କିଏ ଆମକୁ ପୁନର୍ଜୀବିତ କରିବ ?" କହିଦିଅ, "ସେଇ କରିବେ, ଯିଏ ପ୍ରଥମ ଥର ତୁମମାନଙ୍କୁ ସୃଷ୍ଟି କରିଥିଲେ ।" (୧୭/୪୯-୫୧)

## ୨୫୬. ଶିଷ୍ଟତା ପୂର୍ବକ କଥାବାର୍ତ୍ତା କର

(ହେ ବାର୍ତ୍ତାବହ!) ମୋ' ଭକ୍ତମାନଙ୍କୁ କହିଦିଅ ଯେ ସେମାନେ (ଲୋକମନଙ୍କ ସହିତ) ଭଦ୍ର ଭାବରେ  କଥାବାର୍ତ୍ତା କରନ୍ତୁ। ବାସ୍ତବରେ ଶଇତାନ ସେମାନଙ୍କ ମଧ୍ୟରେ ବିବାଦ ସୃଷ୍ଟି କରାଇ ଥାଏ । ଶଇତାନ ତ ମଣିଷର ପରମ ଶତ୍ରୁ । (୧୭/୫୩)

وَ قُلْ لِّعِبَادِیْ یَقُوْلُوا الَّتِیْ هِیَ اَحْسَنُ ؕ اِنَّ الشَّیْطٰنَ یَنْزَغُ بَیْنَهُمْ ؕ اِنَّ الشَّیْطٰنَ كَانَ لِلْاِنْسَانِ عَدُوًّا مُّبِیْنًا ۝٥٣

## ୨୫୭. ମନୁଷ୍ୟ ସଂସାରର ସାରସୃଷ୍ଟି

ବାସ୍ତବରେ ଆମ୍ଭେ ଆଦମଙ୍କ ସନ୍ତାନମାନଙ୍କୁ ସମ୍ମାନ ଦେଇଛୁ । ଜଳ ଓ ସ୍ଥଳରେ ସେମାନଙ୍କ (ଯାତାୟାତ ପାଇଁ ବିଭିନ୍ନ) ପରିବହନ ବ୍ୟବସ୍ଥା କରିଛୁ, ସେମାନଙ୍କୁ ଶୁଦ୍ଧ ଆହାର ଦେଇଛୁ ଏବଂ ନିଜ ସୃଷ୍ଟିର ଅସଂଖ୍ୟ ପ୍ରାଣୀଙ୍କ ଉପରେ ସେମାନଙ୍କୁ ଶ୍ରେଷ୍ଠତା ପ୍ରଦାନ କରିଛୁ। ଦିନେ ଆମ୍ଭେ ସମଗ୍ର ମାନବସମାଜକୁ ସେମାନଙ୍କ କର୍ମପଂଜିକା ସହ ଉପସ୍ଥିତ କରିବୁ । ପୁଣି ଯେଉଁମାନଙ୍କୁ ସେମାନଙ୍କ କର୍ମପଂଜିକା ଡାହାଣ ହାତରେ ଦିଆଯିବ, ସେମାନେ  ତାହା (ଆନନ୍ଦରେ) ପଢ଼ିବେ। ସେମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ ହେବନାହିଁ। ଯିଏ ଇହଲୋକରେ (ଆଖି ଥାଉଥାଉ) ଅନ୍ଧ ହୋଇ ରହିଥିବ, ସେ ପରଲୋକରେ ମଧ୍ୟ ଅନ୍ଧ ରହିବ - ମୁକ୍ତିର ମାର୍ଗରୁ ବହୁ ଦୂରରେ। (୧୭/୭୦-୭୨)

وَ لَقَدْ كَرَّمْنَا بَنِیْۤ اٰدَمَ وَ حَمَلْنٰهُمْ فِی الْبَرِّ وَ الْبَحْرِ وَ رَزَقْنٰهُمْ مِّنَ الطَّیِّبٰتِ وَ فَضَّلْنٰهُمْ عَلٰی كَثِیْرٍ مِّمَّنْ خَلَقْنَا تَفْضِیْلًا ۝٧٠ یَوْمَ نَدْعُوْا كُلَّ اُنَاسٍۭ بِاِمَامِهِمْ ۚ فَمَنْ اُوْتِیَ كِتٰبَهٗ بِیَمِیْنِهٖ فَاُولٰٓىِٕكَ یَقْرَءُوْنَ كِتٰبَهُمْ وَ لَا یُظْلَمُوْنَ فَتِیْلًا ۝٧١ وَ مَنْ كَانَ فِیْ هٰذِهٖۤ اَعْمٰی فَهُوَ فِی الْاٰخِرَةِ اَعْمٰی وَ اَضَلُّ سَبِیْلًا ۝٧٢

## ୨୫୮. ପରମେଶ୍ୱରଙ୍କ ନୀତି ପରିବର୍ତ୍ତନଶୀଳ ନୁହେଁ

(ହେ ମୁହମ୍ମଦ!) ତୁମ ପୂର୍ବରୁ ଆମ୍ଭେ ପଠାଇଥିବା ସମସ୍ତ ଈଶ୍ୱରଦୂତମାନଙ୍କ ସଂପର୍କରେ ଆମର ସମାନ ନୀତି ରହି ଆସିଛି ଏବଂ ଆମ୍ଭ ନୀତିରେ ତୁମେ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବ ନାହିଁ। (୧୭/୭୭)

سُنَّةَ مَنْ قَدْ اَرْسَلْنَا قَبْلَكَ مِنْ رُّسُلِنَا وَ لَا تَجِدُ لِسُنَّتِنَا تَحْوِیْلًا ۝٧٧

## ୨୫୯. ନିୟମିତ ଦୈନିକ ଉପାସନା କର

(ହେ ବାର୍ତ୍ତାବହ!) ସୂର୍ଯ୍ୟ ଢ଼ଳିବା ପରଠାରୁ ରାତିର ଅନ୍ଧକାର ପର୍ଯ୍ୟନ୍ତ ନମାଜ ସଂପାଦନ କର ଏବଂ ପ୍ରତ୍ୟୁଷରେ (ଅର୍ଥାତ୍ ବ୍ରାହ୍ମ ମୂହୁର୍ତ୍ତରେ) ମଧ୍ୟ କୁରଆନ ପାଠ କର। (ଜାଣିରଖ) ପ୍ରତ୍ୟୁଷରେ କୁରଆନ ପାଠର ସମୟ (ଦେବଗଣଙ୍କ) ଉପସ୍ଥିତ ହେବାର ସମୟ। ରାତ୍ରିର ବିଭିନ୍ନ ପ୍ରହରରେ ମଧ୍ୟ (ନିଦ୍ରା ତ୍ୟାଗକରି)

اَقِمِ الصَّلٰوةَ لِدُلُوْكِ الشَّمْسِ اِلٰی غَسَقِ الَّیْلِ وَ قُرْاٰنَ الْفَجْرِ ؕ اِنَّ قُرْاٰنَ الْفَجْرِ كَانَ مَشْهُوْدًا ۝٧٨

କୁରଆନ ପାଠ କର (ଅର୍ଥାତ୍ ନମାଜପାଠ କର) । ଏହା ତୁମପାଇଁ ଏକ ଅତିରିକ୍ତ ଉପାସନା । ସମ୍ଭବତଃ ତୁମ ପ୍ରଭୁ ତୁମକୁ ଗୌରବମୟ ସ୍ଥାନରେ ପ୍ରତିଷ୍ଠିତ କରିବେ ।(୧୭/୭୮-୭୯)

وَمِنَ الَّيْلِ فَتَهَجَّدْ بِهٖ نَافِلَةً لَّكَ ۖ عَسٰٓى اَنْ
يَّبْعَثَكَ رَبُّكَ مَقَامًا مَّحْمُوْدًا ﴿٧٩﴾

**୨୬୦. ସମଗ୍ର ମାନବଜଗତ କୁରଆନ ପରି ଗ୍ରନ୍ଥ ରଚନା କରିବାକୁ ସମର୍ଥ ନୁହେଁ**

ତୁମେ ସେମାନଙ୍କୁ କହିଦିଅ, "ଯଦି ସମଗ୍ର ମାନବ ଓ ଦାନବ (ଅର୍ଥାତ୍ ଜିନ୍ନ) ସମୁଦାୟ ମିଶି ଏହି କୁରଆନ ପରି ଗ୍ରନ୍ଥଟିଏ ରଚନା କରିବାକୁ ଏକଜୁଟ ହୁଅନ୍ତି ଆଉ ସେମାନେ ପରସ୍ପରକୁ ଏଥିରେ ସାହାଯ୍ୟ ମଧ୍ୟ କରନ୍ତି, ତଥାପି ସେମାନେ ଏହିପରି (ଗ୍ରନ୍ଥଟିଏ) ରଚନା କରି ପାରିବେ ନାହିଁ ।" (୧୭/୮୮)

قُلْ لَّئِنِ اجْتَمَعَتِ الْاِنْسُ وَالْجِنُّ عَلٰٓى اَنْ يَّاْتُوْا
بِمِثْلِ هٰذَا الْقُرْاٰنِ لَا يَاْتُوْنَ بِمِثْلِهٖ وَلَوْ كَانَ
بَعْضُهُمْ لِبَعْضٍ ظَهِيْرًا ﴿٨٨﴾

**୨୬୧. କୁରଆନ ବିଭିନ୍ନ ଶୈଳୀରେ ବୁଝାଇଛି**

ଏହି କୁରଆନରେ ଆମ୍ଭେ ବିଭିନ୍ନ କଥାକୁ ବିଭିନ୍ନ ଶୈଳୀରେ ବୁଝାଇଛୁ, ମାତ୍ର ଅଧିକାଂଶ ଲୋକ ବିମୁଖ ହୋଇ ଏହାକୁ ପ୍ରତ୍ୟାଖ୍ୟାନ କରି ଦିଅନ୍ତି । (୧୭/୮୯)

وَلَقَدْ صَرَّفْنَا لِلنَّاسِ فِيْ هٰذَا الْقُرْاٰنِ مِنْ كُلِّ
مَثَلٍ فَاَبٰٓى اَكْثَرُ النَّاسِ اِلَّا كُفُوْرًا ﴿٨٩﴾

**୨୬୨. କୌଣସି ଦେବତା ଈଶ୍ୱରଦୂତ ହୁଅନ୍ତି ନାହିଁ**

ଲୋକମାନଙ୍କ ନିକଟରେ ମାର୍ଗଦର୍ଶନ ପହଁଚିବା ପରେ, ତାକୁ ଗ୍ରହଣ କରିବାରେ ଏଇକଥା ପ୍ରତିବନ୍ଧକ ସୃଷ୍ଟି କଲା ଯେ, ସେମାନେ କହିଲେ – କ'ଣ ଅଲ୍ଲାହ୍ (ସାମାନ୍ୟ) ଜଣେ ମଣିଷକୁ ବାର୍ତ୍ତାବହ କରି ପଠାଇଲେ? ସେମାନଙ୍କୁ କୁହ, "ଯଦି ଦେବତାମାନେ (ମଧ୍ୟ ମଣିଷ ପରି) ଭୂପୃଷ୍ଠରେ ନିର୍ବିଘ୍ନରେ ବସବାସ କରନ୍ତେ, ତେବେ ଆମ୍ଭେ ଅବଶ୍ୟ ସ୍ୱର୍ଗରୁ କୌଣସି ଦେବତାଙ୍କୁ ବାର୍ତ୍ତାବହ ରୂପେ ପଠାଇ ଥାଆନ୍ତୁ ।"(୧୭/୯୪-୯୫)

وَمَا مَنَعَ النَّاسَ اَنْ يُّؤْمِنُوْٓا اِذْ جَآءَهُمُ
الْهُدٰٓى اِلَّآ اَنْ قَالُوْٓا اَبَعَثَ اللّٰهُ بَشَرًا رَّسُوْلًا ﴿٩٤﴾
قُلْ لَّوْ كَانَ فِى الْاَرْضِ مَلٰٓئِكَةٌ يَّمْشُوْنَ
مُطْمَئِنِّيْنَ لَنَزَّلْنَا عَلَيْهِمْ مِّنَ السَّمَآءِ مَلَكًا
رَّسُوْلًا ﴿٩٥﴾

**୨୬୩. ଅଲ୍ଲାହ୍ ମଣିଷକୁ ପୁନର୍ଜୀବିତ କରିବାକୁ ସକ୍ଷମ**

କ'ଣ ସେମାନେ ଭାବୁନାହାନ୍ତି ଯେ ଯେଉଁ ଅଲ୍ଲାହ୍ ପୃଥିବୀ ଓ ଅନ୍ତରୀକ୍ଷ ସୃଷ୍ଟି କରିଛନ୍ତି, ସେ ସେମାନଙ୍କ ପରି (ମଣିଷଙ୍କୁ) ପୁନର୍ଜୀବିତ କରିବାକୁ ମଧ୍ୟ ସମର୍ଥ? ସେମାନଙ୍କ (ପୁନର୍ଜୀବନ ପାଇଁ) ସେ ଏକ ନିର୍ଦ୍ଦିଷ୍ଟ ସମୟ ରଖିଛନ୍ତି, ଯେଉଁଥିରେ ଆଦୌ ସନ୍ଦେହ ନାହିଁ, ମାତ୍ର ଦୁରାଚାରୀମାନେ ଏହା ବିଶ୍ୱାସ କରୁନାହାନ୍ତି । (୧୭/୯୯)

اَوَلَمْ يَرَوْا اَنَّ اللّٰهَ الَّذِيْ خَلَقَ السَّمٰوٰتِ وَالْاَرْضَ
قَادِرٌ عَلٰٓى اَنْ يَّخْلُقَ مِثْلَهُمْ وَجَعَلَ لَهُمْ اَجَلًا لَّا
رَيْبَ فِيْهِ فَاَبَى الظّٰلِمُوْنَ اِلَّا كُفُوْرًا ﴿٩٩﴾

### ୨୬୪. ଅଲ୍ଲାହ୍‌ଙ୍କର ଭଲ ଭଲ ନାଁ ଅଛି

قُلِ ادْعُوا اللّٰهَ اَوِ ادْعُوا الرَّحْمٰنَ ۭ اَيًّامَّا تَدْعُوْا فَلَهُ الْاَسْمَاۗءُ الْحُسْنٰى ۚ

ସେମାନଙ୍କୁ କୁହ, "ଅଲ୍ଲାହ୍ ନାମରେ ଡାକ ବା ଦୟାମୟ ନାମରେ ଡାକ, ଯେଉଁ ନାମରେ ଡାକିଲେ ମଧ୍ୟ ତାଙ୍କର ଭଲଭଲ ନାମ ଅଛି ।" (୧୭/୧୧୦)

### ୨୬୫. ଅଲ୍ଲାହ୍ ଆବଶ୍ୟକତାରହିତ

وَقُلِ الْحَمْدُ لِلّٰهِ الَّذِيْ لَمْ يَتَّخِذْ وَلَدًا وَّلَمْ يَكُنْ لَّهٗ شَرِيْكٌ فِي الْمُلْكِ وَلَمْ يَكُنْ لَّهٗ وَلِيٌّ مِّنَ الذُّلِّ وَكَبِّرْهُ تَكْبِيْرًا ۝١١١

କୁହ, "ସକଳ ସ୍ତୁତି ଅଲ୍ଲାହଙ୍କ ପାଇଁ, ଯିଏ କାହାରିକୁ ପୁତ୍ର କରି ନାହାନ୍ତି କିମ୍ବା ତାଙ୍କ ସାମ୍ରାଜ୍ୟରେ କେହି ଅଂଶୀଦାର ନାହାନ୍ତି କିମ୍ବା ସେ ଦୁର୍ବଳ ନୁହନ୍ତି ଯେ ତାଙ୍କୁ କୌଣସି ସାହାଯ୍ୟକାରୀର ଆବଶ୍ୟକତା ପଡ଼ିବ । ତୁମେମାନେ ତାଙ୍କର ଯଶଗାନ କର ଏବଂ ତାଙ୍କରି ମହିମାଗାନ କରୁଥାଅ ।" (୧୭/୧୧୧)

### ୨୬୬. ସୃଷ୍ଟିତତ୍ତ୍ୱ

اِنَّا جَعَلْنَا مَا عَلَى الْاَرْضِ زِيْنَةً لَّهَا لِنَبْلُوَهُمْ اَيُّهُمْ اَحْسَنُ عَمَلًا ۝٧ وَاِنَّا لَجٰعِلُوْنَ مَا عَلَيْهَا صَعِيْدًا جُرُزًا ۝٨ۭ

ଧରାପୃଷ୍ଠରେ ଯାହାକିଛି ଅଛି, ସେଗୁଡ଼ିକୁ ଆମ୍ଭେ ଧରିତ୍ରୀର ଶୋଭା ପାଇଁ (ସୃଷ୍ଟି) କରିଛୁ, ଯାହାଦ୍ୱାରା ଆମ୍ଭେ ଲୋକମାନଙ୍କର ପରୀକ୍ଷା ନେବୁ ଯେ ସେମାନଙ୍କ ମଧ୍ୟରୁ କିଏ ଭଲ କର୍ମ କରୁଛି । ପୃଥିବୀପୃଷ୍ଠରେ ଯାହା ଅଛି, ଆମ୍ଭେ ତାହାକୁ (ଧ୍ୱଂସ କରି) ଏକ ସମତଳ ପଡ଼ିଆରେ ପରିଣତ କରିଦେବୁ । (୧୮/୭-୮)

### ୨୬୭. ଭବିଷ୍ୟତ ତୁମ ହାତରେ ନାହିଁ

وَلَا تَقُوْلَنَّ لِشَايْءٍ اِنِّىْ فَاعِلٌ ذٰلِكَ غَدًا ۝٢٣ۙ اِلَّآ اَنْ يَّشَاۗءَ اللّٰهُ ۡ وَاذْكُرْ رَّبَّكَ اِذَا نَسِيْتَ وَقُلْ عَسٰٓى اَنْ يَّهْدِيَنِ رَبِّيْ لِاَقْرَبَ مِنْ هٰذَا رَشَدًا ۝٢٤

(ହେ ମୁହମ୍ମଦ!) କୌଣସି ବିଷୟରେ ଏହା କୁହନା ଯେ "ମୁଁ ଏହା କାଲି କରିଦେବି" ବରଂ କୁହ, "ଯଦି ଅଲ୍ଲାହ୍ ଚାହିଁବେ" । ଯଦି (କହିବାକୁ) ଭୁଲିଯାଅ, ତେବେ ପ୍ରଭୁଙ୍କୁ ସ୍ମରଣ କର ଏବଂ ପ୍ରାର୍ଥନା କର,"ଆଶା କରୁଛି, ମୋ ପ୍ରଭୁ ମୋତେ ପୁଣ୍ୟଲାଭ କରିବାର ଅଧିକ ଭଲ ବାଟ ଦେଖାଇଦେବେ ।"(୧୮/୨୩-୨୪)

### ୨୬୮. କୁରଆନରେ ପରିବର୍ତ୍ତନ ହୋଇପାରିବ ନାହିଁ

وَاتْلُ مَآ اُوْحِيَ اِلَيْكَ مِنْ كِتَابِ رَبِّكَ ۭ لَا مُبَدِّلَ لِكَلِمٰتِهٖ ڗ وَلَنْ تَجِدَ مِنْ دُوْنِهٖ مُلْتَحَدًا ۝٢٧

(ହେ ମୁହମ୍ମଦ!) ଯେଉଁ ଗ୍ରନ୍ଥଟିକୁ ତୁମ ପ୍ରତି ଦୈବବାଣୀ କରାଯାଇଛି, ତାହାକୁ ପାଠ କରି ଶୁଣାଇଦିଅ । ତାଙ୍କ କଥାକୁ କେହି ପରିବର୍ତ୍ତନ କରି ପାରିବେ ନାହିଁ ଏବଂ ତାଙ୍କ ବ୍ୟତୀତ ତୁମେ ଅନ୍ୟ କାହାରି ଆଶ୍ରୟ ପାଇବ ନାହିଁ । (୧୮/୨୭)

### ୨୬୯. ସଜ୍ଜନମାନଙ୍କ ସଂଗରେ ରୁହ

سهي ଲୋକମାନଙ୍କ ସଂଗରେ ରହିଥାଅ, ଯେଉଁମାନେ ନିଜ ପରମେଶ୍ୱରଙ୍କ ପ୍ରସନ୍ନତା ଲାଗି ସକାଳେ ଓ ସନ୍ଧ୍ୟାରେ ତାଙ୍କୁ ଡାକନ୍ତି ଏବଂ ସାଂସାରିକ ଚାକଚକ୍ୟର କାମନାରେ ସେମାନଙ୍କଠାରୁ ଦୃଷ୍ଟି ଫେରାଇ ନିଅନାହିଁ (ଅର୍ଥାତ୍ ସେମାନଙ୍କୁ ଉପେକ୍ଷା କରନାହିଁ) ଏବଂ ଏଭଳି ଲୋକ କଥା ମାନନାହିଁ ଯାହାର ହୃଦୟକୁ ଆମ୍ଭେ ନିଜ ସ୍ମରଣ-ଚିନ୍ତନରୁ ବଂଚିତ ରଖିଛୁ, ଯିଏ ନିଜର ବାସନା ପଛରେ ଧାଇଁଛି ଏବଂ ଯାହାର କାର୍ଯ୍ୟକଳାପ ସୀମା ଅତିକ୍ରମ କରି ସାରିଛି । (୧୮/୨୮)

وَ اصْبِرْ نَفْسَكَ مَعَ الَّذِيْنَ يَدْعُوْنَ رَبَّهُمْ بِالْغَدٰوةِ وَ الْعَشِيِّ يُرِيْدُوْنَ وَجْهَهٗ وَ لَا تَعْدُ عَيْنٰكَ عَنْهُمْ ۚ تُرِيْدُ زِيْنَةَ الْحَيٰوةِ الدُّنْيَا ۚ وَلَا تُطِعْ مَنْ اَغْفَلْنَا قَلْبَهٗ عَنْ ذِكْرِنَا وَ اتَّبَعَ هَوٰىهُ وَكَانَ اَمْرُهٗ فُرُطًا ﴿٢٨﴾

### ୨୭୦. ଯାହାର ଇଚ୍ଛା କୁରଆନକୁ ମାନୁ ଏବଂ ଯାହାର ଇଚ୍ଛା ସେ ପ୍ରତ୍ୟାଖ୍ୟାନ କରିଦେଉ

(ପରିଷ୍କାର) କହିଦିଅ, "ଏହି ସତ୍ୟ (ଅର୍ଥାତ୍ କୁରଆନ) ତୁମ ପରମେଶ୍ୱରଙ୍କଠାରୁ ଆସିଛି । ଏହାପରେ ଯାହାର ଇଚ୍ଛା ସେ ଏହାକୁ ଗ୍ରହଣ କରୁ ଏବଂ ଯାହାର ଇଚ୍ଛା ସେ ପ୍ରତ୍ୟାଖ୍ୟାନ କରିଦେଉ ।" ଆମ୍ଭେ ଦୁରାଚାରୀମାନଙ୍କ ପାଇଁ (ଏଭଳି) ନର୍କାଗ୍ନି ପ୍ରସ୍ତୁତ କରି ରଖିଛୁ, ଯାହାର ଲେଲିହାନ ଶିଖା ସେମାନଙ୍କୁ (ଚାରିଆଡୁ) ଘେରି ନେବ । (୧୮/୨୯)

وَقُلِ الْحَقُّ مِنْ رَّبِّكُمْ ۗ فَمَنْ شَآءَ فَلْيُؤْمِنْ وَّ مَنْ شَآءَ فَلْيَكْفُرْ ۙ اِنَّآ اَعْتَدْنَا لِلظّٰلِمِيْنَ نَارًا ۙ اَحَاطَ بِهِمْ سُرَادِقُهَا ۗ وَ اِنْ يَّسْتَغِيْثُوْا يُغَاثُوْا بِمَآءٍ كَالْمُهْلِ يَشْوِى الْوُجُوْهَ ۗ بِئْسَ الشَّرَابُ ۗ وَ سَآءَتْ مُرْتَفَقًا ﴿٢٩﴾

### ୨୭୧. ପାର୍ଥିବ ଜୀବନର ଦୃଷ୍ଟାନ୍ତ

ସେମାନଙ୍କୁ ପାର୍ଥିବ ଜୀବନର ଉଦାହରଣ ଦିଅ ଯେ (ଏହା ସେହିପରି) ଯେପରି ଆମ୍ଭେ ଆକାଶରୁ ମେଘ ବର୍ଷା କଲେ ଧରିତ୍ରୀର ଉଦ୍ଭିଦଜଗତରେ ସବୁଜିମା ଆସେ କିନ୍ତୁ ପୁଣି (ଦିନେ) ସେହି ସବୁଜିମା ନଷ୍ଟ ହୋଇଯାଏ ଏବଂ (ଶୁଖିଲା ଡ଼ାଳପତ୍ର) ପବନରେ ଉଡ଼ିବୁଲେ । ଅଲ୍ଲାହ୍ ଅବଶ୍ୟ ସବୁକିଛି କରିବାକୁ ସମର୍ଥ । (ତୁମ) ଧନସଂପତ୍ତି ଓ ସନ୍ତାନସନ୍ତତି କେବଳ ପାର୍ଥିବ ଜୀବନର ଏକ ଶୋଭା । ବାସ୍ତବରେ ମଣିଷର ପୁଣ୍ୟ ହିଁ ଚିରସ୍ଥାୟୀ ଏବଂ ଏହା ପରମେଶ୍ୱରଙ୍କ ନିକଟରେ (ମଣିଷର) ଆଶା ଓ ପରିଣାମ ଦୃଷ୍ଟିରୁ ଭଲ । (୧୮/୪୫-୪୬)

وَ اضْرِبْ لَهُمْ مَّثَلَ الْحَيٰوةِ الدُّنْيَا كَمَآءٍ اَنْزَلْنٰهُ مِنَ السَّمَآءِ فَاخْتَلَطَ بِهٖ نَبَاتُ الْاَرْضِ فَاَصْبَحَ هَشِيْمًا تَذْرُوْهُ الرِّيٰحُ ۗ وَ كَانَ اللّٰهُ عَلٰى كُلِّ شَىْءٍ مُّقْتَدِرًا ﴿٤٥﴾ اَلْمَالُ وَالْبَنُوْنَ زِيْنَةُ الْحَيٰوةِ الدُّنْيَا ۚ وَالْبٰقِيٰتُ الصّٰلِحٰتُ خَيْرٌ عِنْدَ رَبِّكَ ثَوَابًا وَّ خَيْرٌ اَمَلًا ﴿٤٦﴾

**୨୭୨.କୁରଆନ ବିଭିନ୍ନ ଶୈଳୀରେ ବୁଝାଇଛି**

ଲୋକମାନଙ୍କ ବୁଝିବା ପାଇଁ ଏହି କୁରଆନ୍‌ରେ ଆମ୍ଭେ ପ୍ରତ୍ୟେକ ବିଷୟକୁ ଭିନ୍ନ ଭିନ୍ନ ଶୈଳୀରେ ବୁଝାଇଛୁ, ମାତ୍ର ମନୁଷ୍ୟ ଯୁକ୍ତି କରିବାରେ ସବୁଠୁ ଆଗରେ ଥାଏ । (୧୮/୫୪)

وَ لَقَدْ صَرَّفْنَا فِىْ هٰذَا الْقُرْاٰنِ لِلنَّاسِ مِنْ كُلِّ مَثَلٍ ۗ وَكَانَ الْاِنْسَانُ اَكْثَرَ شَیْءٍ جَدَلًا ﴿۵۴﴾

**୨୭୩. କର୍ମଫଳ ପାଇଁ ନିର୍ଦ୍ଦିଷ୍ଟ ସମୟ ଧାର୍ଯ୍ୟ ହୋଇଛି**

ତୁମ ପରମେଶ୍ୱର ଅତୀବ କ୍ଷମାଶୀଳ ଏବଂ କରୁଣାମୟ । ଯଦି ସେ ସେମାନଙ୍କ କୃତକର୍ମର (ତୁରନ୍ତ) ହିସାବ ନିଅନ୍ତେ, ତେବେ ସେମାନଙ୍କୁ ଅବିଳମ୍ବେ ଦଣ୍ଡ ଦିଅନ୍ତେ । ମାତ୍ର, ସେମାନଙ୍କ (ହିସାବ ନିକାଶ) ପାଇଁ ନିର୍ଦ୍ଦିଷ୍ଟ ସମୟ ରଖାଯାଇଛି, ତା'ପରେ ଆଉ ସେମାନଙ୍କୁ ରକ୍ଷା ମିଳିବ ନାହିଁ । (୧୮/୫୮)

وَ رَبُّكَ الْغَفُوْرُ ذُو الرَّحْمَةِ ؕ لَوْ يُؤَاخِذُهُمْ بِمَا كَسَبُوْا لَعَجَّلَ لَهُمُ الْعَذَابَ ؕ بَلْ لَّهُمْ مَّوْعِدٌ لَّنْ يَّجِدُوْا مِنْ دُوْنِهٖ مَوْىِٕلًا ﴿۵۸﴾

**୨୭୪. ଭକ୍ତମାନଙ୍କର ଆଶ୍ରୟ ନିଅନାହିଁ**

ତେବେ କ'ଣ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନେ ଭାବୁଛନ୍ତି ଯେ ମୋତେ ଛାଡ଼ି ମୋ' ଭକ୍ତମାନଙ୍କୁ ଆଶ୍ରୟଦାତା ରୂପେ ଗ୍ରହଣ କରିବେ? (ଜାଣିରଖ) ଏଭଳି ନାସ୍ତିକମାନଙ୍କ ପାଇଁ ଆମ୍ଭେ ନର୍କରେ ଆତିଥ୍ୟ ବ୍ୟବସ୍ଥା କରିଛୁ । (୧୮/୧୦୨)

اَفَحَسِبَ الَّذِيْنَ كَفَرُوْۤا اَنْ يَّتَّخِذُوْا عِبَادِىْ مِنْ دُوْنِىْۤ اَوْلِيَآءَ ؕ اِنَّاۤ اَعْتَدْنَا جَهَنَّمَ لِلْكٰفِرِيْنَ نُزُلًا ﴿۱۰۲﴾

**୨୭୫. ଆସ୍ଥା ବିନା ତୁମ କର୍ମ ବୃଥା ହୋଇଯିବ**

ଏମାନେ ସେହି ଲୋକ ଯେଉଁମାନଙ୍କର ସଂସାର ମଧ୍ୟରେ କରିଥିବା ସବୁ ପରିଶ୍ରମ ଅକାରଣ ହୋଇଗଲା ଆଉ ସେମାନେ ଭାବୁଛନ୍ତି ଯେ ସେମାନେ ଭଲ କାମ କରୁଛନ୍ତି । ସେମାନେ ନିଜ ପରମେଶ୍ୱରଙ୍କ ବାଣୀକୁ ଏବଂ ତାଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ମାନିଲେ ନାହିଁ । ତେଣୁ, ସେମାନଙ୍କ ସବୁ କର୍ମ ବ୍ୟର୍ଥ ହେଲା । ବିଚାର ଦିନ ଆମ୍ଭେ ସେମାନଙ୍କ ପ୍ରତି କୌଣସି ଗୁରୁତ୍ୱ ଦେବୁ ନାହିଁ । ସେହି ନର୍କ ହିଁ ସେମାନଙ୍କ କର୍ମର ପ୍ରତିଦାନ, କାରଣ ସେମାନେ ସତ୍ୟକୁ ଅସ୍ୱୀକାର କରିଥିଲେ ଏବଂ ମୋ' ବାଣୀ ଏବଂ ମୋ' ବାର୍ତ୍ତାବହମାନଙ୍କ ସହ ଥଟ୍ଟା କରୁଥିଲେ । (୧୮/୧୦୪-୧୦୬)

اَلَّذِيْنَ ضَلَّ سَعْيُهُمْ فِى الْحَيٰوةِ الدُّنْيَا وَ هُمْ يَحْسَبُوْنَ اَنَّهُمْ يُحْسِنُوْنَ صُنْعًا ﴿۱۰۴﴾ اُولٰٓىِٕكَ الَّذِيْنَ كَفَرُوْا بِاٰيٰتِ رَبِّهِمْ وَلِقَآىِٕهٖ فَحَبِطَتْ اَعْمَالُهُمْ فَلَا نُقِيْمُ لَهُمْ يَوْمَ الْقِيٰمَةِ وَزْنًا ﴿۱۰۵﴾ ذٰلِكَ جَزَآؤُهُمْ جَهَنَّمُ بِمَا كَفَرُوْا وَاتَّخَذُوْۤا اٰيٰتِىْ وَ رُسُلِىْ هُزُوًا ﴿۱۰۶﴾

**୨୭୬. ତାଙ୍କ ସମ ଜଗତରେ କେହି ନାହିଁ**

ପୃଥିବୀ ଓ ଅନ୍ତରୀକ୍ଷ ଏବଂ ସେଗୁଡ଼ିକ ମଧ୍ୟରେ ଯାହା ଅଛି, ସେସବୁର ସେ ଅଧୀଶ୍ୱର । ତେଣୁ, ତୁମେ ତାଙ୍କରି ଉପାସନା କର ଏବଂ ତାଙ୍କ ସେବାରେ ଲାଗିଥାଅ । କ'ଣ ତୁମେ ତାଙ୍କ ସମ ଅନ୍ୟ କାହାରିକୁ ଜାଣିଛ ? (୧୯/୬୫)

رَبُّ السَّمٰوٰتِ وَ الْاَرْضِ وَ مَا بَيْنَهُمَا فَاعْبُدْهُ وَاصْطَبِرْ لِعِبَادَتِهٖ ؕ هَلْ تَعْلَمُ لَهٗ سَمِيًّا ﴿۶۵﴾

### ୨୭୭. ମଣିଷ ନିଶ୍ଚୟ ପୁନର୍ଜୀବନ ପାଇବ

ମଣିଷ କହେ, "ଯଦି ମୁଁ ମରିଯାଏ, ସତରେ କ'ଣ ପୁଣି ପୁନର୍ଜୀବିତ ହୋଇ ଉଠିବି ?" କ'ଣ ମଣିଷକୁ ମନେନାହିଁ ଯେ ଆମ୍ଭେ ଏହା ପୂର୍ବରୁ ମଧ୍ୟ ତାକୁ ସୃଷ୍ଟି କରିସାରିଛୁ, ଯେତେବେଳେ ତା'ର କୌଣସି ଅସ୍ତିତ୍ୱ ହିଁ ନଥିଲା ? (୧୯/୬୬-୬୭)

وَ يَقُوۡلُ الۡاِنۡسَانُ ءَاِذَا مَا مِتُّ لَسَوۡفَ اُخۡرَجُ حَيًّا ﴿۶۶﴾ اَوَ لَا يَذۡكُرُ الۡاِنۡسَانُ اَنَّا خَلَقۡنٰهُ مِنۡ قَبۡلُ وَ لَمۡ يَكُ شَيۡـًٔا ﴿۶۷﴾

### ୨୭୮. ଧର୍ମହୀନ ବ୍ୟକ୍ତିର ସଂପତ୍ତି ଓ ଥାଟବାଟ ବୃଥା

ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ବାଣୀ ପାଠ କରାଯାଏ, ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ (ପରିହାସ କରି) କହନ୍ତି, "ଆମ ଦୁଇ ଦଳ ମଧ୍ୟରୁ କାହାର ସାମାଜିକ ପ୍ରତିଷ୍ଠା ବେଶୀ ଆଉ କାହାର ଆସର ଭଲ ଜମିଥାଏ ?" (ଜାଣିରଖ) ଏମାନଙ୍କ ପୂର୍ବରୁ କେତେ ବଂଶ ଆମ୍ଭେ ଧ୍ୱଂସ କରି ଦେଇଛୁ, ଯେଉଁମାନଙ୍କର ଧନସମ୍ପତ୍ତି ଓ ଥାଟବାଟ ଏମାନଙ୍କଠାରୁ ଯଥେଷ୍ଟ ଅଧିକ ଥିଲା । (୧୯/୭୩-୭୪)

وَ اِذَا تُتۡلٰى عَلَيۡهِمۡ اٰيٰتُنَا بَيِّنٰتٍ قَالَ الَّذِيۡنَ كَفَرُوۡا لِلَّذِيۡنَ اٰمَنُوۡۤا ۙ اَىُّ الۡفَرِيۡقَيۡنِ خَيۡرٌ مَّقَامًا وَّ اَحۡسَنُ نَدِيًّا ﴿۷۳﴾ وَ كَمۡ اَهۡلَكۡنَا قَبۡلَهُمۡ مِّنۡ قَرۡنٍ هُمۡ اَحۡسَنُ اَثَاثًا وَّ رِءۡيًا ﴿۷۴﴾

### ୨୭୯. ପ୍ରଭୁଙ୍କ ସ୍ମରଣ ପାଇଁ ନମାଜ ପ୍ରତିଷ୍ଠା କର

ମୁଁ ହିଁ ପ୍ରକୃତରେ ଅଲ୍ଲାହ୍ । ମୋ' ବ୍ୟତୀତ କେହି ଉପାସ୍ୟ ନାହାନ୍ତି । ତେଣୁ, ମୋ'ରି ଉପାସନା କର ଏବଂ ମୋତେ ମନେ ରଖିବା ପାଇଁ ନମାଜ ପ୍ରତିଷ୍ଠା କର । (୨୦/୧୪)

اِنَّنِىۡۤ اَنَا اللّٰهُ لَاۤ اِلٰهَ اِلَّاۤ اَنَا فَاعۡبُدۡنِىۡ ۙ وَ اَقِمِ الصَّلٰوةَ لِذِكۡرِىۡ ﴿۱۴﴾

### ୨୮୦. ପ୍ରଳୟ ଦିନ ଧରିତ୍ରୀ ସମତଳ ହୋଇଯିବ

ଲୋକେ ତୁମକୁ ପାହାଡ଼-ପର୍ବତ ବିଷୟରେ ପ୍ରଶ୍ନ କରୁଛନ୍ତି (ଯେ ପ୍ରଳୟ ଦିନ ସେଗୁଡ଼ିକର ଅବସ୍ଥା କ'ଣ ହେବ) । କହିଦିଅ, "ପରମେଶ୍ୱର ସେଗୁଡ଼ିକୁ ଚୂନାଚୁନା କରି ଉଡ଼ାଇ ଦେବେ । ସେ ଧରାପୃଷ୍ଠକୁ ଏକ ସମତଳ ପଡ଼ିଆରେ ପରିଣତ କରିଦେବେ । ତୁମେ ସେଥିରେ କୌଣସି ବାଙ୍କ ବା ଖାଲଢ଼ିପ ଦେଖିବାକୁ ପାଇବ ନାହିଁ ।"(୨୦/୧୦୫-୧୦୭)

وَ يَسۡـَٔلُوۡنَكَ عَنِ الۡجِبَالِ فَقُلۡ يَنۡسِفُهَا رَبِّىۡ نَسۡفًا ﴿۱۰۵﴾ فَيَذَرُهَا قَاعًا صَفۡصَفًا ﴿۱۰۶﴾ لَّا تَرٰى فِيۡهَا عِوَجًا وَّ لَاۤ اَمۡتًا ﴿۱۰۷﴾

### ୨୮୧. ପ୍ରଭୁଙ୍କ ଉପାସନା ଆତ୍ମସନ୍ତୋଷ ଦିଏ

ସୁତରାଂ, ସେମାନଙ୍କ କଥା ସହିଯାଅ ଏବଂ ସୂର୍ଯ୍ୟୋଦୟ ପୂର୍ବରୁ, ସୂର୍ଯ୍ୟାସ୍ତ ପୂର୍ବରୁ ଏବଂ ରାତିର ବିଭିନ୍ନ ପ୍ରହରରେ ନିଜ ପ୍ରଭୁଙ୍କ ସ୍ତୁତି ଓ ଗୁଣଗାନ କର ଏବଂ ଦିନର ଉଭୟ ଭାଗରେ (ଅର୍ଥାତ୍ ପୂର୍ବାହ୍ନ

فَاصۡبِرۡ عَلٰى مَا يَقُوۡلُوۡنَ وَ سَبِّحۡ بِحَمۡدِ رَبِّكَ قَبۡلَ طُلُوۡعِ الشَّمۡسِ وَ قَبۡلَ غُرُوۡبِهَا ۚ وَ مِنۡ اٰنَآئِ

ଓ ଅପରାହ୍ନରେ) ମଧ୍ୟ ତାଙ୍କର ଯଶଗାନ କର, ଯାହାଫଳରେ ତୁମେ ଆତ୍ମତୃପ୍ତି ଲାଭ କରିବ । (୨୦/୧୩୦)

الَّيْلِ فَسَبِّحْ وَاَطْرَافَ النَّهَارِ لَعَلَّكَ تَرْضٰى ﴿١٣٠﴾

**୨୮୨. ଲୋକଙ୍କର ଥାଟବାଟ ପ୍ରତି ଦୃଷ୍ଟି ଦିଅନାହିଁ**

ବିଭିନ୍ନ ସମୁଦାୟର ପରୀକ୍ଷା ନେବା ପାଇଁ ଆମ୍ଭେ ସେମାନଙ୍କୁ ସଂସାରରେ ଯେଉଁ ଥାଟବାଟ ଦେଇଛୁ, ସେଗୁଡ଼ିକ ପ୍ରତି ତୁମେ ଆଦୌ ଦୃଷ୍ଟି ଦିଅନା । ତୁମ ପରମେଶ୍ୱରଙ୍କଠାରୁ (ପରଲୋକରେ) ଯାହା (ଐଶ୍ୱର୍ଯ୍ୟ ଆଦି) ତୁମକୁ ମିଳିବ, ତାହା ଢ଼େର ଭଲ ଓ ଚିରସ୍ଥାୟୀ । (୨୦/୧୩୧)

وَلَا تَمُدَّنَّ عَيْنَيْكَ اِلٰى مَا مَتَّعْنَا بِهٖۤ اَزْوَاجًا
مِّنْهُمْ زَهْرَةَ الْحَيٰوةِ الدُّنْيَا ۙ لِنَفْتِنَهُمْ فِيْهِ ؕ وَ
رِزْقُ رَبِّكَ خَيْرٌ وَّاَبْقٰى ﴿١٣١﴾

**୨୮୩. ନିଜ ପରିଜନଙ୍କୁ ନମାଜର ଆଦେଶ ଦିଅ**

ନିଜ ପରିବାରବର୍ଗଙ୍କୁ ନମାଜ ସଂପାଦନ କରିବାର ଆଦେଶ ଦିଅ ଏବଂ ନିଜେ ମଧ୍ୟ ନିୟମିତ ଭାବରେ ସଂପାଦନ କରୁଥାଅ । ଆମ୍ଭେ ତୁମଠାରୁ ଆହାର ମାଗୁନାହୁଁ । ଆହାର ତ ଆମ୍ଭେ ତୁମକୁ ଦେଉ । ସଦାଚାରିତାର ପରିଣାମ ଭଲ ହିଁ ହୋଇଥାଏ । (୨୦/୧୩୨)

وَاْمُرْ اَهْلَكَ بِالصَّلٰوةِ وَاصْطَبِرْ عَلَيْهَا ؕ لَا نَسْـَٔلُكَ
رِزْقًا ؕ نَحْنُ نَرْزُقُكَ ؕ وَالْعَاقِبَةُ لِلتَّقْوٰى ﴿١٣٢﴾

**୨୮୪. ଈଶ୍ୱରଦୂତ ନ ଆସିଥିଲେ ଲୋକେ ଅଜ୍ଞତାର ବାହାନା କରନ୍ତେ**

ଯଦି ଏହା ପୂର୍ବରୁ ଆମ୍ଭେ ସେମାନଙ୍କୁ ଶାସ୍ତି ଦେଇ ବିନାଶ କରି ଦେଇଥାଆନ୍ତୁ, ସେମାନେ ନିଶ୍ଚୟ କହିଥାଆନ୍ତେ, "ହେ ପରମେଶ୍ୱର ! ଆମ ପାଖକୁ ଜଣେ ଈଶ୍ୱରଦୂତଙ୍କୁ କାହିଁକି ପଠାଇଲ ନାହିଁ ? ଆମେ (ଏଠି) ଏପରି ଲଜ୍ଜିତ ଓ ଲାଂଛିତ ହେବା ପୂର୍ବରୁ ତୁମ (ଗ୍ରନ୍ଥର) ଆଦେଶ ପାଳନ କରି ଥାଆନ୍ତୁ ।" (୨୦/୧୩୪)

وَلَوْ اَنَّاۤ اَهْلَكْنٰهُمْ بِعَذَابٍ مِّنْ قَبْلِهٖ لَقَالُوْا
رَبَّنَا لَوْلَاۤ اَرْسَلْتَ اِلَيْنَا رَسُوْلًا فَنَتَّبِعَ اٰيٰتِكَ
مِنْ قَبْلِ اَنْ نَّذِلَّ وَنَخْزٰى ﴿١٣٤﴾

**୨୮୫. ସବୁ ଈଶ୍ୱରଦୂତ ମନୁଷ୍ୟ ଥିଲେ**

ତୁମ ପୂର୍ବରୁ ଆମ୍ଭେ ଯେତେ ବାର୍ତ୍ତାବହ ପଠାଇଥିଲୁ, ସମସ୍ତେ ମନୁଷ୍ୟ ଥିଲେ, ଯେଉଁମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ । ଯଦି ତୁମମାନଙ୍କୁ ଏହା ଜଣା ନାହିଁ, ତେବେ ଯେଉଁମାନଙ୍କୁ ଦିବ୍ୟଗ୍ରନ୍ଥ ଦିଆଯାଇ ଥିଲା, ସେମାନଙ୍କୁ ପଚାରି ବୁଝିନିଅ । ଆମ୍ଭେ ସେମାନଙ୍କୁ ଏଭଳି କୌଣସି ଶରୀର ପ୍ରଦାନ କରି ନଥିଲୁ ଯେପରିକି ସେମାନେ ଖାଦ୍ୟ ନ ଖାଆନ୍ତୁ କିମ୍ବା ଅମର ହୋଇ ଯାଆନ୍ତୁ । (୨୧/୭-୮)

وَمَاۤ اَرْسَلْنَا قَبْلَكَ اِلَّا رِجَالًا نُّوْحِيْۤ اِلَيْهِمْ
فَسْـَٔلُوْۤا اَهْلَ الذِّكْرِ اِنْ كُنْتُمْ لَا تَعْلَمُوْنَ ﴿٧﴾ وَمَا
جَعَلْنٰهُمْ جَسَدًا لَّا يَاْكُلُوْنَ الطَّعَامَ وَمَا كَانُوْا
خٰلِدِيْنَ ﴿٨﴾

### ୨୮୬. ଦେବଗଣ ତାଙ୍କର ଉପାସନା କରନ୍ତି

ଧରିତ୍ରୀ ଓ ଅନ୍ତରୀକ୍ଷରେ ଯାହାକିଛି ଅଛି, ସବୁ ତାଙ୍କରି । ଯେଉଁମାନେ ତାଙ୍କ ପାଖରେ ରହନ୍ତି (ଅର୍ଥାତ ଦେବତାମାନେ), ସେମାନେ ନିରହଙ୍କାର ଭାବରେ ତାଙ୍କର ଉପାସନା କରନ୍ତି ଏବଂ କ୍ଲାନ୍ତ ହୁଅନ୍ତି ନାହିଁ । ସେମାନେ ଦିନରାତି ତାଙ୍କର ଯଶଗାନ କରନ୍ତି ଏବଂ ବିଶ୍ରାମ ନିଅନ୍ତି ନାହିଁ । (୨୧/୧୯-୨୦)

وَلَهٗ مَنْ فِي السَّمٰوٰتِ وَالْاَرْضِ ؕ وَمَنْ عِنْدَهٗ لَا
يَسْتَكْبِرُوْنَ عَنْ عِبَادَتِهٖ وَلَا يَسْتَحْسِرُوْنَ ﴿۱۹﴾
يُسَبِّحُوْنَ الَّيْلَ وَالنَّهَارَ لَا يَفْتُرُوْنَ ﴿۲۰﴾

### ୨୮୭. ଏକାଧିକ ଈଶ୍ୱର ଥିଲେ ବିଶୃଂଖଳା ହୁଅନ୍ତା

ଯଦି (ପ୍ରକୃତରେ)ଧରିତ୍ରୀ ଓ ଅନ୍ତରୀକ୍ଷରେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଈଶ୍ୱରଗଣ ମଧ୍ୟ ଥାଆନ୍ତେ, ତେବେ ସେଗୁଡ଼ିକରେ ଘୋର ବିଶୃଂଖଳା ହୁଅନ୍ତା । ଯେଉଁ ମିଥ୍ୟା ସେମାନେ ଗଢୁଛନ୍ତି, ବୈକୁଣ୍ଠ ସିଂହାସନର ଅଧୀଶ୍ୱର ଏଭଳି ଦୋଷରୁ ପବିତ୍ର । (୨୧/୨୨)

لَوْ كَانَ فِيْهِمَاۤ اٰلِهَةٌ اِلَّا اللّٰهُ لَفَسَدَتَا ۚ فَسُبْحٰنَ
اللّٰهِ رَبِّ الْعَرْشِ عَمَّا يَصِفُوْنَ ﴿۲۲﴾

### ୨୮୮. କୁରଆନ୍ ପୂର୍ବ ଦିବ୍ୟଶିକ୍ଷାର ପୁନଃସ୍ଥାପକ

କ'ଣ ସେମାନେ ତାଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଈଶ୍ୱର କରି ଦେଇଛନ୍ତି ? ସେମାନଙ୍କୁ କୁହ, "ନିଜର ପ୍ରମାଣ ଉପସ୍ଥାପନ କର । ଏହି ଶିକ୍ଷା ଏମାନଙ୍କୁ (କୁରଆନ୍‌ରେ) ଦିଆ ଯାଇଛି, ଯେଉଁମାନେ ମୋ' ସହିତ ଅଛନ୍ତି ଏବଂ ଏହି ଶିକ୍ଷା ହିଁ ମୋ' ପୂର୍ବ ଲୋକମାନଙ୍କୁ (ସେମାନଙ୍କ ଗ୍ରନ୍ଥରେ) ଦିଆ ଯାଇଥିଲା ।" ମାତ୍ର ଅଧିକାଂଶ ଲୋକ ଏହି ସତ୍ୟ ବିଷୟରେ ଜାଣନ୍ତି ନାହିଁ । ତେଣୁ, ସେମାନେ ମୁହଁ ଫେରାଇ ନିଅନ୍ତି । ତୁମ ପୂର୍ବରୁ ଆମ୍ଭେ ଏଭଳି କୌଣସି ବାର୍ତ୍ତାବହଙ୍କୁ ପଠାଇ ନାହୁଁ, ଯାହାଙ୍କ ପ୍ରତି ଆମ୍ଭେ ଏହି ଦୈବବାଣୀ କରି ନଥିଲୁ ଯେ ଆମ୍ଭ ବ୍ୟତୀତ କେହି ଈଶ୍ୱର ନାହାନ୍ତି, ତେଣୁ ଆମ୍ଭରି ଉପାସନା କର । (୨୧/୨୪-୨୫)

اَمِ اتَّخَذُوْا مِنْ دُوْنِهٖۤ اٰلِهَةً ؕ قُلْ هَاتُوْا
بُرْهَانَكُمْ ۚ هٰذَا ذِكْرُ مَنْ مَّعِيَ وَذِكْرُ مَنْ قَبْلِيْ ؕ بَلْ
اَكْثَرُهُمْ لَا يَعْلَمُوْنَ ۙ الْحَقَّ فَهُمْ مُّعْرِضُوْنَ ﴿۲۴﴾
وَمَاۤ اَرْسَلْنَا مِنْ قَبْلِكَ مِنْ رَّسُوْلٍ اِلَّا نُوْحِيْۤ
اِلَيْهِ اَنَّهٗ لَاۤ اِلٰهَ اِلَّاۤ اَنَا فَاعْبُدُوْنِ ﴿۲۵﴾

### ୨୮୯. ଧରିତ୍ରୀ ଓ ଆକାଶ ପରସ୍ପର ସଂଯୁକ୍ତ ରହିଥିଲା

(ଆମ୍ଭଙ୍କୁ) ଅବିଶ୍ୱାସ କରୁଥିବା ଲୋକମାନେ କ'ଣ ଏହା ଜାଣନ୍ତି ନାହିଁ ଯେ (ଆରମ୍ଭରେ) ଉଭୟ ଧରିତ୍ରୀ ଓ ଆକାଶ ପରସ୍ପର ସଂଯୁକ୍ତ ରହିଥିଲା । ପରେ ଆମ୍ଭେ ସେଗୁଡ଼ିକୁ ପୃଥକ କଲୁ ଏବଂ ଆମ୍ଭେ ପ୍ରତ୍ୟେକ ସଜୀବକୁ ଜଳରୁ ସୃଷ୍ଟି କଲୁ । କ'ଣ ତଥାପି ଏମାନେ (ଆମ୍ଭର ଅସ୍ତିତ୍ୱକୁ) ମାନିବେ ନାହିଁ ? (୨୧/୩୦)

اَوَلَمْ يَرَ الَّذِيْنَ كَفَرُوْۤا اَنَّ السَّمٰوٰتِ وَالْاَرْضَ
كَانَتَا رَتْقًا فَفَتَقْنٰهُمَا ؕ وَجَعَلْنَا مِنَ الْمَآءِ كُلَّ
شَيْءٍ حَيٍّ ؕ اَفَلَا يُؤْمِنُوْنَ ﴿۳۰﴾

**୨୯୦. ଆକାଶ ଜୀବଜଗତକୁ ସୁରକ୍ଷା ଦିଏ**

ଆମ୍ଭେ ଆକାଶକୁ (ଜୀବଜଗତ ପାଇଁ) ଏକ ସୁରକ୍ଷା ପ୍ରଦାନକାରୀ ଛାତ ରୂପେ ସୃଷ୍ଟି କଲୁ, ମାତ୍ର ଏମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ଧ୍ୟାନ ଦେଉ ନାହାନ୍ତି । (୨୧/୩୨)

وَ جَعَلْنَا السَّمَآءَ سَقْفًا مَّحْفُوْظًا ۚ وَّ هُمْ عَنْ
اٰيٰتِهَا مُعْرِضُوْنَ ﴿٣٢﴾

**୨୯୧. ଗ୍ରହନକ୍ଷତ୍ର ଗୁଡ଼ିକ କକ୍ଷପଥରେ ବୁଲୁଛନ୍ତି**

ସେ ହିଁ ଦିନ ଓ ରାତି ତଥା ସୂର୍ଯ୍ୟ ଓ ଚନ୍ଦ୍ର ସୃଷ୍ଟି କଲେ । ପ୍ରତ୍ୟେକ (ଗ୍ରହନକ୍ଷତ୍ର) ନିଜ ନିଜର କକ୍ଷପଥରେ ଭାସି ବୁଲୁଛନ୍ତି । (୨୧/୩୩)

وَ هُوَ الَّذِیْ خَلَقَ الَّيْلَ وَ النَّهَارَ وَ الشَّمْسَ وَ
الْقَمَرَ ؕ كُلٌّ فِیْ فَلَكٍ يَّسْبَحُوْنَ ﴿٣٣﴾

**୨୯୨. ବିଭିନ୍ନ ପରିସ୍ଥିତିରେ ତୁମକୁ ପରୀକ୍ଷା କରାଯାଏ**

ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଚାଖିବ । ଆମ୍ଭେ ତୁମମାନଙ୍କୁ ଭଲ ଓ ମନ୍ଦ ଉଭୟ ପରିସ୍ଥିତି ମଧ୍ୟରେ ରଖି ପରୀକ୍ଷା କରିଥାଉ ଏବଂ ତୁମେମାନେ (ଦିନେ) ଆମ୍ଭ ନିକଟକୁ ଫେରିବ । (୨୧/୩୫)

كُلُّ نَفْسٍ ذَآئِقَةُ الْمَوْتِ ؕ وَ نَبْلُوْكُمْ بِالشَّرِّ وَ
الْخَيْرِ فِتْنَةً ؕ وَاِلَيْنَا تُرْجَعُوْنَ ﴿٣٥﴾

**୨୯୩. ମାନବସମାଜ ଗୋଟିଏ ଭ୍ରାତୃତ୍ୱ**

ହେ ମନୁଷ୍ୟଗଣ! ବାସ୍ତବରେ ତୁମମାନଙ୍କର ଏହି ମାନବସମାଜ ଗୋଟିଏ ହିଁ ଭ୍ରାତୃତ୍ୱ ଏବଂ ମୁଁ ତୁମମାନଙ୍କର ପରମେଶ୍ୱର । ସୁତରାଂ, ତୁମେମାନେ କେବଳ ମୋର ହିଁ ସେବା-ଉପାସନା କର । ମାତ୍ର ଲୋକମାନେ ପରସ୍ପର ମଧ୍ୟରେ (ମତଭେଦ କରି) ନିଜ ଧର୍ମକୁ ଖଣ୍ଡ ଖଣ୍ଡ କରି ବାଣ୍ଟି ଦେଲେ । (ମାତ୍ର ଦିନେ) ସମସ୍ତଙ୍କୁ ଆମ୍ଭରି ନିକଟକୁ ଫେରିବାକୁ ପଡ଼ିବ ।(୨୧/୯୨-୯୩)

اِنَّ هٰذِهٖٓ اُمَّتُكُمْ اُمَّةً وَّاحِدَةً ۖ وَّ اَنَا رَبُّكُمْ
فَاعْبُدُوْنِ ﴿٩٢﴾ وَتَقَطَّعُوْٓا اَمْرَهُمْ بَيْنَهُمْ ؕ كُلٌّ
اِلَيْنَا رٰجِعُوْنَ ﴿٩٣﴾

**୨୯୪. ସୃଷ୍ଟିର ପୁନଃନିର୍ମାଣ ହେବ**

ଆମ୍ଭେ ସେଦିନ (ଅର୍ଥାତ୍ ପ୍ରଳୟ ଦିନ) ଆକାଶକୁ ଏପରି ଗୁଡ଼ାଇ ଦେବୁ ଯେପରି କାଗଜ ଫର୍ଦ୍ଦଗୁଡ଼ିକୁ ଗୁଡ଼ାଇ ଦିଆଯାଏ । ଯେପରି ଆମ୍ଭେ ପ୍ରଥମ ଥର ସୃଷ୍ଟିର ନିର୍ମାଣ କରିଥିଲୁ, ଠିକ୍ ସେହିପରି ଆମ୍ଭେ ଏହାର ପୁନଃନିର୍ମାଣ କରିବୁ । ଏହା ଆମ୍ଭର ବଚନ । ଆମ୍ଭେ ଅବଶ୍ୟ ଏହା କରିବୁ । (୨୧/୧୦୪)

يَوْمَ نَطْوِی السَّمَآءَ كَطَیِّ السِّجِلِّ لِلْكُتُبِ ؕ
كَمَا بَدَاْنَاۤ اَوَّلَ خَلْقٍ نُّعِيْدُهٗ ؕ وَعْدًا عَلَيْنَا ؕ اِنَّا
كُنَّا فٰعِلِيْنَ ﴿١٠٤﴾

**୨୯୫. ମହାମାନ୍ୟ ମୁହମ୍ମଦ ଜଗତ ପାଇଁ କରୁଣାସ୍ୱରୂପ**

(ହେ ମୁହମ୍ମଦ!) ଆମ୍ଭେ ତୁମକୁ ସମଗ୍ର ଜଗତ ପାଇଁ କରୁଣା ସ୍ୱରୂପ ପଠାଇ ଅଛୁ । (୨୧/୧୦୭)

وَمَآ اَرْسَلْنٰكَ اِلَّا رَحْمَةً لِّلْعٰلَمِيْنَ ﴿١٠٧﴾

**୨୯୬. ପାର୍ଥିବ ଫାଇଦା ପାଇଁ ଉପାସନା କରନାହିଁ**

وَ مِنَ النَّاسِ مَنْ يَّعْبُدُ اللّٰهَ عَلٰى حَرْفٍ ۚ فَاِنْ اَصَابَهٗ خَيْرُ ٱطْمَاَنَّ بِهٖ ۚ وَ اِنْ اَصَابَتْهُ فِتْنَةُ ٱنْقَلَبَ عَلٰى وَجْهِهٖ ۚ خَسِرَ الدُّنْيَا وَ الْاٰخِرَةَ ؕ ذٰلِكَ هُوَ الْخُسْرَانُ الْمُبِيْنُ ﴿١١﴾

କିଛି ଲୋକ କଡ଼ରେ ଥାଇ (ଦ୍ୱିଧା ମନରେ) ଅଲ୍ଲାହଙ୍କର ସେବା ଉପାସନା କରନ୍ତି । ଯଦି ସେମାନଙ୍କୁ କୌଣସି (ସାଂସାରିକ) ଫାଇଦା ମିଳିଯାଏ, ତେବେ ସନ୍ତୁଷ୍ଟ ହୋଇ ଯାଆନ୍ତି କିନ୍ତୁ ଯଦି (କୌଣସି ସଂକଟ ଦ୍ୱାରା) ସେମାନଙ୍କର ପରୀକ୍ଷା ନିଆଯାଏ, ତେବେ ସିଧା ମୁହଁ ମୋଡ଼ି (ନାସ୍ତିକ ଅବସ୍ଥାକୁ) ଫେରି ଯାଆନ୍ତି । ଏମାନଙ୍କର ଇହଲୋକ ଓ ପରଲୋକ, ଉଭୟ ନଷ୍ଟ ହେଲା । ଏହାହିଁ ହେଉଛି ବଡ଼ କ୍ଷତି । (୨୨/୧୧)

**୨୯୭. କୁରଆନର ବାର୍ତ୍ତା ଖୁବ ସ୍ପଷ୍ଟ**

وَ كَذٰلِكَ اَنْزَلْنٰهُ اٰيٰتٍۭ بَيِّنٰتٍ ۙ وَّ اَنَّ اللّٰهَ يَهْدِيْ مَنْ يُّرِيْدُ ﴿١٦﴾

ଏହି କୁରଆନକୁ ଆମ୍ଭେ ପଠାଇଛୁ, ଯାହାର ବାଣୀଗୁଡ଼ିକ (ଖୁବ) ସ୍ପଷ୍ଟ । (ଏହାଦ୍ୱାରା) ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି ତାକୁ (ଠିକ୍) ବାଟ ଦେଖାଇ ଦିଅନ୍ତି । (୨୨/୧୬)

**୨୯୮. ଈଶ୍ୱର ତୁମର ନିଷ୍ଠା ଦେଖନ୍ତି**

لَنْ يَّنَالَ اللّٰهَ لُحُوْمُهَا وَ لَا دِمَآؤُهَا وَ لٰكِنْ يَّنَالُهُ التَّقْوٰى مِنْكُمْ ؕ

ଅଲ୍ଲାହଙ୍କ ପାଖରେ ସେମାନଙ୍କର (ଅର୍ଥାତ୍ ଉତ୍ସର୍ଗିକୃତ ପଶୁଙ୍କର) ମାଂସ ବା ରକ୍ତ ପହଁଚେ ନାହିଁ, କିନ୍ତୁ ତୁମମାନଙ୍କର ନିଷ୍ଠା ପହଁଚିଥାଏ । (୨୨/୩୭)

**୨୯୯. କେତେ ସଭ୍ୟତା ଧ୍ୱଂସ କରିଦିଆ ଯାଇଛି**

فَكَاَيِّنْ مِّنْ قَرْيَةٍ اَهْلَكْنٰهَا وَ هِيَ ظَالِمَةٌ فَهِيَ خَاوِيَةٌ عَلٰى عُرُوْشِهَا وَ بِئْرٍ مُّعَطَّلَةٍ وَّ قَصْرٍ مَّشِيْدٍ ﴿٤٥﴾

କେତେ ଯେ ଦୁରାଚାରୀ ଜନବସତି ଆମ୍ଭେ ଧ୍ୱଂସ କରି ଦେଇଛୁ, ଯାହା ଆଜି ଧ୍ୱସ୍ତବିଧ୍ୱସ୍ତ ହୋଇ ପଡ଼ିଛି ଏବଂ କେତେ କୂଅ, କେତେ ଉଚ୍ଚଉଚ୍ଚ ମହଲ ପରିତ୍ୟକ୍ତ ହୋଇ ପଡ଼ିରହିଛି । (୨୨/୪୫)

**୩୦୦. ବିଭିନ୍ନ ସଂପ୍ରଦାୟ ପାଇଁ ପୃଥକ ଉପାସନା ବିଧି ନିର୍ଦ୍ଧାରିତ ଥିଲା**

لِكُلِّ اُمَّةٍ جَعَلْنَا مَنْسَكًا هُمْ نَاسِكُوْهُ فَلَا يُنَازِعُنَّكَ فِي الْاَمْرِ وَ ادْعُ اِلٰى رَبِّكَ ؕ اِنَّكَ لَعَلٰى هُدًى مُّسْتَقِيْمٍ ﴿٦٧﴾

ପ୍ରତ୍ୟେକ ସଂପ୍ରଦାୟର ଲୋକଙ୍କ ପାଇଁ ଆମ୍ଭେ ଉପାସନାର ଏକ (ସ୍ୱତନ୍ତ୍ର) ବିଧି ନିର୍ଦ୍ଧାରିତ କରିଛୁ, ଯାହା ସେମାନେ ପାଳନ କରିଥାଆନ୍ତି । ତେଣୁ, ସେମାନେ ଏ ବିଷୟରେ ତୁମ ସହ ବାଦ-ବିବାଦ କରିବା ଉଚିତ ନୁହେଁ । ନିଜ ପ୍ରଭୁଙ୍କ ମାର୍ଗକୁ ଡାକୁଥାଅ । ନିଃସନ୍ଦେହରେ ତୁମେ ସତ୍‌ମାର୍ଗରେ ଅଛ । (୨୨/୬୭)

## ୩୦୧. ନିଜ ପ୍ରଭୁଙ୍କର ଉଚିତ ମୂଲ୍ୟାଙ୍କନ କର

ହେ ମନୁଷ୍ୟଗଣ! ଗୋଟିଏ ଦୃଷ୍ଟାନ୍ତ ଦିଆ ଯାଉଛି, ଧ୍ୟାନ ଦେଇ ଶୁଣ। ପ୍ରକୃତରେ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ (ପ୍ରାର୍ଥନାରେ) ଡ଼ାକ, ସେମାନେ ମାଛିଟିଏ ମଧ୍ୟ ସୃଷ୍ଟି କରି ପାରିବେ ନାହିଁ, ଯଦିଓ ଏଥିପାଇଁ ସମସ୍ତେ ଏକଜୁଟ ହୁଅନ୍ତି। ମାଛି ଯଦି ସେମାନଙ୍କଠାରୁ କିଛି ନେଇ ପଳାଇଯାଏ, ସେମାନେ ତା'ଠାରୁ ତାହା ଛଡ଼ାଇ ମଧ୍ୟ ଆଣି ପାରିବେ ନାହିଁ। ପ୍ରାର୍ଥନାକାରୀ ଦୁର୍ବଳ ଏବଂ ଯାହାକୁ ପ୍ରାର୍ଥନା କରାଯାଏ, ସେ ମଧ୍ୟ ଦୁର୍ବଳ। ସେମାନେ ଅଲ୍ଲାହଙ୍କର ଉଚିତ ମୂଲ୍ୟାଙ୍କନ କଲେ ନାହିଁ। ବାସ୍ତବରେ ଅଲ୍ଲାହ୍ ମହାଶକ୍ତିମାନ ଏବଂ ଅତ୍ୟନ୍ତ ପରାକ୍ରମୀ। (୨୨/୭୩-୭୪)

يٰۤاَيُّهَا النَّاسُ ضُرِبَ مَثَلٌ فَاسْتَمِعُوْا لَهٗ ؕ
اِنَّ الَّذِيْنَ تَدْعُوْنَ مِنْ دُوْنِ اللّٰهِ لَنْ يَّخْلُقُوْا
ذُبَابًا وَّلَوِ اجْتَمَعُوْا لَهٗ ؕ وَاِنْ يَّسْلُبْهُمُ الذُّبَابُ
شَيْـًٔا لَّا يَسْتَنْقِذُوْهُ مِنْهُ ؕ ضَعُفَ الطَّالِبُ وَ
الْمَطْلُوْبُ ﴿٧٣﴾ مَا قَدَرُوا اللّٰهَ حَقَّ قَدْرِهٖ ؕ اِنَّ اللّٰهَ
لَقَوِىٌّ عَزِيْزٌ ﴿٧٤﴾

## ୩୦୨. ଇସଲାମ ଏକ ଆଦିଧର୍ମ

ଅଲ୍ଲାହଙ୍କ ମାର୍ଗରେ ସେହିପରି ସଂଘର୍ଷ କର, ଯେପରି ସଂଘର୍ଷ (ତାଙ୍କ ପାଇଁ) ହେବା ଉଚିତ। ସେ ତୁମମାନଙ୍କୁ ମନୋନିତ କରିଛନ୍ତି ଏବଂ ତୁମମାନଙ୍କ ପାଇଁ ଧର୍ମକୁ କଠିନ କରି ନାହାନ୍ତି। ଏହା ତୁମ ପିତା ଇବ୍ରାହିମଙ୍କ ଧର୍ମ। ଏହା ପୂର୍ବରୁ ସେ ତୁମମାନଙ୍କ ନାମ "ମୁସଲିମ୍" (ଅର୍ଥାତ୍ ଆଜ୍ଞାକାରୀ) ରଖିଥିଲେ ଏବଂ ଏହି ଗ୍ରନ୍ଥରେ ମଧ୍ୟ (ତୁମମାନଙ୍କର ସେହି ନାମ) ରଖିଛନ୍ତି, ଯେପରିକି ଈଶ୍ୱରଦୂତ ତୁମମାନଙ୍କର ସାକ୍ଷୀ ରୁହନ୍ତୁ ଏବଂ ତୁମେମାନେ ଲୋକଙ୍କର ସାକ୍ଷୀ ରୁହ। (୨୨/୭୮)

وَجَاهِدُوْا فِى اللّٰهِ حَقَّ جِهَادِهٖ ؕ هُوَ اجْتَبٰٮكُمْ
وَمَا جَعَلَ عَلَيْكُمْ فِى الدِّيْنِ مِنْ حَرَجٍ ؕ مِلَّةَ
اَبِيْكُمْ اِبْرٰهِيْمَ ؕ هُوَ سَمّٰٮكُمُ الْمُسْلِمِيْنَ ۙ مِنْ
قَبْلُ وَفِىْ هٰذَا لِيَكُوْنَ الرَّسُوْلُ شَهِيْدًا عَلَيْكُمْ
وَتَكُوْنُوْا شُهَدَآءَ عَلَى النَّاسِ ۖ

## ୩୦୩. ବୈକୁଣ୍ଠବାସୀ ମାନଙ୍କର ସ୍ୱଭାବ

ସେହି ବିଶ୍ୱାସକାରୀମାନେ (ଜୀବନରେ) ଅବଶ୍ୟ ସଫଳ ହେଲେ, ଯେଉଁମାନେ ବିନମ୍ର ହୋଇ ଦୈନିକ ପ୍ରାର୍ଥନା (ନମାଜ) ସଂପାଦନ କରନ୍ତି, ଅଯଥା କଥାରେ ଧ୍ୟାନ ଦିଅନ୍ତି ନାହିଁ, ନିୟମିତ ଦାନ ଦିଅନ୍ତି ଏବଂ ନିଜ ଗୁପ୍ତାଂଗକୁ (ଅବୈଧ ଯୌନ ସଂଗମରୁ) ନିବୃତ୍ତ ରଖନ୍ତି, ମାତ୍ର ପତ୍ନୀ ବା ନିଜ ଅଧିନରେ ଥିବା ଦାସୀମାନଙ୍କ ପାଖକୁ (ରୀତିମତେ ବିବାହ କରି) ଯିବା ସେମାନଙ୍କ ପକ୍ଷରେ ଦୋଷାବହ ନୁହେଁ। ଯେଉଁମାନେ ଏହା ବ୍ୟତୀତ ଅନ୍ୟ କୌଣସି ବାଟ ଖୋଜନ୍ତି, ସେମାନେ ସୀମାଲଂଘନକାରୀ। ଯେଉଁମାନେ (ବିଶ୍ୱାସରେ ରଖାଯାଇ ଥିବା) ଅନ୍ୟର ଅମାନତ ତଥା ନିଜର ପ୍ରତିଶ୍ରୁତି ପ୍ରତି ସଜାଗ ରହି ଥାଆନ୍ତି ଏବଂ ନିଜର ଦୈନିକ

قَدْ اَفْلَحَ الْمُؤْمِنُوْنَ ﴿١﴾ الَّذِيْنَ هُمْ فِىْ صَلَاتِهِمْ
خٰشِعُوْنَ ﴿٢﴾ وَالَّذِيْنَ هُمْ عَنِ اللَّغْوِ مُعْرِضُوْنَ ﴿٣﴾
وَالَّذِيْنَ هُمْ لِلزَّكٰوةِ فٰعِلُوْنَ ﴿٤﴾ وَالَّذِيْنَ هُمْ
لِفُرُوْجِهِمْ حٰفِظُوْنَ ﴿٥﴾ اِلَّا عَلٰٓى اَزْوَاجِهِمْ اَوْ مَا
مَلَكَتْ اَيْمَانُهُمْ فَاِنَّهُمْ غَيْرُ مَلُوْمِيْنَ ﴿٦﴾
فَمَنِ ابْتَغٰى وَرَآءَ ذٰلِكَ فَاُولٰٓـئِكَ هُمُ الْعٰدُوْنَ ﴿٧﴾

| | |
|---|---|
| ପ୍ରାର୍ଥନାକୁ ସର୍ବଦା ଜଗି ଥାଆନ୍ତି, ସେହିମାନେ ହିଁ (ବୈକୁଣ୍ଠର) ଅଧିକାରୀ । ସେହିମାନେ ବୈକୁଣ୍ଠ ଲାଭ କରିବେ ଏବଂ ସେଥିରେ ସର୍ବଦା ରହିବେ । (୨୩/୧-୧୧) | وَالَّذِيْنَ هُمْ لِاَمٰنٰتِهِمْ وَعَهْدِهِمْ رٰعُوْنَ ۝٨ وَالَّذِيْنَ هُمْ عَلٰى صَلَوٰتِهِمْ يُحَافِظُوْنَ ۝٩ اُولٰٓئِكَ هُمُ الْوٰرِثُوْنَ ۝١٠ الَّذِيْنَ يَرِثُوْنَ الْفِرْدَوْسَ ۗ هُمْ فِيْهَا خٰلِدُوْنَ ۝١١ |

## ୩୦୪. ମାନବ ସର୍ଜନାର ବିଭିନ୍ନ ପର୍ଯ୍ୟାୟ

| | |
|---|---|
| ଆମ୍ଭେ ମାନବକୁ ମାଟିର ସାରରୁ ସୃଷ୍ଟି କଲୁ । ପୁଣି ଆମ୍ଭେ ତାକୁ ବୀର୍ଯ୍ୟକଣିକା ରୂପେ ଏକ ନିରାପଦ ସ୍ଥାନରେ ରଖିଲୁ । ଏହାପରେ ସେହି ବୀର୍ଯ୍ୟକଣିକାକୁ ଘନୀଭୂତ ରକ୍ତର ରୂପ ଦେଲୁ । ପୁଣି ସେହି ଘନୀଭୂତ ରକ୍ତକୁ ମାଂସ ପିଣ୍ଡୁଳାରେ ପରିଣତ କଲୁ । ପୁଣି ମାଂସ ପିଣ୍ଡୁଳାରୁ ଅସ୍ଥି ସୃଷ୍ଟି କଲୁ । ପୁଣି ଅସ୍ଥି ଉପରେ ମାଂସର ଆବରଣ ଚଢ଼ାଇଲୁ । ପୁଣି ଆମ୍ଭେ ତାକୁ ଏକ ଭିନ୍ନ ସୃଷ୍ଟି ରୂପେ ଗଢ଼ି ତୋଳିଲୁ । ସୁତରାଂ, ମଂଗଳମୟ ଅଲ୍ଲାହ୍ ସର୍ବଶ୍ରେଷ୍ଠ ସ୍ରଷ୍ଟା । (୨୩/୧୨-୧୪) | وَلَقَدْ خَلَقْنَا الْاِنْسَانَ مِنْ سُلٰلَةٍ مِّنْ طِيْنٍ ۝١٢ ثُمَّ جَعَلْنٰهُ نُطْفَةً فِيْ قَرَارٍ مَّكِيْنٍ ۝١٣ ثُمَّ خَلَقْنَا النُّطْفَةَ عَلَقَةً فَخَلَقْنَا الْعَلَقَةَ مُضْغَةً فَخَلَقْنَا الْمُضْغَةَ عِظٰمًا فَكَسَوْنَا الْعِظٰمَ لَحْمًا ۗ ثُمَّ اَنْشَاْنٰهُ خَلْقًا اٰخَرَ ۗ فَتَبٰرَكَ اللّٰهُ اَحْسَنُ الْخٰلِقِيْنَ ۝١٤ |

## ୩୦୫. ଅଲ୍ଲାହ ସପ୍ତ-ଆକାଶର ସ୍ରଷ୍ଟା

| | |
|---|---|
| ତୁମମାନଙ୍କ ଉପରେ ଆମ୍ଭେ (ସ୍ତରସ୍ତର କରି) ସାତଟି ଆକାଶ ନିର୍ମାଣ କରିଛୁ । ଆମ୍ଭେ ନିଜ ସୃଷ୍ଟିକୁ ଭୁଲିଯାଇ ନାହୁଁ ।(୨୩/୧୭) | وَلَقَدْ خَلَقْنَا فَوْقَكُمْ سَبْعَ طَرَآئِقَ ۖ وَمَا كُنَّا عَنِ الْخَلْقِ غٰفِلِيْنَ ۝١٧ |

## ୩୦୬. ଗୋଟିଏ ଭ୍ରାତୃତ୍ୱ – ଗୋଟିଏ ଧର୍ମ

| | |
|---|---|
| ବାସ୍ତବରେ ତୁମମାନଙ୍କର ଏହି ମାନବସମାଜ ଗୋଟିଏ ଭ୍ରାତୃତ୍ୱ ଏବଂ ମୁଁ ତୁମମାନଙ୍କର ପ୍ରଭୁ । ତେଣୁ, ମୋତେ ହିଁ ଭୟ କର । ମାତ୍ର ଲୋକମାନେ ଧର୍ମକୁ ଖଣ୍ଡଖଣ୍ଡ କରି ପରସ୍ପର (ବିଭିନ୍ନ ସଂପ୍ରଦାୟରେ) ବିଭକ୍ତ ହୋଇଗଲେ । ଯେଉଁ ଗୋଷ୍ଠୀ ପାଖରେ ଯାହା ଅଛି, ସେ ସେଇଥିରେ ମଗ୍ନ ଅଛି । (୨୩/୫୨-୫୩) | وَاِنَّ هٰذِهٖٓ اُمَّتُكُمْ اُمَّةً وَّاحِدَةً وَّاَنَا رَبُّكُمْ فَاتَّقُوْنِ ۝٥٢ فَتَقَطَّعُوْٓا اَمْرَهُمْ بَيْنَهُمْ زُبُرًا ۗ كُلُّ حِزْبٍۭ بِمَا لَدَيْهِمْ فَرِحُوْنَ ۝٥٣ |

## ୩୦୭. ଧନସମ୍ପତ୍ତି ପ୍ରଭୁଙ୍କ ପ୍ରସନ୍ନତାର ମାନଦଣ୍ଡ ନୁହେଁ

| | |
|---|---|
| କ'ଣ ସେମାନେ ଭାବୁଛନ୍ତି ଯେ ସେମାନଙ୍କ ଧନଜନରେ ଆମ୍ଭେ ଯାହା ବୃଦ୍ଧି କରୁଛୁ, ତାହାଦ୍ୱାରା ଆମ୍ଭେ ସେମାନଙ୍କର କଲ୍ୟାଣ | اَيَحْسَبُوْنَ اَنَّمَا نُمِدُّهُمْ بِهٖ مِنْ مَّالٍ وَّبَنِيْنَ ۝٥٥ |

କରିବାକୁ ତତ୍ପର ହୋଇ ଉଠିଛୁ? ଆଦୌ ନୁହେଁ, ବରଂ ପ୍ରକୃତ କଥା ସେମାନେ ବୁଝୁ ନାହାନ୍ତି । (୨୩/୫୫-୫୬)

نُسَارِعُ لَهُمْ فِي الْخَيْرٰتِ ۚ بَلْ لَّا يَشْعُرُوْنَ ﴿٥٦﴾

## ୩୦୮. କୁରଆନ୍ ପ୍ରଥମ ଦିବ୍ୟଗ୍ରନ୍ଥ ନୁହେଁ

କ'ଣ ସେମାନେ ଏହି ଗ୍ରନ୍ଥ ପ୍ରତି ଧ୍ୟାନ ଦେଉ ନାହାନ୍ତି ? ଅଥବା କ'ଣ ସେମାନଙ୍କ ପାଖକୁ ଏଭଳି କିଛି (ନୂଆ ଜିନିଷ) ଆସି ଯାଇଛି ଯାହା ସେମାନଙ୍କ ପିତୃପିତାମହଙ୍କ ପାଖକୁ ଆସି ନଥିଲା ? କିମ୍ବା କ'ଣ ସେମାନେ ନିଜ ଈଶ୍ୱରଦୂତଙ୍କୁ ଚହ୍ନି ପାରିଲେ ନାହିଁ, ଯେଉଁଥିପାଇଁ ତାଙ୍କୁ ମାନୁ ନାହାନ୍ତି ? (୨୩/୬୮-୬୯)

اَفَلَمْ يَدَّبَّرُوا الْقَوْلَ اَمْ جَآءَهُمْ مَّا لَمْ يَاْتِ
اٰبَآءَهُمُ الْاَوَّلِيْنَ ﴿٦٨﴾ اَمْ لَمْ يَعْرِفُوْا رَسُوْلَهُمْ فَهُمْ
لَهٗ مُنْكِرُوْنَ ﴿٦٩﴾

## ୩୦୯. ଦୁର୍ବ୍ୟବହାରର ଉତ୍ତର ସଦବ୍ୟବହାର ଦ୍ୱାରା ଦିଅ

ଦୁର୍ବ୍ୟବହାରର ପ୍ରତିରୋଧ ଏଭଳି ଉପାୟ ଦ୍ୱାରା କର, ଯାହା ସର୍ବୋତ୍ତମ । ସେମାନେ ଯାହାକିଛି କହନ୍ତି, ଆମ୍ଭେ ଭଲରୂପେ ଜାଣୁ । (୨୩/୯୬)

اِدْفَعْ بِالَّتِيْ هِيَ اَحْسَنُ السَّيِّئَةَ ۚ نَحْنُ اَعْلَمُ بِمَا
يَصِفُوْنَ ﴿٩٦﴾

## ୩୧୦. ମୃତ୍ୟୁ ପରେ ମଣିଷ ସଂସାରକୁ ଫେରିବ ନାହିଁ

ଏପରିକି ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ହେବ, ସେ କହିବ, 'ହେ ପ୍ରଭୁ ! ମୋତେ ଆଉଥରେ (ସଂସାରକୁ) ପଠାଇ ଦିଅ, ଯାହାକୁ ମୁଁ ଛାଡ଼ି ଆସିଛି, ଯାହାଫଳରେ ମୁଁ ସତକର୍ମ କରିବି ।' ଆଦୌ ନୁହେଁ, ଏହା ତା' (ମୁହଁର) କଥା ମାତ୍ର । ସେମାନଙ୍କ (ଅର୍ଥାତ୍ ମୃତମାନଙ୍କ) ସାମନାରେ ପୁନର୍ଜୀବିତ ହୋଇ ଉଠିବା ପର୍ଯ୍ୟନ୍ତ ଏକ ଅନ୍ତରାୟ ଅଛି । (୨୩/୯୯-୧୦୦)

حَتّٰٓى اِذَا جَآءَ اَحَدَهُمُ الْمَوْتُ قَالَ رَبِّ
ارْجِعُوْنِ ﴿٩٩﴾ لَعَلِّيْٓ اَعْمَلُ صَالِحًا فِيْمَا تَرَكْتُ كَلَّا ۚ
اِنَّهَا كَلِمَةٌ هُوَ قَآئِلُهَا ۚ وَمِنْ وَّرَآئِهِمْ بَرْزَخٌ
اِلٰى يَوْمِ يُبْعَثُوْنَ ﴿١٠٠﴾

## ୩୧୧.ସତୀନାରୀଙ୍କ ପ୍ରତି ମିଥ୍ୟାରୋପ ମହାପାପ

ଯେଉଁମାନେ ଆସ୍ଥା ରଖିଥିବା ସତୀ ଓ ସରଳା ନାରୀଙ୍କ ପ୍ରତି (ଲାଂଛନାର) ଆରୋପ କରନ୍ତି, ସେମାନେ ଇହଲୋକ ଓ ପରଲୋକରେ ଅଭିଶପ୍ତ । ସେମାନେ କଠୋର ଦଣ୍ଡ ଭୋଗିବେ । (୨୪/୨୩)

اِنَّ الَّذِيْنَ يَرْمُوْنَ الْمُحْصَنٰتِ الْغٰفِلٰتِ
الْمُؤْمِنٰتِ لُعِنُوْا فِي الدُّنْيَا وَالْاٰخِرَةِ ۠ وَلَهُمْ
عَذَابٌ عَظِيْمٌ ﴿٢٣﴾

## ୩୧୨.କାହା ଘରେ ବିନା ଅନୁମତିରେ ପ୍ରବେଶ କରନାହିଁ

ହେ ମୁସଲମାନମାନେ ! ତୁମେମାନେ ନିଜ ଘର ବ୍ୟତୀତ ଅନ୍ୟ କାହାରି ଘରେ (ଗୃହକର୍ତ୍ତାଙ୍କର) ଅନୁମତି ନ ନେଇ ବା ଗୃହସ୍ଥଙ୍କୁ ଶୁଭେଚ୍ଛା ନ ଜଣାଇ, ପ୍ରବେଶ କରନାହିଁ । ଏହା ତୁମମାନଙ୍କ ପକ୍ଷରେ ଖୁବ ଭଲ ହେବ, ଏକଥା ମନେ ରଖ । (୨୪/୨୭)

يٰٓاَيُّهَا الَّذِيْنَ اٰمَنُوْا لَا تَدْخُلُوْا بُيُوْتًا غَيْرَ
بُيُوْتِكُمْ حَتّٰى تَسْتَاْنِسُوْا وَتُسَلِّمُوْا عَلٰٓى اَهْلِهَا ۚ
ذٰلِكُمْ خَيْرٌ لَّكُمْ لَعَلَّكُمْ تَذَكَّرُوْنَ ﴿٢٧﴾

### ୩୧୩. ଦୃଷ୍ଟି ସଂଯତ ରଖିଲେ ମନ ପବିତ୍ର ରହିବ

ମୁସଲିମ୍ ପୁରୁଷମାନଙ୍କୁ କୁହ ଯେ ସେମାନେ ଦୃଷ୍ଟି ତଳକୁ ରଖନ୍ତୁ ଏବଂ ନିଜ ଗୁପ୍ତାଂଗଗୁଡ଼ିକୁ ସୁରକ୍ଷିତ ରଖନ୍ତୁ । ସେମାନଙ୍କ (ମନର) ଶୁଦ୍ଧତା ପାଇଁ ଏହା ଏକ ପବିତ୍ର ଆଚାର । ସେମାନେ ଯାହା କରନ୍ତି, ଅଲ୍ଲାହ୍ ଭଲରୂପେ ଜାଣନ୍ତି । (୨୪/୩୦)

قُلْ لِّلْمُؤْمِنِيْنَ يَغُضُّوْا مِنْ اَبْصَارِهِمْ وَ يَحْفَظُوْا فُرُوْجَهُمْ ۗ ذٰلِكَ اَزْكٰى لَهُمْ ۗ اِنَّ اللّٰهَ خَبِيْرٌۢ بِمَا يَصْنَعُوْنَ ﴿٣٠﴾

### ୩୧୪. ନାରୀମାନେ ଅଂଗପ୍ରଦର୍ଶନ କରନ୍ତୁ ନାହିଁ

ମୁସଲିମ୍ ନାରୀମାନଙ୍କୁ କୁହ ଯେ ସେମାନେ (ମଧ୍ୟ) ଦୃଷ୍ଟି ତଳକୁ ରଖନ୍ତୁ ଏବଂ ନିଜ ଗୁପ୍ତାଂଗଗୁଡ଼ିକୁ ସୁରକ୍ଷିତ ରଖନ୍ତୁ ଆଉ ନିଜ ଶୃଂଗାରଗୁଡ଼ିକର ପ୍ରଦର୍ଶନ ନ କରନ୍ତୁ, ଅବଶ୍ୟ ଯାହା ଆପେ ପ୍ରକାଶ ପାଇଥାଏ, ତା'କଥା ଭିନ୍ନ । ସେମାନେ ନିଜ ବକ୍ଷକୁ ଓଢ଼ଣା ଦ୍ୱାରା ଘୋଡ଼ାଇ ରଖନ୍ତୁ । (୨୪/୩୧)

وَ قُلْ لِّلْمُؤْمِنٰتِ يَغْضُضْنَ مِنْ اَبْصَارِهِنَّ وَ يَحْفَظْنَ فُرُوْجَهُنَّ وَ لَا يُبْدِيْنَ زِيْنَتَهُنَّ اِلَّا مَا ظَهَرَ مِنْهَا وَ لْيَضْرِبْنَ بِخُمُرِهِنَّ عَلٰى جُيُوْبِهِنَّ

### ୩୧୫. ଅଲ୍ଲାହ୍ ଯାହାକୁ ଚାହାନ୍ତି ବଜ୍ରାଘାତ କରନ୍ତି

କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହ୍ ବାଦଲଖଣ୍ଡ ଗୁଡ଼ିକୁ ଚଳାଇ ନିଅନ୍ତି, ପୁଣି ସେଗୁଡ଼ିକୁ ପରସ୍ପର ସହ ସଂଯୁକ୍ତ କରିଦିଅନ୍ତି, ତା'ପରେ ସେଗୁଡ଼ିକୁ ସ୍ତରସ୍ତର କରି ଏକ ସ୍ତୁପ କରି ଦିଅନ୍ତି ଏବଂ ସେଥିରୁ ମେଘ ବର୍ଷିବାର ତୁମେମାନେ ଦେଖ । ଆକାଶରେ ଥିବା (ବିଶାଳକାୟ ବାଦଲର) ପାହାଡ଼ଗୁଡ଼ିକରୁ ଅଲ୍ଲାହ୍ କୁଆପଥର ବୃଷ୍ଟି କରନ୍ତି ଏବଂ ସେ ଯାହାକୁ ଇଚ୍ଛା କରନ୍ତି ତାକୁ ବଜ୍ରାଘାତ କରନ୍ତି ଆଉ ଯାହାକୁ ଇଚ୍ଛା କରନ୍ତି, ତାକୁ ସୁରକ୍ଷିତ ରଖନ୍ତି । ତା' ବିଜୁଳିର ଚମକ ସତେ ଯେପରି ଦୃଷ୍ଟିଶକ୍ତି ଛିନ୍ନ କରିନେବ । (୨୪/୪୩)

اَلَمْ تَرَ اَنَّ اللّٰهَ يُزْجِيْ سَحَابًا ثُمَّ يُؤَلِّفُ بَيْنَهٗ ثُمَّ يَجْعَلُهٗ رُكَامًا فَتَرَى الْوَدْقَ يَخْرُجُ مِنْ خِلٰلِهٖ ۚ وَ يُنَزِّلُ مِنَ السَّمَآءِ مِنْ جِبَالٍ فِيْهَا مِنْۢ بَرَدٍ فَيُصِيْبُ بِهٖ مَنْ يَّشَآءُ وَ يَصْرِفُهٗ عَنْ مَّنْ يَّشَآءُ ؕ يَكَادُ سَنَا بَرْقِهٖ يَذْهَبُ بِالْاَبْصَارِ ﴿٤٣﴾

### ୩୧୬. କୁରଆନର ବାର୍ତ୍ତା ସ୍ପଷ୍ଟ

ନିଃସନ୍ଦେହରେ ଆମ୍ଭେ (କୁରଆନରେ) ଖୁବ ସ୍ପଷ୍ଟ ବାଣୀ ପ୍ରକଟ କରିଛୁ । ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି, ତାକୁ ସତ୍‌ମାର୍ଗରେ ପରିଚାଳିତ କରନ୍ତି । (୨୪/୪୬)

لَقَدْ اَنْزَلْنَاۤ اٰيٰتٍ مُّبَيِّنٰتٍ ؕ وَ اللّٰهُ يَهْدِيْ مَنْ يَّشَآءُ اِلٰى صِرَاطٍ مُّسْتَقِيْمٍ ﴿٤٦﴾

### ୩୧୭. କୁରଆନ ସତ୍ୟକୁ ପରଖିବାର କଷଟି

ମଂଗଳମୟ ସେହି ସତ୍ତା, ଯିଏ ନିଜ ଭକ୍ତ (ମହାମାନ୍ୟ ମୁହମ୍ମଦଙ୍କ) ପ୍ରତି (ସତ୍ ଓ ଅସତ୍ ମଧ୍ୟରେ ପ୍ରଭେଦ କରିବାର) କଷଟି (କୁରଆନ) ପ୍ରକଟ କଲେ, ଯାହାଦ୍ୱାରା ସେ ଜଗତବାସୀଙ୍କୁ ସାବଧାନ କରିବେ । (୨୫/୧)

تَبٰرَكَ الَّذِيْ نَزَّلَ الْفُرْقَانَ عَلٰى عَبْدِهٖ لِيَكُوْنَ لِلْعٰلَمِيْنَ نَذِيْرَا ۙ﴿١﴾

## ୩୧୮. ସୃଷ୍ଟିର ଉପାସନା କରନାହିଁ

ପୃଥିବୀ ଓ ଅନ୍ତରୀକ୍ଷରେ ଯାହାର ଆଧିପତ୍ୟ, ସେ କାହାରିକୁ ପୁଅ କରି ନାହାନ୍ତି କିମ୍ବା ତାଙ୍କ ଆଧିପତ୍ୟରେ କେହି ଅଂଶୀଦାର ନାହାନ୍ତି । ସେ ପ୍ରତ୍ୟେକ ବସ୍ତୁକୁ ସୃଷ୍ଟି କଲେ ଏବଂ ତା'ପାଇଁ ଏକ ଉଚିତ ଅନୁପାତ ନିର୍ଦ୍ଧାରଣ କଲେ । ତଥାପି ଲୋକମାନେ ତାଙ୍କୁ ଛାଡ଼ି ଏଭଳି ଉପାସ୍ୟମାନଙ୍କୁ ଗଢ଼ି ନେଇଛନ୍ତି, ଯେଉଁମାନେ କାହାରିକୁ ସୃଷ୍ଟି କରନ୍ତି ନାହିଁ, ବରଂ ସେମାନେ ନିଜେ (ଅଲ୍ଲାହଙ୍କ ଦ୍ୱାରା) ସୃଷ୍ଟି ହୁଅନ୍ତି । ସେମାନଙ୍କ ନିଜର ହାନି ବା ଲାଭ (ମଧ୍ୟ) ସେମାନଙ୍କ ଆୟତ୍ତରେ ନାହିଁ କିମ୍ବା ଜୀବନ, ମୃତ୍ୟୁ ବା ପୁନର୍ଜୀବନ ଉପରେ ସେମାନଙ୍କର କିଛି ନିୟନ୍ତ୍ରଣ ଅଛି । (୨୫/୨-୩)

الَّذِىْ لَهٗ مُلْكُ السَّمٰوٰتِ وَالْاَرْضِ وَلَمْ يَتَّخِذْ وَلَدًا وَّلَمْ يَكُنْ لَّهٗ شَرِيْكٌ فِى الْمُلْكِ وَخَلَقَ كُلَّ شَىْءٍ فَقَدَّرَهٗ تَقْدِيْرًا ۝٢ وَاتَّخَذُوْا مِنْ دُوْنِهٖٓ اٰلِهَةً لَّا يَخْلُقُوْنَ شَيْـًٔا وَّهُمْ يُخْلَقُوْنَ وَلَا يَمْلِكُوْنَ لِاَنْفُسِهِمْ ضَرًّا وَّلَا نَفْعًا وَّلَا يَمْلِكُوْنَ مَوْتًا وَّلَا حَيٰوةً وَّلَا نُشُوْرًا ۝٣

## ୩୧୯. କୁରଆନକୁ ଛାଡ଼ିଲେ ପଥଭ୍ରଷ୍ଟ ହୋଇଯିବ

ଯେଉଁଦିନ ଆକାଶ ବାଦଲ ସହ ଫାଟିବ ଏବଂ ଦେବଗଣଙ୍କୁ ନିରନ୍ତର ଅବତରଣ କରାଯିବ, ସେଦିନ ଦୟାମୟଙ୍କ ରାଜତ୍ୱ ହେବ ଏବଂ ଅବିଶ୍ୱାସୀ ଲୋକମାନଙ୍କ ପାଇଁ ସେଦିନ ଏକ କଠିନ ଦିନ ହେବ । ସେଦିନ ଦୁରାଚାରୀ ମଣିଷ (ଅବଶୋଷରେ) ନିଜ ହାତ କାମୁଡ଼ି ପକାଇ କହିବ, "ଆହା ! ମୁଁ ଈଶ୍ୱରଦୂତଙ୍କ ବାଟରେ ଚାଲିଥାଆନ୍ତି କି ? ହାୟ, ମୋ ଦୁର୍ଭାଗ୍ୟ ! ମୁଁ ଅମୁକ ଲୋକକୁ ବନ୍ଧୁ କରି ନଥାଆନ୍ତି କି ? ମୋ' ପାଖକୁ କୁରଆନର ବାର୍ତ୍ତା ଆସି ସାରିଥିଲା, ମାତ୍ର ସେ ଲୋକଟା ମୋତେ ବିଭ୍ରାନ୍ତ କରିଦେଲା ।" ଶଇତାନ ତ ଠିକ୍ ସମୟରେ ମଣିଷକୁ ପ୍ରତାରିତ କରିଥାଏ । ବିଚାରଦିନ ଈଶ୍ୱରଦୂତ କହିବେ, "ହେ ପ୍ରଭୁ ! ପ୍ରକୃତରେ ମୋ' ଲୋକମାନେ ଏହି କୁରଆନକୁ ପରିତ୍ୟାଗ କରି ଦେଇଥିଲେ ।"

(୨୫/୨୫-୩୦)

وَيَوْمَ تَشَقَّقُ السَّمَآءُ بِالْغَمَامِ وَنُزِّلَ الْمَلٰٓئِكَةُ تَنْزِيْلًا ۝٢٥ اَلْمُلْكُ يَوْمَئِذِ ِالْحَقُّ لِلرَّحْمٰنِ ؕ وَكَانَ يَوْمًا عَلَى الْكٰفِرِيْنَ عَسِيْرًا ۝٢٦ وَيَوْمَ يَعَضُّ الظَّالِمُ عَلٰى يَدَيْهِ يَقُوْلُ يٰلَيْتَنِى اتَّخَذْتُ مَعَ الرَّسُوْلِ سَبِيْلًا ۝٢٧ يٰوَيْلَتٰى لَيْتَنِىْ لَمْ اَتَّخِذْ فُلَانًا خَلِيْلًا ۝٢٨ لَقَدْ اَضَلَّنِىْ عَنِ الذِّكْرِ بَعْدَ اِذْ جَآءَنِىْ ؕ وَكَانَ الشَّيْطٰنُ لِلْاِنْسَانِ خَذُوْلًا ۝٢٩ وَقَالَ الرَّسُوْلُ يٰرَبِّ اِنَّ قَوْمِى اتَّخَذُوْا هٰذَا الْقُرْاٰنَ مَهْجُوْرًا ۝٣٠

## ୩୨୦. ଇନ୍ଦ୍ରିୟ-ସେବା କରନାହିଁ

କ'ଣ ତୁମେ ସେହି ଲୋକକୁ ଦେଖିଛ, ଯିଏ ନିଜର କାମନାକୁ ହିଁ ଈଶ୍ୱର କରି ଦେଇଛି ? କ'ଣ ତୁମେ ଏଭଳି ବ୍ୟକ୍ତିର (ମାର୍ଗଦର୍ଶନର) ଦାୟିତ୍ୱ ନେଇ ପାରିବ ? କ'ଣ ତୁମେ ଭାବୁଛ ଯେ ଏହି ଲୋକମାନଙ୍କ ମଧ୍ୟରୁ ଅଧିକାଂଶ କିଛି ଶୁଣନ୍ତି ବା

اَرَءَيْتَ مَنِ اتَّخَذَ اِلٰهَهٗ هَوٰىهُ ؕ اَفَاَنْتَ تَكُوْنُ عَلَيْهِ وَكِيْلًا ۝٤٣ اَمْ تَحْسَبُ اَنَّ اَكْثَرَهُمْ يَسْمَعُوْنَ اَوْ يَعْقِلُوْنَ ؕ اِنْ هُمْ اِلَّا كَالْاَنْعَامِ بَلْ

ବୁଝନ୍ତି ? ଏମାନେ ପଶୁ ସଦୃଶ, ବରଂ (ତାହା ଅପେକ୍ଷା) ଅଧିକ ପଥଭ୍ରଷ୍ଟ । (୨୫/୪୩-୪୪)

هُمْ اَضَلُّ سَبِيْلًا ﴿٤٤﴾

### ୩୨୧. ଅଲ୍ଲାହ୍ ଅବିନାଶୀ

ଭରସା ରଖ ସେହି ସଦା ଜୀବିତ ସତ୍ତାଙ୍କ ଉପରେ ଯିଏ (କେବେ) ମୃତ୍ୟୁ ବରଣ କରନ୍ତି ନାହିଁ ଏବଂ ତାଙ୍କର ସ୍ତୁତିଗାନ ଓ ଗୁଣଗାନ କରୁଥାଅ । ନିଜ ଭକ୍ତଙ୍କ ପାପର ଖବର ରଖିବା ପାଇଁ ସେ ଯଥେଷ୍ଟ । (୨୫/୫୮)

وَتَوَكَّلْ عَلَى الْحَيِّ الَّذِيْ لَا يَمُوْتُ وَسَبِّحْ بِحَمْدِهٖ ۚ وَ
كَفٰى بِهٖ بِذُنُوْبِ عِبَادِهٖ خَبِيْرًا ﴿٥٨﴾

### ୩୨୨. ପ୍ରକୃତ ଈଶ୍ୱରଭକ୍ତଙ୍କ ସ୍ୱଭାବ

ଦୟାମୟଙ୍କ ଭକ୍ତ ସେଇମାନେ, ଯେଉଁମାନେ ଧରାପୃଷ୍ଠରେ ବିନମ୍ର ହୋଇ ଚାଲନ୍ତି ଏବଂ ଯେତେବେଳେ ଅଜ୍ଞାନୀମାନେ ସେମାନଙ୍କୁ କିଛି (ଭଲମନ୍ଦ) କହନ୍ତି, ପ୍ରତ୍ୟୁତ୍ତରରେ ଏମାନେ ସେମାନଙ୍କର ମଂଗଳକାମନା କରନ୍ତି । ସେମାନେ ନିଜ ପରମେଶ୍ୱରଙ୍କ ସମ୍ମୁଖରେ ପ୍ରଣାମ କରିବା ଏବଂ (ନମାଜରେ) ଠିଆ ହେବା ଅବସ୍ଥାରେ ରାତି ବିତାଇ ଦିଅନ୍ତି ଏବଂ ପ୍ରାର୍ଥନା କରନ୍ତି, “ହେ ପ୍ରଭୁ! ଆମକୁ ନର୍କର ଶାସ୍ତିରୁ ଦୂରେଇ ରଖ । ବାସ୍ତବରେ ସେଠାର ଶାସ୍ତି ଅତ୍ୟନ୍ତ ଭୟାବହ । ନିଃସନ୍ଦେହରେ ତାହା ଅତି ମନ୍ଦ ଏବଂ କଦର୍ଯ୍ୟ ସ୍ଥାନ ।’’ ଯେତେବେଳେ ସେମାନେ କିଛି ଖର୍ଚ୍ଚ କରନ୍ତି, ବଦଖର୍ଚ୍ଚ କରନ୍ତି ନାହିଁ ବା ବ୍ୟୟକୁଣ୍ଠ ହୁଅନ୍ତି ନାହିଁ, ବରଂ ମଧ୍ୟମ ମାର୍ଗ ଅବଲମ୍ବନ କରନ୍ତି । ସେମାନେ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଉପାସ୍ୟକୁ ଡାକନ୍ତି ନାହିଁ ଏବଂ ଅଲ୍ଲାଙ୍କ ଦ୍ୱାରା ନିଷିଦ୍ଧ କରାଯାଇ ଥିବା କୌଣସି ଜୀବକୁ ଅନଧିକାର ହତ୍ୟା କରନ୍ତି ନାହିଁ ବା ବ୍ୟଭିଚାର କରନ୍ତି ନାହିଁ । ଯିଏ ଏପରି କର୍ମ କରିବ, ତାକୁ ନିଜ ପାପର ଶାସ୍ତି ଭୋଗିବାକୁ ହେବ । ବିଚାର ଦିନ ତାକୁ ଦ୍ୱିଗୁଣ ଶାସ୍ତି ହେବ ଏବଂ ସେ ସେହିପରି ଲାଂଛିତ ଅବସ୍ଥାରେ ଚିରଦିନ ପାଇଁ ପଡ଼ିରହିବ । ମାତ୍ର, ଯିଏ ଅନୁତାପ କରେ, ବିଶ୍ୱାସ ରଖେ ଏବଂ ସତକର୍ମ କରେ, ଏଭଳି ଲୋକମାନଙ୍କର ପାପକୁ ଅଲ୍ଲାହ୍ ପୁଣ୍ୟରେ ବଦଳି ଦେବେ । ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ଅନନ୍ତ କୃପାଶୀଳ । ଯିଏ (କୁକର୍ମ ପାଇଁ) ଅନୁଶୋଚନା କରିବା ପରେ ସତକର୍ମ କରେ, ପ୍ରକୃତରେ ସେ ଅଲ୍ଲାହଙ୍କ ଆଡ଼କୁ ଫେରିଥାଏ । ସେମାନେ ମଧ୍ୟ (ଦୟାମୟଙ୍କ ପ୍ରକୃତ ଭକ୍ତ) ଯେଉଁମାନେ ମିଥ୍ୟା

وَعِبَادُ الرَّحْمٰنِ الَّذِيْنَ يَمْشُوْنَ عَلَى الْاَرْضِ
هَوْنًا وَّاِذَا خَاطَبَهُمُ الْجٰهِلُوْنَ قَالُوْا سَلٰمًا ﴿٦٣﴾
وَالَّذِيْنَ يَبِيْتُوْنَ لِرَبِّهِمْ سُجَّدًا وَّ قِيَامًا ﴿٦٤﴾
وَالَّذِيْنَ يَقُوْلُوْنَ رَبَّنَا اصْرِفْ عَنَّا عَذَابَ جَهَنَّمَ ۖ
اِنَّ عَذَابَهَا كَانَ غَرَامًا ﴿٦٥﴾ اِنَّهَا سَآءَتْ مُسْتَقَرًّا
وَّ مُقَامًا ﴿٦٦﴾ وَالَّذِيْنَ اِذَآ اَنْفَقُوْا لَمْ يُسْرِفُوْا
وَلَمْ يَقْتُرُوْا وَكَانَ بَيْنَ ذٰلِكَ قَوَامًا ﴿٦٧﴾ وَالَّذِيْنَ
لَا يَدْعُوْنَ مَعَ اللّٰهِ اِلٰهًا اٰخَرَ وَلَا يَقْتُلُوْنَ
النَّفْسَ الَّتِيْ حَرَّمَ اللّٰهُ اِلَّا بِالْحَقِّ وَلَا يَزْنُوْنَ ۚ
وَمَنْ يَّفْعَلْ ذٰلِكَ يَلْقَ اَثَامًا ﴿٦٨﴾ يُّضٰعَفْ لَهُ
الْعَذَابُ يَوْمَ الْقِيٰمَةِ وَيَخْلُدْ فِيْهٖ مُهَانًا ﴿٦٩﴾
اِلَّا مَنْ تَابَ وَاٰمَنَ وَعَمِلَ عَمَلًا صَالِحًا
فَاُولٰٓئِكَ يُبَدِّلُ اللّٰهُ سَيِّاٰتِهِمْ حَسَنٰتٍ ۗ وَكَانَ
اللّٰهُ غَفُوْرًا رَّحِيْمًا ﴿٧٠﴾ وَمَنْ تَابَ وَعَمِلَ

ସାକ୍ଷ୍ୟ ଦିଅନ୍ତି ନାହିଁ ଏବଂ ଯଦି କୌଣସି ନିରର୍ଥକ କର୍ମ ହେଉଥିବାର ଦେଖନ୍ତି, (ସେଠାରୁ) ଭଦ୍ର ଭାବରେ ବାହାରି ଯାଆନ୍ତି । ଯଦି ସେମାନଙ୍କ ପାଖରେ ସେମାନଙ୍କ ପ୍ରଭୁଙ୍କ ବାଣୀ ପାଠ କରାଯାଏ, ସେମାନେ ସେଥିପ୍ରତି ଅନ୍ଧ ଓ ବଧିର ହୋଇ ଯାଆନ୍ତି ନାହିଁ (ବରଂ ଧ୍ୟାନ ଦେଇ ଶୁଣନ୍ତି) । ସେମାନେ ପ୍ରାର୍ଥନା କରନ୍ତି, "ହେ ପ୍ରଭୁ! ଆମ ପତ୍ନୀ ଓ ସନ୍ତାନମାନଙ୍କ ଦ୍ୱାରା ଆମକୁ ସୁଖ ପ୍ରଦାନ କର ଏବଂ ଆମକୁ ସଦାଚାରୀମାନଙ୍କ ପାଇଁ ଆଦର୍ଶ କରିଦିଅ ।" ଏଇମାନଙ୍କୁ ସେମାନଙ୍କ ସଂଯମର ପୁରସ୍କାର ସ୍ୱରୂପ ବୈକୁଣ୍ଠର ଉଚ୍ଚ ଉଚ୍ଚ ମହଲ ମିଳିବ ଏବଂ ମଂଗଳକର ବାଣୀ ଦ୍ୱାରା ସେମାନଙ୍କର ଅଭ୍ୟର୍ଥନା କରାଯିବ । (୨୫/୬୩-୭୫)

صَالِحًا فَإِنَّهُ يَتُوبُ إِلَى اللَّهِ مَتَابًا ﴿٧١﴾ وَالَّذِينَ
لَا يَشْهَدُونَ الزُّورَ وَإِذَا مَرُّوا بِاللَّغْوِ مَرُّوا
كِرَامًا ﴿٧٢﴾ وَالَّذِينَ إِذَا ذُكِّرُوا بِآيَاتِ رَبِّهِمْ لَمْ
يَخِرُّوا عَلَيْهَا صُمًّا وَعُمْيَانًا ﴿٧٣﴾ وَالَّذِينَ
يَقُولُونَ رَبَّنَا هَبْ لَنَا مِنْ أَزْوَاجِنَا وَذُرِّيَّاتِنَا
قُرَّةَ أَعْيُنٍ وَاجْعَلْنَا لِلْمُتَّقِينَ إِمَامًا ﴿٧٤﴾ أُولَٰئِكَ
يُجْزَوْنَ الْغُرْفَةَ بِمَا صَبَرُوا وَيُلَقَّوْنَ فِيهَا
تَحِيَّةً وَسَلَامًا ﴿٧٥﴾

## ୩୨୩. ସେ ହିଁ ତୁମର ଆବଶ୍ୟକତା ପୂରଣ କରନ୍ତି

(ଈଶ୍ୱରଦୂତ ଇବ୍ରାହିମ କହିଲେ) ସେ ହିଁ ମୋତେ ସୃଷ୍ଟି କରିଛନ୍ତି ଏବଂ ସେ ହିଁ ମୋର ପଥପ୍ରଦର୍ଶନ କରନ୍ତି । ସେ ହିଁ ମୋତେ ଖାଦ୍ୟପେୟ ଦିଅନ୍ତି ଏବଂ ଯେତେବେଳେ ମୁଁ ଅସୁସ୍ଥ ହୋଇ ପଡ଼େ, ସେ ମୋତେ ଆରୋଗ୍ୟ କରନ୍ତି । ସେ ମୋତେ ମୃତ୍ୟୁ ଦେବେ, ପୁନର୍ଜୀବିତ କରିବେ ଏବଂ ମୁଁ ଆଶା ରଖିଛି ଯେ ବିଚାର ଦିନ ସେ ମୋ' ଦୋଷ କ୍ଷମା କରିଦେବେ । (୨୬/୭୮-୮୨)

الَّذِي خَلَقَنِي فَهُوَ يَهْدِينِ ﴿٧٨﴾ وَالَّذِي هُوَ
يُطْعِمُنِي وَيَسْقِينِ ﴿٧٩﴾ وَإِذَا مَرِضْتُ فَهُوَ
يَشْفِينِ ﴿٨٠﴾ وَالَّذِي يُمِيتُنِي ثُمَّ يُحْيِينِ ﴿٨١﴾
وَالَّذِي أَطْمَعُ أَنْ يَغْفِرَ لِي خَطِيئَتِي يَوْمَ
الدِّينِ ﴿٨٢﴾

## ୩୨୪. ବୃଥା ଅଟ୍ଟାଳିକା ନିର୍ମାଣ କରନାହିଁ

ତୁମେମାନେ କ'ଣ ଉଚ୍ଚ ଯାଗାମାନଙ୍କରେ ଅଯଥାରେ ବଡ଼ବଡ଼ ସୌଧ ଓ ଭବ୍ୟ ଅଟ୍ଟାଳିକା ନିର୍ମାଣ କରୁଛ, ସତେ ଯେପରି ତୁମେମାନେ ଏଠି ସବୁଦିନ ରହିବ? (୨୬/୧୨୮-୧୨୯)

أَتَبْنُونَ بِكُلِّ رِيعٍ آيَةً تَعْبَثُونَ ﴿١٢٨﴾ وَتَتَّخِذُونَ
مَصَانِعَ لَعَلَّكُمْ تَخْلُدُونَ ﴿١٢٩﴾

## ୩୨୫. ସଂସାରରେ ତୁମକୁ ରହିବାକୁ ଦିଆଯିବନାହିଁ

କ'ଣ ତୁମମାନଙ୍କୁ ଏଠାର ଐଶ୍ୱର୍ଯ୍ୟ ମଧ୍ୟରେ ନିଶ୍ଚିନ୍ତରେ ରହିବାକୁ ଦିଆଯିବ? ଉଦ୍ୟାନ, ଝରଣା ଓ ଶସ୍ୟକ୍ଷେତ୍ର ମଧ୍ୟରେ, ବା ଖଜୁରୀ ବଗିଚାରେ ଯାହାର ପେନ୍ଥାଗୁଡ଼ିକ କୋମଳ? କ'ଣ (ଏଇଥିପାଇଁ) ତୁମେମାନେ ପାହାଡ଼କୁ କାଟି କାଟି କୁଶଳତାର ସହ ଘରସବୁ

أَتُتْرَكُونَ فِي مَا هَاهُنَا آمِنِينَ ﴿١٤٦﴾ فِي جَنَّاتٍ
وَعُيُونٍ ﴿١٤٧﴾ وَزُرُوعٍ وَنَخْلٍ طَلْعُهَا هَضِيمٌ ﴿١٤٨﴾
وَتَنْحِتُونَ مِنَ الْجِبَالِ بُيُوتًا فَارِهِينَ ﴿١٤٩﴾

ତିଆରି କରୁଛ ? ଅଲ୍ଲାହଙ୍କୁ ଭୟ କର ଏବଂ ମୋ’ କଥା ମାନି ଚଳ । (୨୬/୧୪୬-୧୫୦)

فَاتَّقُوا اللّٰهَ وَاَطِيْعُوْنِ ﴿١٥٠﴾

### ୩୨୬. କାହାରି କ୍ଷତି କରନାହିଁ

ମାପପାତ୍ର ପୂର୍ଣ୍ଣ କରି ଦିଅ ଏବଂ କାହାରି କ୍ଷତି କରନାହିଁ । ସଠିକ୍ ନିକିତିରେ ଓଜନ କର । (୨୬/୧୮୧-୧୮୨)

اَوْفُوا الْكَيْلَ وَلَا تَكُوْنُوْا مِنَ الْمُخْسِرِيْنَ ﴿١٨١﴾

وَزِنُوْا بِالْقِسْطَاسِ الْمُسْتَقِيْمِ ﴿١٨٢﴾

### ୩୨୭. ସମାଜରେ ବିଶୃଂଖଳା ସୃଷ୍ଟି କରନାହିଁ

ଲୋକମାନଙ୍କୁ ସେମାନଙ୍କ ଜିନିଷ କମ୍ କରି ଦିଅନାହିଁ ଏବଂ ଧରାପୃଷ୍ଠରେ ବିଶୃଂଖଳା ସୃଷ୍ଟି କରିବୁଲ ନାହିଁ । ତାଙ୍କୁ ଭୟ କରୁଥାଅ, ଯିଏ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ । (୨୬/୧୮୩-୧୮୪)

وَلَا تَبْخَسُوا النَّاسَ اَشْيَآءَهُمْ وَلَا تَعْثَوْا فِي الْاَرْضِ مُفْسِدِيْنَ ﴿١٨٣﴾ وَاتَّقُوا الَّذِيْ خَلَقَكُمْ وَالْجِبِلَّةَ الْاَوَّلِيْنَ ﴿١٨٤﴾

### ୩୨୮. ନିଜର ଆତ୍ମୀୟ-ସ୍ୱଜନଙ୍କୁ ସାବଧାନ କରିଦିଅ

ସୁତରାଂ, ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି (କଳ୍ପିତ) ଉପାସ୍ୟକୁ ଡାକନାହିଁ, ଅନ୍ୟଥା ତୁମେ ଶାସ୍ତି ଭୋଗିବ ।(ଏ ବିଷୟରେ) ନିଜର ଆତ୍ମୀୟମାନଙ୍କୁ ସାବଧାନ କରିଦିଅ । (୨୬/୨୧୩-୨୧୪)

فَلَا تَدْعُ مَعَ اللّٰهِ اِلٰهًا اٰخَرَ فَتَكُوْنَ مِنَ الْمُعَذَّبِيْنَ ﴿٢١٣﴾ وَاَنْذِرْ عَشِيْرَتَكَ الْاَقْرَبِيْنَ ﴿٢١٤﴾

### ୩୨୯. ଅଦୃଷ୍ଟ କଥା ଅନ୍ୟ କେହି ଜାଣନ୍ତି ନାହିଁ

କହିଦିଅ, “ଧରିତ୍ରୀ ଓ ଆକାଶର ଅଦୃଶ୍ୟ କଥା ଅଲ୍ଲାହଙ୍କ ବ୍ୟତୀତ କେହି ଜାଣନ୍ତି ନାହିଁ କିମ୍ବା ସେମାନଙ୍କୁ ଏହା ମଧ୍ୟ ଜଣା ନାହିଁ ଯେ ସେମାନେ କେବେ ପୁନର୍ଜୀବନ ପାଇ ଉଠିବେ ।” (୨୭/୬୫)

قُلْ لَّا يَعْلَمُ مَنْ فِي السَّمٰوٰتِ وَالْاَرْضِ الْغَيْبَ اِلَّا اللّٰهُ ۗ وَمَا يَشْعُرُوْنَ اَيَّانَ يُبْعَثُوْنَ ﴿٦٥﴾

### ୩୩୦. ପୂର୍ବ ଗ୍ରନ୍ଥଧାରୀମାନେ ମଧ୍ୟ ମୁସଲିମ୍ ଥିଲେ

ଏହା ପୂର୍ବରୁ ଯେଉଁମାନଙ୍କୁ ଆମ୍ଭେ ଗ୍ରନ୍ଥ ପ୍ରଦାନ କରିଛୁ, ସେମାନେ ଏହି ଗ୍ରନ୍ଥରେ ବିଶ୍ୱାସ କରିନିଅନ୍ତି । ଯେତେବେଳେ ସେମାନଙ୍କ ପାଖରେ ଏହା ପାଠ କରାଯାଏ, ସେମାନେ କହନ୍ତି ଯେ ଆମେ ଏହାକୁ ବିଶ୍ୱାସ କରୁଛୁ ଏବଂ ଏହି ସତ୍ୟ (କୁରାନ) ଅବଶ୍ୟ ଆମ ପ୍ରଭୁଙ୍କଠାରୁ ଆସିଛି । ଆମେ ତ ଏହା ପୂର୍ବରୁ ମଧ୍ୟ ମୁସଲିମ୍ (ଅର୍ଥାତ୍ ସମର୍ପଣକାରୀ) ଥିଲୁ । (୨୮/୫୨-୫୩)

اَلَّذِيْنَ اٰتَيْنٰهُمُ الْكِتٰبَ مِنْ قَبْلِهٖ هُمْ بِهٖ يُؤْمِنُوْنَ ﴿٥٢﴾ وَاِذَا يُتْلٰى عَلَيْهِمْ قَالُوْٓا اٰمَنَّا بِهٖٓ اِنَّهُ الْحَقُّ مِنْ رَّبِّنَآ اِنَّا كُنَّا مِنْ قَبْلِهٖ مُسْلِمِيْنَ ﴿٥٣﴾

### ୩୩୧. ସଦାଚାରୀ ଦରିଦ୍ର ଦୁରାଚାରୀ ଧନୀଠାରୁ ଶ୍ରେଷ୍ଠ

ତୁମମାନଙ୍କୁ ଯାହା ଦିଆଯାଇଛି, ସେଗୁଡ଼ିକ ପାର୍ଥିବ ଜୀବନର ସାଧନ ଓ ସୌନ୍ଦର୍ଯ୍ୟ ମାତ୍ର । ଯାହା ଅଲ୍ଲାହଙ୍କ ପାଖରେ

وَمَآ اُوْتِيْتُمْ مِّنْ شَيْءٍ فَمَتَاعُ الْحَيٰوةِ الدُّنْيَا وَزِيْنَتُهَا ۚ وَمَا عِنْدَ اللّٰهِ خَيْرٌ وَّاَبْقٰى ۗ اَفَلَا

تَعۡقِلُوۡنَ ﴿۶۰﴾ اَفَمَنۡ وَّعَدۡنٰهُ وَعۡدًا حَسَنًا فَهُوَ
لَاقِيۡهِ كَمَنۡ مَّتَّعۡنٰهُ مَتَاعَ الۡحَيٰوةِ الدُّنۡيَا
ثُمَّ هُوَ يَوۡمَ الۡقِيٰمَةِ مِنَ الۡمُحۡضَرِيۡنَ ﴿۶۱﴾

(ପରଲୋକରେ) ଅଛି, ତାହା ଏହାଠାରୁ ଢ଼େର ଭଲ ଏବଂ ଚିରସ୍ଥାୟୀ । କ'ଣ ତୁମମାନଙ୍କର ବୁଦ୍ଧି ନାହିଁ? ଯାହାକୁ ଆମ୍ଭେ (ବୈକୁଣ୍ଠର) ଶୁଭ ପ୍ରତିଶୃତି ଦେଇଛୁ ଏବଂ ସେ ତାହା ସତ୍ୟ ପ୍ରମାଣିତ ହେବାର ମଧ୍ୟ ଦେଖିବ, କ'ଣ ସେହି ବ୍ୟକ୍ତି ଏଭଳି ଜଣେ ବ୍ୟକ୍ତି ସହ ସମାନ ହୋଇପାରେ, ଯାହାକୁ ଆମ୍ଭେ ସଂସାରରେ (ବିଭିନ୍ନ ପ୍ରକାରର) ଭୋଗ୍ୟ ବସ୍ତୁ ଦେଇଛୁ, ମାତ୍ର ବିଚାର ଦିନ ସେ ଆମ୍ଭ ସମ୍ମୁଖରେ (ଜଣେ ଅପରାଧୀ ରୂପେ) ଠିଆ ହେବ? (୨୮/୬୦-୬୧)

### ୩୩୨. ଅନ୍ୟର ଉପକାର କର

وَ اَحۡسِنۡ كَمَاۤ اَحۡسَنَ اللّٰهُ اِلَيۡكَ وَلَا تَبۡغِ الۡفَسَادَ
فِى الۡاَرۡضِ ؕ اِنَّ اللّٰهَ لَا يُحِبُّ الۡمُفۡسِدِيۡنَ ﴿۷۷﴾

ଯେପରି ଅଲ୍ଲାହ୍ ତୁମମାନଙ୍କର ଉପକାର କରିଛନ୍ତି, ସେହିପରି ତୁମେମାନେ ମଧ୍ୟ ଅନ୍ୟର ଉପକାର କର ଏବଂ ଭୂପୃଷ୍ଠରେ ବିଶୃଂଖଳା ସୃଷ୍ଟି କରିବାକୁ ଚେଷ୍ଟା କରନାହିଁ । ପ୍ରକୃତରେ ଅଲ୍ଲାହ୍ ବିଶୃଂଖଳା ସୃଷ୍ଟିକାରୀକୁ ପସନ୍ଦ କରନ୍ତି ନାହିଁ । (୨୮/୭୭)

### ୩୩୩. ଅହଂକାର କରନାହିଁ

تِلۡكَ الدَّارُ الۡاٰخِرَةُ نَجۡعَلُهَا لِلَّذِيۡنَ لَا يُرِيۡدُوۡنَ
عُلُوًّا فِى الۡاَرۡضِ وَ لَا فَسَادًا ؕ وَ الۡعَاقِبَةُ
لِلۡمُتَّقِيۡنَ ﴿۸۳﴾

ବୈକୁଣ୍ଠର ଭବନ ଆମ୍ଭେ ସେଇ ଲୋକମାନଙ୍କ ପାଇଁ (ତିଆରି କରି) ରଖିଛୁ ଯେଉଁମାନେ ଭୂପୃଷ୍ଠରେ ଅହଂକାର କରନ୍ତି ନାହିଁ କିମ୍ବା ବିଶୃଂଖଳା ଚାହାନ୍ତି ନାହିଁ । ଅନ୍ତିମ ପରିଣାମ (ସର୍ବଦା) ସଦାଚାରୀଙ୍କ ପକ୍ଷରେ ହିଁ ହୋଇଥାଏ । (୨୮/୮୩)

### ୩୩୪. ଈଶ୍ୱରଙ୍କ ବ୍ୟତୀତ ସମସ୍ତେ ବିନାଶଶୀଳ

وَلَا تَدۡعُ مَعَ اللّٰهِ اِلٰهًا اٰخَرَ ۘ لَاۤ اِلٰهَ اِلَّا هُوَ ۟ كُلُّ
شَىۡءٍ هَالِكٌ اِلَّا وَجۡهَهٗ ؕ لَهُ الۡحُكۡمُ وَ اِلَيۡهِ
تُرۡجَعُوۡنَ ﴿۸۸﴾

ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି (କଳ୍ପିତ) ଈଶ୍ୱରକୁ ଡାକନାହିଁ । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହନ୍ତି । ତାଙ୍କ ବ୍ୟତୀତ ପ୍ରତ୍ୟେକ ବସ୍ତୁ ବିନାଶଶୀଳ । ତାଙ୍କରି ଆଜ୍ଞା ହିଁ ଆଜ୍ଞା ଏବଂ ତାଙ୍କରି ନିକଟକୁ ତୁମେମାନେ ଫେରିଯିବ । (୨୮/୮୮)

### ୩୩୫. ତୁମ ବିଶ୍ୱାସର ପରୀକ୍ଷା ନିଆଯିବ

اَحَسِبَ النَّاسُ اَنۡ يُّتۡرَكُوۡۤا اَنۡ يَّقُوۡلُوۡۤا اٰمَنَّا وَهُمۡ
لَا يُفۡتَنُوۡنَ ﴿۲﴾ وَ لَقَدۡ فَتَنَّا الَّذِيۡنَ مِنۡ قَبۡلِهِمۡ
فَلَيَعۡلَمَنَّ اللّٰهُ الَّذِيۡنَ صَدَقُوۡا وَلَيَعۡلَمَنَّ
الۡكٰذِبِيۡنَ ﴿۳﴾

କ'ଣ ଲୋକମାନେ ଭାବିଛନ୍ତି ଯେ କେବଳ "ଆମେ ବିଶ୍ୱାସ କରୁ" ବୋଲି କହିଦେଲେ, ସେମାନଙ୍କୁ ଛାଡ଼ି ଦିଆଯିବ? ସେମାନଙ୍କୁ ପରୀକ୍ଷା କରାଯିବ ନାହିଁ? ଆମ୍ଭେ ତ ଏମାନଙ୍କ ପୂର୍ବଜମାନଙ୍କୁ (ମଧ୍ୟ) ପରୀକ୍ଷା କରିଛୁ । ଏମାନଙ୍କୁ ମଧ୍ୟ ଅଲ୍ଲାହ୍ ପରୀକ୍ଷା କରି ଦେଖିବେ ଯେ (ଏମାନଙ୍କ ମଧ୍ୟରୁ) କେଉଁମାନେ ସତ କହୁଛନ୍ତି ଏବଂ କେଉଁମାନେ ମିଛ । (୨୯/୨-୩)

**୩୩୬. ପାପୀ ଈଶ୍ୱରଙ୍କ କବଳରୁ ଖସି ପାରିବ ନାହିଁ**

କିମ୍ବା ଯେଉଁମାନେ ଦୁଷ୍କର୍ମ କରୁଛନ୍ତି, କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭ କବଳରୁ ଖସିଯିବେ? ସେମାନଙ୍କର କି କଦର୍ଯ୍ୟ ଚିନ୍ତାଧାରା ? (୨୯/୪)

اَمۡ حَسِبَ الَّذِیۡنَ یَعۡمَلُوۡنَ السَّیِّاٰتِ اَنۡ یَّسۡبِقُوۡنَا ؕ سَآءَ مَا یَحۡکُمُوۡنَ ﴿۴﴾

**୩୩୭. ବାପାମାଆଙ୍କର ଅନୁଚିତ କଥା ମାନନାହିଁ**

ମୁଁ ମାନବକୁ ନିଜ ପିତାମାତାଙ୍କ ସହିତ ଉତ୍ତମ ବ୍ୟବହାର କରିବାର ଆଦେଶ ଦେଇଛି, କିନ୍ତୁ ଯଦି ସେମାନେ ତୁମକୁ ଏଥିପାଇଁ ବାଧ କରନ୍ତି ଯେ ତୁମେ ଅନ୍ୟ କାହାରିକୁ ମୋ' ଈଶ୍ୱରତ୍ୱରେ ଅଂଶୀଦାର କର, ଯାହା ସଂପର୍କରେ ତୁମର କୌଣସି ଜ୍ଞାନ ନାହିଁ, ତେବେ ସେମାନଙ୍କ କଥା ମାନନାହିଁ। ତୁମମାନଙ୍କୁ ମୋ' ପାଖକୁ ଫେରିବାକୁ ହେବ ଏବଂ ତୁମେମାନେ ଯାହା କରିଥିଲ, ମୁଁ ତୁମମାନଙ୍କୁ ଜଣାଇ ଦେବି। (୨୯/୮)

وَ وَصَّیۡنَا الۡاِنۡسَانَ بِوَالِدَیۡہِ حُسۡنًا ؕ وَ اِنۡ جَاہَدٰکَ لِتُشۡرِکَ بِیۡ مَا لَیۡسَ لَکَ بِہٖ عِلۡمٌ فَلَا تُطِعۡہُمَا ؕ اِلَیَّ مَرۡجِعُکُمۡ فَاُنَبِّئُکُمۡ بِمَا کُنۡتُمۡ تَعۡمَلُوۡنَ ﴿۸﴾

**୩୩୮. ନମାଜ ଅପକର୍ମରୁ ନିବୃତ୍ତ ରଖିଥାଏ**

(ହେ ଈଶ୍ୱରଦୂତ!) ତୁମ ପ୍ରତି ଯେଉଁ ଗ୍ରନ୍ଥ ପ୍ରକଟ କରାଯାଇଛି, ତାହାକୁ (ନିୟମିତ) ପାଠ କରୁଥାଅ ଏବଂ ନମାଜ ସଂପାଦନ କରୁଥାଅ। ନିଃସନ୍ଦେହରେ ନମାଜ ଅଶ୍ଲୀଳତା ଓ ଅପକର୍ମରୁ ନିବୃତ୍ତ ରଖିଥାଏ। ଅଲ୍ଲାହଙ୍କ ସ୍ମରଣ ଏକ ମହାନ (ପୁଣ୍ୟ) କାର୍ଯ୍ୟ। ତୁମେ ଯାହା କରୁଛ, ଅଲ୍ଲାହ୍ ଦେଖୁଛନ୍ତି। (୨୯/୪୫)

اُتۡلُ مَاۤ اُوۡحِیَ اِلَیۡکَ مِنَ الۡکِتٰبِ وَ اَقِمِ الصَّلٰوۃَ ؕ اِنَّ الصَّلٰوۃَ تَنۡہٰی عَنِ الۡفَحۡشَآءِ وَ الۡمُنۡکَرِ ؕ وَ لَذِکۡرُ اللّٰہِ اَکۡبَرُ ؕ وَ اللّٰہُ یَعۡلَمُ مَا تَصۡنَعُوۡنَ ﴿۴۵﴾

**୩୩୯. ସର୍ବୋତ୍ତମ ଶୈଳୀରେ ଆଲୋଚନା କର**

ଗ୍ରନ୍ଥଧାରୀମାନଙ୍କ ସହିତ ଉତ୍ତମ ଶୈଳୀରେ ଆଲୋଚନା କର, ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁମାନେ ଅନ୍ୟାୟୀ, ସେମାନଙ୍କ କଥା ଭିନ୍ନ। କହିଦିଅ ଯେ ଆମେ ଏହାକୁ ବିଶ୍ୱାସ କରୁଛୁ ଯାହା ଆମମାନଙ୍କ ପାଖକୁ ପଠାଯାଇଛି ଏବଂ ତାହାକୁ ମଧ ବିଶ୍ୱାସ କରୁଛୁ, ଯାହା ତୁମମାନଙ୍କ ପାଖକୁ ପଠାଯାଇଥିଲା। ଆମ ଈଶ୍ୱର ଓ ତୁମ ଈଶ୍ୱର ଜଣେ ଏବଂ ଆମେ ତାଙ୍କରିଠାରେ ନିଜକୁ ସମର୍ପଣ କରୁଛୁ। (୨୯/୪୬)

وَ لَا تُجَادِلُوۡۤا اَہۡلَ الۡکِتٰبِ اِلَّا بِالَّتِیۡ ہِیَ اَحۡسَنُ ٭ۖ اِلَّا الَّذِیۡنَ ظَلَمُوۡا مِنۡہُمۡ وَ قُوۡلُوۡۤا اٰمَنَّا بِالَّذِیۡۤ اُنۡزِلَ اِلَیۡنَا وَ اُنۡزِلَ اِلَیۡکُمۡ وَ اِلٰـہُنَا وَ اِلٰـہُکُمۡ وَاحِدٌ وَّ نَحۡنُ لَہٗ مُسۡلِمُوۡنَ ﴿۴۶﴾

**୩୪୦. ମହାମାନ୍ୟ ମୁହମ୍ମଦ ନିରକ୍ଷର ଥିଲେ**

(ହେ ମୁହମ୍ମଦ!) ତୁମ ପ୍ରତି ଏହି ଗ୍ରନ୍ଥ ପ୍ରକଟ ହେବା ପୂର୍ବରୁ ତୁମେ କୌଣସି ଧର୍ମଗ୍ରନ୍ଥ ପଢୁ ନଥିଲ କିମ୍ବା ନିଜ ଡାହାଣ ହାତରେ (କିଛି) ଲେଖୁ ନଥିଲ। ଯଦି ଏପରି ହୋଇଥାଆନ୍ତା, ତେବେ ମିଥ୍ୟାରୋପକାରୀମାନେ ସନ୍ଦେହ କରି ଥାଆନ୍ତେ। (୨୯/୪୮)

وَ مَا كُنْتَ تَتْلُوْا مِنْ قَبْلِهٖ مِنْ كِتٰبٍ وَّ لَا تَخُطُّهٗ بِيَمِيْنِكَ اِذًا لَّارْتَابَ الْمُبْطِلُوْنَ ﴿۴۸﴾

**୩୪୧. କେବଳ ଜଗତକର୍ତ୍ତା ହିଁ ତୁମର ଆରାଧ୍ୟ**

ଯଦି ତୁମେ ସେମାନଙ୍କୁ ପଚାର ଯେ ଧରିତ୍ରୀ ଓ ଆକାଶକୁ କିଏ ଗଢ଼ିଛି ଏବଂ କିଏ ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମ ସେବାରେ ନିୟୋଜିତ କରିଛି, ସେମାନେ ନିଶ୍ଚୟ ଉତ୍ତର ଦେବେ, "ଅଲ୍ଲାହ"। ପୁଣି ସେମାନେ କୁଆଡ଼େ ଓଲଟା ବାଟରେ ଯାଉଛନ୍ତି? ଅଲ୍ଲାହ୍ ନିଜ ଦାସମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ପର୍ଯ୍ୟାପ୍ତ ଆହାର ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି। ଅଲ୍ଲାହ୍ ସବୁକିଛି ଜାଣନ୍ତି। ଯଦି ତୁମେ ସେମାନଙ୍କୁ ପଚାରିବ ଯେ କିଏ ଆକାଶରୁ ଜଳବର୍ଷା କରେ ଏବଂ ତାହା ଦ୍ୱାରା ନିର୍ଜୀବ ଭୂମିକୁ ଜୀବନ୍ତ କରିଦିଏ, ତେବେ ସେମାନେ ନିଶ୍ଚୟ ଉତ୍ତର ଦେବେ, "ଅଲ୍ଲାହ୍"। କହିଦିଅ, "ସକଳ ସ୍ତୁତି ଅଲ୍ଲାହଙ୍କ ପାଇଁ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ବୁଦ୍ଧି ନାହିଁ।" (୨୯/୬୧-୬୩)

وَ لَئِنْ سَاَلْتَهُمْ مَّنْ خَلَقَ السَّمٰوٰتِ وَ الْاَرْضَ وَ سَخَّرَ الشَّمْسَ وَ الْقَمَرَ لَيَقُوْلُنَّ اللّٰهُ ۚ فَاَنّٰى يُؤْفَكُوْنَ ﴿۶۱﴾ اَللّٰهُ يَبْسُطُ الرِّزْقَ لِمَنْ يَّشَآءُ مِنْ عِبَادِهٖ وَ يَقْدِرُ لَهٗ ؕ اِنَّ اللّٰهَ بِكُلِّ شَيْءٍ عَلِيْمٌ ﴿۶۲﴾ وَلَئِنْ سَاَلْتَهُمْ مَّنْ نَّزَّلَ مِنَ السَّمَآءِ مَآءً فَاَحْيَا بِهِ الْاَرْضَ مِنْۢ بَعْدِ مَوْتِهَا لَيَقُوْلُنَّ اللّٰهُ ؕ قُلِ الْحَمْدُ لِلّٰهِ ؕ بَلْ اَكْثَرُهُمْ لَا يَعْقِلُوْنَ ﴿۶۳﴾

**୩୪୨. ପାର୍ଥିବ ଜୀବନ ଏକ ଖେଳତାମସା**

ପାର୍ଥିବ ଜୀବନ କେବଳ ଏକ ଖେଳ-ତାମସା । ପରଲୋକର ଘର ହେଉଛି ପ୍ରକୃତ ଘର। ଆହା! ସେମାନେ ଏହା ଜାଣି ନିଅନ୍ତେ କି! (୨୯/୬୪)

وَ مَا هٰذِهِ الْحَيٰوةُ الدُّنْيَآ اِلَّا لَهْوٌ وَّ لَعِبٌ ؕ وَ اِنَّ الدَّارَ الْاٰخِرَةَ لَهِيَ الْحَيَوَانُ ۘ لَوْ كَانُوْا يَعْلَمُوْنَ ﴿۶۴﴾

**୩୪୩. ଈଶ୍ୱରଙ୍କ ପଥରେ ସଂଘର୍ଷ କଲେ ସେ ମାର୍ଗଦର୍ଶନ କରନ୍ତି**

ଯେଉଁମାନେ ଆମ୍ଭ ମାର୍ଗରେ ସଂଘର୍ଷ କରନ୍ତି, ଆମ୍ଭେ ନିଶ୍ଚୟ ସେମାନଙ୍କୁ ଆମ୍ଭ ମାର୍ଗରେ ପରିଚାଳିତ କରିବୁ। ଅଲ୍ଲାହ ଅବଶ୍ୟ ସଦାଚାରୀ ବ୍ୟକ୍ତିମାନଙ୍କ ସହିତ ଥାଆନ୍ତି। (୨୯/୬୯)

وَ الَّذِيْنَ جَاهَدُوْا فِيْنَا لَنَهْدِيَنَّهُمْ سُبُلَنَا ؕ وَ اِنَّ اللّٰهَ لَمَعَ الْمُحْسِنِيْنَ ﴿۶۹﴾

**୩୪୪. ସଂଜ-ସକାଳେ ତାଙ୍କର ଗୁଣଗାନ କର**

ସୁତରାଂ ଯେତେବେଳେ ସଂଧ୍ୟା ହୁଏ ଏବଂ ଯେତେବେଳେ ସକାଳ ହୁଏ, ତୁମେମାନେ ତାଙ୍କର ମହିମା ଗାନକର। ଧରିତ୍ରୀ ଓ

فَسُبْحٰنَ اللّٰهِ حِيْنَ تُمْسُوْنَ وَ حِيْنَ تُصْبِحُوْنَ ﴿۱۷﴾ وَ لَهُ الْحَمْدُ فِي السَّمٰوٰتِ وَ الْاَرْضِ وَ عَشِيًّا وَّ

حِيْنَ تُظْهِرُوْنَ ﴿١٨﴾

ଆକାଶରେ ତାଙ୍କରି ସ୍ତବ ହୁଏ । ମଧ୍ୟାହ୍ନ ତଥା ଅପରାହ୍ନରେ ମଧ୍ୟ ତାଙ୍କର ଯଶଗାନ କର । (୩୦/୧୭-୧୮)

### ୩୪୫. ସେ ନିର୍ଜୀବ ମଧ୍ୟରୁ ସଜୀବ ଉତ୍ପନ୍ନ କରନ୍ତି

يُخْرِجُ الْحَيَّ مِنَ الْمَيِّتِ وَيُخْرِجُ الْمَيِّتَ مِنَ الْحَيِّ وَ يُحْيِ الْاَرْضَ بَعْدَ مَوْتِهَا ؕ وَكَذٰلِكَ تُخْرَجُوْنَ ﴿١٩﴾

ସେ ନିର୍ଜୀବ ମଧ୍ୟରୁ ସଜୀବ ଏବଂ ସଜୀବ ମଧ୍ୟରୁ ନିର୍ଜୀବ ଉତ୍ପନ୍ନ କରନ୍ତି ଏବଂ ଭୂଇଁ (ଶୁଷ୍କ ହୋଇ) ନିର୍ଜୀବ ହେଲା ପରେ (ବର୍ଷା ଦ୍ୱାରା) ପୁଣି ତାକୁ ଜୀବନ୍ତ କରି ଦିଅନ୍ତି । ଏହିପରି ତୁମମାନଙ୍କୁ ପୁନର୍ଜୀବିତ କରାଯିବ । (୩୦/୧୯)

### ୩୪୬. ତାଙ୍କ ନିଦର୍ଶନ ପ୍ରତି ଧ୍ୟାନ ଦିଅ

وَمِنْ اٰيٰتِهٖۤ اَنْ خَلَقَكُمْ مِّنْ تُرَابٍ ثُمَّ اِذَاۤ اَنْتُمْ بَشَرٌ تَنْتَشِرُوْنَ ﴿٢٠﴾ وَمِنْ اٰيٰتِهٖۤ اَنْ خَلَقَ لَكُمْ مِّنْ اَنْفُسِكُمْ اَزْوَاجًا لِّتَسْكُنُوْۤا اِلَيْهَا وَجَعَلَ بَيْنَكُمْ مَّوَدَّةً وَّ رَحْمَةً ؕ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّتَفَكَّرُوْنَ ﴿٢١﴾ وَمِنْ اٰيٰتِهٖ خَلْقُ السَّمٰوٰتِ وَ الْاَرْضِ وَاخْتِلَافُ اَلْسِنَتِكُمْ وَ اَلْوَانِكُمْ ؕ اِنَّ فِيْ ذٰلِكَ لَاٰيٰتٍ لِّلْعٰلِمِيْنَ ﴿٢٢﴾ وَ مِنْ اٰيٰتِهٖ مَنَامُكُمْ بِالَّيْلِ وَ النَّهَارِ وَ ابْتِغَآؤُكُمْ مِّنْ فَضْلِهٖ ؕ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّسْمَعُوْنَ ﴿٢٣﴾ وَمِنْ اٰيٰتِهٖ يُرِيْكُمُ الْبَرْقَ خَوْفًا وَّطَمَعًا وَّ يُنَزِّلُ مِنَ السَّمَآءِ مَآءً فَيُحْيِ بِهِ الْاَرْضَ بَعْدَ مَوْتِهَا ؕ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّعْقِلُوْنَ ﴿٢٤﴾

ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ସେ ତୁମକୁ ମାଟିରୁ ସୃଷ୍ଟି କଲେ । ପୁଣି ଦେଖୁଦେଖୁ ତୁମେମାନେ ମାନବ ହୋଇ ଧରାପୃଷ୍ଠରେ ବ୍ୟାପିଯାଉଛ । ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ସେ ତୁମମାନଙ୍କ ମଧ୍ୟରୁ ତୁମ ପାଇଁ ପରସ୍ପରର ଯୋଡ଼ି (ଅର୍ଥାତ୍ ପତି-ପତ୍ନୀ) ସୃଷ୍ଟି କଲେ ଯେପରିକି ତୁମେମାନେ ପରସ୍ପର ମଧ୍ୟରେ ଶାନ୍ତି ପାଇବ ଏବଂ ସେ ପରସ୍ପର ପାଇଁ ଦୟା ଓ ପ୍ରେମଭାବ ଜାତ କଲେ । ଏଥିରେ ବିଚାରଶୀଳ ଲୋକମାନଙ୍କ ପାଇଁ ଅନେକ ନିଦର୍ଶନ ଅଛି । ତାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରେ ଅଛି ପୃଥିବୀ ଓ ଅନ୍ତରୀକ୍ଷର ସଂରଚନା ଏବଂ ତୁମମାନଙ୍କ ଭାଷା ଓ ବର୍ଣ୍ଣରେ ଭିନ୍ନତା । ଜ୍ଞାନୀ ଲୋକଙ୍କ ପାଇଁ ଏଥିରେ ବହୁ ନିଦର୍ଶନ ଅଛି । ତାଙ୍କ ନିଦର୍ଶନ ମଧ୍ୟରେ ଅଛି ଦିନ ଓ ରାତିରେ ତୁମମାନଙ୍କର ଶୟନ ଏବଂ ତାଙ୍କ ଅନୁଗ୍ରହର ସନ୍ଧାନ । ଯେଉଁମାନେ (କଥା) ଶୁଣନ୍ତି, ସେମାନଙ୍କ ପାଇଁ ଏଥିରେ ବହୁ ନିଦର୍ଶନ ଅଛି । ତାଙ୍କ ନିଦର୍ଶନ ମଧ୍ୟରେ ଏହା ମଧ୍ୟ ରହିଛି ଯେ ସେ ତୁମ ମନରେ ଭୟ ଓ ଆଶାର ସଂଚାର କରିବା ଲାଗି ତୁମମାନଙ୍କୁ ବିଜୁଳିର ଚମକ ଦେଖାଇଥାଆନ୍ତି ଏବଂ ଆକାଶରୁ ଜଳବର୍ଷା କରି ତାହାଦ୍ୱାରା ଧରିତ୍ରୀକୁ ଏହାର ମୃତ୍ୟୁ ପରେ ଜୀବନ୍ତ କରିଦିଅନ୍ତି । ଏଥିରେ ସେମାନେଙ୍କ ପାଇଁ ଅନେକ ନିଦର୍ଶନ ଅଛି, ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି । (୩୦/୨୦-୨୪)

### ୩୪୭.ମଣିଷର ପ୍ରାକୃତିକ ସ୍ୱଭାବ ହିଁ ଧର୍ମର ଆଧାର

فَاَقِمْ وَجْهَكَ لِلدِّيْنِ حَنِيْفًا ؕ فِطْرَتَ اللّٰهِ الَّتِيْ

ସୁତରାଂ, ଧର୍ମ ପ୍ରତି ସଂପୂର୍ଣ୍ଣ ଏକାଗ୍ର ରହି ଅଲ୍ଲାହଙ୍କର ସେହି ପ୍ରକୃତିର ଅନୁସରଣ କର, ଯେଉଁ ପ୍ରକୃତି ଅନୁସାରେ ସେ

فَطَرَ النَّاسَ عَلَيۡهَا ؕ لَا تَبۡدِيۡلَ لِخَلۡقِ اللّٰهِ ؕ ذٰلِكَ الدِّيۡنُ الۡقَيِّمُ ۙ وَلٰـكِنَّ اَكۡثَرَ النَّاسِ لَا يَعۡلَمُوۡنَ ﴿۳۰﴾

ମନୁଷ୍ୟମାନଙ୍କୁ ଗଢ଼ିଛନ୍ତି । ଅଲ୍ଲାହଙ୍କ ସଂରଚିତ ପ୍ରକୃତି ପରିବର୍ତ୍ତନଶୀଳ ନୁହେଁ । ଏହାହିଁ ସଠିକ୍ ଧର୍ମ, କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । (୩୦/୩୦)

**୩୪୮. ସୁଖ ଓ ଦୁଃଖରେ ସମଭାବ ପୋଷଣ କର**

وَاِذَاۤ اَذَقۡنَا النَّاسَ رَحۡمَةً فَرِحُوۡا بِهَا ؕ وَاِنۡ تُصِبۡهُمۡ سَيِّئَةٌ ۢ بِمَا قَدَّمَتۡ اَيۡدِيۡهِمۡ اِذَا هُمۡ يَقۡنَطُوۡنَ ﴿۳۶﴾

ଯଦି ଆମ୍ଭେ  ଲୋକଙ୍କୁ କୃପାର ସ୍ୱାଦ ଚଖାଇଦେଉ, ସେମାନେ (ଆନନ୍ଦରେ) ଉତଫୁଲ୍ଲିତ ହୋଇଯାଆନ୍ତି, ମାତ୍ର ନିଜ ଅର୍ଜିତ (ପାପ) କର୍ମ ଯୋଗୁଁ ଯଦି ସେମାନଙ୍କ ଉପରେ କୌଣସି ବିପଦ ପଡ଼ିଯାଏ, ତାହେଲେ  ନିରାଶ ହୋଇଯାଆନ୍ତି ।  (୩୦/୩୬)

**୩୪୯. ଆତ୍ମୀୟ ଓ ଅଭାବୀଙ୍କୁ ସେମାନଙ୍କ ପ୍ରାପ୍ୟ ଦିଅ**

فَاٰتِ ذَا الۡقُرۡبٰى حَقَّهٗ وَالۡمِسۡكِيۡنَ وَابۡنَ السَّبِيۡلِ ؕ ذٰلِكَ خَيۡرٌ لِّلَّذِيۡنَ يُرِيۡدُوۡنَ وَجۡهَ اللّٰهِ ۖ وَاُولٰٓـئِكَ هُمُ الۡمُفۡلِحُوۡنَ ﴿۳۸﴾

ଆତ୍ମୀୟମାନଙ୍କୁ ସେମାନଙ୍କ ପ୍ରାପ୍ୟ ଦିଅ ଏବଂ ଦରିଦ୍ର ଓ ପଥଚାରୀଙ୍କୁ ମଧ୍ୟ (ସେମାନଙ୍କର ପ୍ରାପ୍ୟ ଦେଉଥାଅ) । ଯେଉଁମାନେ ଅଲ୍ଲାହଙ୍କ ପ୍ରସନ୍ନତାର ଅଭିଳାଷୀ, ସେମାନଙ୍କ ପକ୍ଷରେ ଏହା ଖୁବ ଭଲ ଏବଂ ସେଇମାନେ ସଫଳ ହେବେ । (୩୦/୩୮)

**୩୫୦. ଅଲ୍ଲାହ୍ ହିଁ ସୃଷ୍ଟି, ସ୍ଥିତି ଓ ବିଲୟର କାରଣ**

اَللّٰهُ الَّذِىۡ خَلَقَكُمۡ ثُمَّ رَزَقَكُمۡ ثُمَّ يُمِيۡتُكُمۡ ثُمَّ يُحۡيِيۡكُمۡ ؕ هَلۡ مِنۡ شُرَكَآئِكُمۡ مَّنۡ يَّفۡعَلُ مِنۡ ذٰلِكُمۡ مِّنۡ شَىۡءٍ ؕ سُبۡحٰنَهٗ وَتَعٰلٰى عَمَّا يُشۡرِكُوۡنَ ﴿۴۰﴾

ଅଲ୍ଲାହ୍ ସେଇ, ଯିଏ ତୁମମାନଙ୍କୁ ସୃଷ୍ଟି କଲେ, ଆହାର ଦେଲେ ପୁଣି ମୃତ୍ୟୁ ଦେବେ ଏବଂ ପୁଣି ତୁମମାନଙ୍କୁ ପୁନର୍ଜୀବିତ କରିବେ । କ'ଣ ତୁମେମାନେ ଗଢ଼ିଥିବା ଈଶ୍ୱରମାନଙ୍କ ମଧ୍ୟରୁ କେହି ଅଛି, ଯିଏ ଏହିପରି କାର୍ଯ୍ୟ କରିଥାଏ ? ସେ ଏମାନଙ୍କର ବହୁଈଶ୍ୱରବାଦର ଅବଧାରଣାରୁ ବହୁ ଉର୍ଦ୍ଧ୍ୱରେ । (୩୦/୪୦)

**୩୫୧. ପାପ ବଢ଼ିଲେ ବିଶୃଂଖଳା ଦେଖାଦିଏ**

ظَهَرَ الۡفَسَادُ فِى الۡبَرِّ وَالۡبَحۡرِ بِمَا كَسَبَتۡ اَيۡدِى النَّاسِ لِيُذِيۡقَهُمۡ بَعۡضَ الَّذِىۡ عَمِلُوۡا لَعَلَّهُمۡ يَرۡجِعُوۡنَ ﴿۴۱﴾

ଲୋକମାନଙ୍କ ଅର୍ଜିତ ଦୁଷ୍କର୍ମ ଯୋଗୁଁ ଜଳ ଓ ସ୍ଥଳରେ ବିଶୃଂଖଳା ଦେଖା ଦେଇଛି । ଏହାଦ୍ୱାରା ସେ ସେମାନଙ୍କୁ କିଛି ଦୁଷ୍କର୍ମର ମଜା ଚଖାଇବେ, ସମ୍ଭବତଃ ସେମାନେ ସେଥିରୁ ବିରତ ରହିବେ ।
(୩୦/୪୧)

**୩୫୨. ସଦ୍‌ବିଶ୍ୱାସୀଙ୍କ ସହାୟତା ଅଲ୍ଲାହଙ୍କର କର୍ତ୍ତବ୍ୟ**

وَكَانَ حَقًّا عَلَيۡنَا نَصۡرُ الۡمُؤۡمِنِيۡنَ ﴿۴۷﴾

(ଜାଣିରଖ) ସଦ୍‌ବିଶ୍ୱାସୀମାନଙ୍କୁ ସାହାଯ୍ୟ କରିବା ଅଲ୍ଲାହଙ୍କର କର୍ତ୍ତବ୍ୟ । (୩୦/୪୭)

### ୩୫୩. ପାହାଡ଼ ସୃଷ୍ଟିର ରହସ୍ୟ

ସେ ଆକାଶକୁ ବିନା ସ୍ତମ୍ଭରେ ସୃଷ୍ଟି କଲେ ଯେପରିକି ତୁମେମାନେ ଦେଖୁଛ ଏବଂ ଭୂପୃଷ୍ଠରେ ପାହାଡ଼ମାନ ଅବସ୍ଥାପିତ କଲେ ଯେପରିକି ଧରିତ୍ରୀ ତୁମମାନଙ୍କୁ ନେଇ ଢ଼ଳି ନଯାଉ ଏବଂ ସେଥିରେ ବିଭିନ୍ନ ପ୍ରକାରର ଜୀବଜନ୍ତୁ (ସୃଷ୍ଟି କରି) ଚାରିଆଡ଼େ ଖେଳାଇ ଦେଲେ । (୩୧/୧୦)

خَلَقَ السَّمٰوٰتِ بِغَيۡرِ عَمَدٍ تَرَوۡنَهَا وَ اَلۡقٰى فِى
الۡاَرۡضِ رَوَاسِىَ اَنۡ تَمِيۡدَ بِكُمۡ وَ بَثَّ فِيۡهَا مِنۡ
كُلِّ دَآبَّةٍ ؕ

### ୩୫୪. ବାପାମାଆଙ୍କର ଅନୁଚିତ ଆଜ୍ଞା ମାନନାହିଁ

ଆମ୍ଭେ ମନୁଷ୍ୟକୁ ତା' ପିତାମାତାଙ୍କ (ଅଧିକାର) ବିଷୟରେ ନିର୍ଦ୍ଦେଶ ଦେଇଛୁ, କାରଣ ତା' ମାଆ କଷ୍ଟ ପରେ କଷ୍ଟ ସହି ତାକୁ ଗର୍ଭରେ ରଖିଲା ଏବଂ ଦୁଇ ବର୍ଷରେ ତା'ର କ୍ଷୀର ଛାଡ଼ିଥାଏ । (ତେଣୁ, ଆମ୍ଭେ ତାକୁ ଆଜ୍ଞା ଦେଲୁ ଯେ) "ଆମ୍ଭ ପ୍ରତି ଏବଂ ନିଜ ପିତାମାତାଙ୍କ ପ୍ରତି କୃତଜ୍ଞ ହୁଅ, (ଶେଷରେ) ଆମ୍ଭରି ପାଖକୁ ତୋତେ ଫେରିବାକୁ ହେବ ।" ମାତ୍ର ଯଦି ସେ ଦୁହେଁ ତୋତେ ମୋ' ଈଶ୍ୱରତ୍ୱରେ ଅନ୍ୟ କାହାରିକୁ ଅଂଶୀଦାର କରିବାକୁ ବାଧ୍ୟ କରନ୍ତି, ଯାହା ବିଷୟରେ ତୋର କୌଣସି ଜ୍ଞାନ ନାହିଁ, ତେବେ ସେମାନଙ୍କ କଥା କଦାପି ମାନ ନା । ଅବଶ୍ୟ ସଂସାର ମଧ୍ୟରେ ସେମାନଙ୍କ ସହିତ ଭଲରୂପେ ନିର୍ବାହ କରୁଥା, କିନ୍ତୁ ପଥ ସେହି ବ୍ୟକ୍ତିର ଅନୁସରଣ କର, ଯିଏ ମୋର ଶରଣ ନେଇଛି । ଏହାପରେ ମୋ'ରି ପାଖକୁ ତୁମେସବୁ ଫେରିବ । ସେତେବେଳେ ତୁମେମାନେ ଯାହା କରୁଥିଲ, ମୁଁ ଜଣାଇ ଦେବି ।

(୩୧/୧୪-୧୫)

وَ وَصَّيۡنَا الۡاِنۡسَانَ بِوَالِدَيۡهِ ۚ حَمَلَتۡهُ اُمُّهٗ
وَهۡنًا عَلٰى وَهۡنٍ وَّ فِصٰلُهٗ فِىۡ عَامَيۡنِ اَنِ اشۡكُرۡ لِىۡ وَ
لِوَالِدَيۡكَ ؕ اِلَىَّ الۡمَصِيۡرُ ﴿۱۴﴾ وَ اِنۡ جَاهَدٰكَ عَلٰٓى
اَنۡ تُشۡرِكَ بِىۡ مَا لَيۡسَ لَكَ بِهٖ عِلۡمٌ ۙ فَلَا
تُطِعۡهُمَا وَ صَاحِبۡهُمَا فِى الدُّنۡيَا مَعۡرُوۡفًا ۫ وَّ
اتَّبِعۡ سَبِيۡلَ مَنۡ اَنَابَ اِلَىَّ ۚ ثُمَّ اِلَىَّ مَرۡجِعُكُمۡ
فَاُنَبِّئُكُمۡ بِمَا كُنۡتُمۡ تَعۡمَلُوۡنَ ﴿۱۵﴾

### ୩୫୫. ପିତାର ପୁତ୍ରକୁ ନୀତି ଉପଦେଶ

(ଲୁକ୍‌ମାନ କହିଲେ) "ହେ ପୁତ୍ର! ଯଦି କୌଣସି କାର୍ଯ୍ୟ ସୋରିଷଦାନା ସଦୃଶ ହୋଇଥାଏ ଏବଂ ତାହା କୌଣସି ପଥର ଭିତରେ ବା ଆକାଶ ବା ଧରିତ୍ରୀରେ (ଲୁଚି) ରହିଥାଏ, ଅଲ୍ଲାହ୍ ବିଚାର ଦିନ ତାହାକୁ ନିଶ୍ଚୟ ଉପସ୍ଥିତ କରିବେ । ଅଲ୍ଲାହ୍ ସୂକ୍ଷ୍ମଦର୍ଶୀ ଓ ସର୍ବଜ୍ଞ । ହେ ପୁତ୍ର! (ନିୟମିତ) ନମାଜ ସଂପାଦନ କର, (ଲୋକଙ୍କୁ) ସତକର୍ମ କରିବାର ଉପଦେଶ ଦେ ଏବଂ ଅସତ୍ କର୍ମ କରିବାରୁ ବାରଣ କର । ଯଦି ତୋ' ଉପରେ କୌଣସି ବିପଦ ପଡ଼େ, ତେବେ ଧୈର୍ଯ୍ୟ ଧର । ଅବଶ୍ୟ ଏହା ଭାରି ସାହସିକତାର

يٰبُنَىَّ اِنَّهَاۤ اِنۡ تَكُ مِثۡقَالَ حَبَّةٍ مِّنۡ خَرۡدَلٍ
فَتَكُنۡ فِىۡ صَخۡرَةٍ اَوۡ فِى السَّمٰوٰتِ اَوۡ فِى الۡاَرۡضِ
يَاۡتِ بِهَا اللّٰهُ ؕ اِنَّ اللّٰهَ لَطِيۡفٌ خَبِيۡرٌ ﴿۱۶﴾ يٰبُنَىَّ
اَقِمِ الصَّلٰوةَ وَ اۡمُرۡ بِالۡمَعۡرُوۡفِ وَ انۡهَ عَنِ
الۡمُنۡكَرِ وَ اصۡبِرۡ عَلٰى مَاۤ اَصَابَكَ ؕ اِنَّ ذٰلِكَ مِنۡ

କାର୍ଯ୍ୟ । ଅହଂକାର କରି ଲୋକମାନଙ୍କ ଠାରୁ ମୁହଁ ଫେରାଇ ନେ ନା କିମ୍ବା ଭୂମି ଉପରେ ଦାମ୍ଭିକତାର ସହିତ ଚାଲ୍ ନା । ଅଲ୍ଲାହ୍ କୌଣସି ଆତ୍ମାଭିମାନୀ ଓ ଆତ୍ମଗର୍ବୀଙ୍କୁ ପସନ୍ଦ କରନ୍ତି ନାହିଁ । (ବାଟରେ) ମଧ୍ୟମ ବେଗରେ ଚାଲ୍ ଏବଂ ଧୀର ସ୍ୱରରେ କଥା କହ । ବାସ୍ତବରେ ସବୁଠୁ କର୍କଶ ସ୍ୱର ଗଧର ।"

(୩୧/୧୬-୧୯)

عَزْمِ الْأُمُوْرِ ﴿١٧﴾ وَلَا تُصَعِّرْ خَدَّكَ لِلنَّاسِ وَلَا
تَمْشِ فِي الْأَرْضِ مَرَحًا ۖ إِنَّ اللّٰهَ لَا يُحِبُّ كُلَّ مُخْتَالٍ
فَخُوْرٍ ﴿١٨﴾ وَاقْصِدْ فِيْ مَشْيِكَ وَاغْضُضْ مِنْ
صَوْتِكَ ۚ إِنَّ أَنْكَرَ الْأَصْوَاتِ لَصَوْتُ الْحَمِيْرِ ﴿١٩﴾

## ୩୫୬. ପୁନର୍ଜୀବିତ କରିବା ଏକ ମାମୁଲି କଥା

ତୁମ ସମସ୍ତଙ୍କୁ ସୃଷ୍ଟି କରିବା ଏବଂ (ମୃତ୍ୟୁ ପରେ) ପୁନର୍ଜୀବିତ କରିବା (ଈଶ୍ୱରଙ୍କ ପକ୍ଷରେ) ଜଣେ ବ୍ୟକ୍ତିଙ୍କୁ ସୃଷ୍ଟି କରିବା ଓ ପୁନର୍ଜୀବିତ କରିବା ସହ ସମାନ । ଅଲ୍ଲାହ୍ ସର୍ବଜ୍ଞ ଓ ସର୍ବଦର୍ଶୀ ।

(୩୧/୨୮)

مَا خَلْقُكُمْ وَلَا بَعْثُكُمْ إِلَّا كَنَفْسٍ وَّاحِدَةٍ ۗ
إِنَّ اللّٰهَ سَمِيْعٌۢ بَصِيْرٌ ﴿٢٨﴾

## ୩୫୭. ସଂସାରର ଆକର୍ଷଣ ତୁମକୁ ବିଭ୍ରାନ୍ତ ନ କରୁ

ହେ ମାନବଗଣ ! (କର୍ତ୍ତବ୍ୟ ବିଷୟରେ) ନିଜ ପରମେଶ୍ୱରଙ୍କୁ ଭୟ କର ଏବଂ ସେହି ଦିନ ପ୍ରତି ଭୟ କର ଯେଉଁଦିନ କୌଣସି ପିତା ତା' ପୁତ୍ରର କାମରେ ଆସବ ନାହିଁ କିମ୍ବା ପୁତ୍ର ତା' ପିତାର କାମରେ ଆସିବ ନାହିଁ । ଜାଣିରଖ, ଅଲ୍ଲାହଙ୍କ ବଚନ ସତ୍ୟ । ଏଣୁ, ସାଂସାରିକ ଜୀବନ ତୁମମାନଙ୍କୁ ବିଭ୍ରାନ୍ତ ନ କରୁ, କିମ୍ବା ପ୍ରବଂଚକ (ଶଇତାନ୍) ତୁମମାନଙ୍କୁ ଅଲ୍ଲାହଙ୍କ ବିଷୟରେ ପ୍ରତାରିତ ନ କରୁ ।

(୩୧/୩୩)

يٰٓأَيُّهَا النَّاسُ اتَّقُوْا رَبَّكُمْ وَاخْشَوْا يَوْمًا لَّا
يَجْزِيْ وَالِدٌ عَنْ وَّلَدِهٖ ۖ وَلَا مَوْلُوْدٌ هُوَ جَازٍ عَنْ
وَّالِدِهٖ شَيْـًٔا ۗ إِنَّ وَعْدَ اللّٰهِ حَقٌّ فَلَا تَغُرَّنَّكُمُ
الْحَيٰوةُ الدُّنْيَا ۥ وَلَا يَغُرَّنَّكُمْ بِاللّٰهِ الْغَرُوْرُ ﴿٣٣﴾

## ୩୫୮. ଅଲ୍ଲାହ୍ ହିଁ ଅଦୃଷ୍ଟ କଥା ଜାଣନ୍ତି

ପ୍ରଳୟର ସମୟ କେବଳ ଅଲ୍ଲାହଙ୍କୁ ହିଁ ଜଣା । ସେ ହିଁ ବର୍ଷା କରନ୍ତି ଏବଂ ଗର୍ଭାଶୟ ମଧ୍ୟରେ କ'ଣ ଥାଏ, ତାହା ଜାଣନ୍ତି । କୌଣସି ବ୍ୟକ୍ତିଙ୍କୁ ଏହା ଜଣାନାହିଁ ଯେ ଆସନ୍ତାକାଲି ସେ କି କାର୍ଯ୍ୟ କରିବ କିମ୍ବା କେହି ଏହା (ମଧ୍ୟ) ଜାଣେନାହିଁ ଯେ ସେ କେଉଁ ମାଟିରେ ମରିବ । ଅଲ୍ଲାହ୍ ହିଁ ସବୁ ଜାଣନ୍ତି ଏବଂ ସବୁ ବିଷୟରେ ଖବର ରଖନ୍ତି । (୩୧/୩୪)

إِنَّ اللّٰهَ عِنْدَهٗ عِلْمُ السَّاعَةِ ۚ وَيُنَزِّلُ الْغَيْثَ ۚ
وَيَعْلَمُ مَا فِي الْأَرْحَامِ ۗ وَمَا تَدْرِيْ نَفْسٌ مَّاذَا
تَكْسِبُ غَدًا ۗ وَمَا تَدْرِيْ نَفْسٌۢ بِأَيِّ أَرْضٍ
تَمُوْتُ ۗ إِنَّ اللّٰهَ عَلِيْمٌ خَبِيْرٌ ﴿٣٤﴾

## ୩୫୯. ଈଶ୍ୱରଦୂତ ଆଦର୍ଶ ପୁରୁଷର ଏକ ନମୁନା

ନିଃସନ୍ଦେହରେ ଈଶ୍ୱରଦୂତଙ୍କ ମଧ୍ୟରେ ତୁମମାନଙ୍କ ପାଇଁ ଉଚ୍ଚକୋଟୀର ଚରିତ୍ରର ଦୃଷ୍ଟାନ୍ତ ରହିଛି, (ଏଭଳି) ପ୍ରତ୍ୟେକ ବ୍ୟକ୍ତି

لَقَدْ كَانَ لَكُمْ فِيْ رَسُوْلِ اللّٰهِ أُسْوَةٌ حَسَنَةٌ
لِّمَنْ كَانَ يَرْجُوا اللّٰهَ وَالْيَوْمَ الْاٰخِرَ وَذَكَرَ اللّٰهَ

كَثِيْرًا ﴿٢١﴾

ପାଇଁ, ଯିଏ ଅଲ୍ଲାହ୍ ଏବଂ ପରଲୋକର ପ୍ରତୀକ୍ଷାରେ ଅଛି ଏବଂ ଅଲ୍ଲାହଙ୍କୁ ନିରନ୍ତର ସ୍ମରଣ କରୁଛି । (୩୩/୨୧)

### ୩୬୦.ନାରୀମାନେ ସୌନ୍ଦର୍ଯ୍ୟର ପ୍ରଦର୍ଶନ ନ କରନ୍ତୁ

وَ قَرْنَ فِيْ بُيُوْتِكُنَّ وَ لَا تَبَرَّجْنَ تَبَرُّجَ
الْجَاهِلِيَّةِ الْاُوْلٰى وَ اَقِمْنَ الصَّلٰوةَ وَ اٰتِيْنَ الزَّكٰوةَ
وَ اَطِعْنَ اللّٰهَ وَ رَسُوْلَهٗ ؕ اِنَّمَا يُرِيْدُ اللّٰهُ لِيُذْهِبَ
عَنْكُمُ الرِّجْسَ اَهْلَ الْبَيْتِ وَ يُطَهِّرَكُمْ
تَطْهِيْرًا ﴿٣٣﴾

ନିଜ ଘରେ ରୁହ ଏବଂ ପୂର୍ବେ ଅଜ୍ଞାନ ଯୁଗରେ ଯେମିତି ହେଉଥିଲା, ସେମିତି ନିଜ ସୌନ୍ଦର୍ଯ୍ୟର ପ୍ରଦର୍ଶନ କରନାହିଁ । (ନିୟମିତ) ନମାଜ ପାଠ କରୁଥାଅ, ଜକାତ୍ ଦେଉଥାଅ ଏବଂ ଅଲ୍ଲାହ ଓ ତାଙ୍କ ବାର୍ତ୍ତାବହଙ୍କ କଥା ମାନି ଚଳୁଥାଅ । ହେ ଈଶ୍ୱରଦୂତଙ୍କ ପରିବାରବର୍ଗ ! ଅଲ୍ଲାହ ତୁମମାନଙ୍କଠାରୁ ସବୁ ପ୍ରକାରର ଅଶୁଦ୍ଧତା ଦୂର କରି ତୁମମାନଙ୍କୁ ସଂପୂର୍ଣ୍ଣ ଭାବରେ ପବିତ୍ର କରିବାକୁ ଚାହାନ୍ତି । (୩୩/୩୩)

### ୩୬୧. ଘରେ ଯାହା କୁରଆନ୍ ପାଠ ହୁଏ, ମନେରଖ

وَ اذْكُرْنَ مَا يُتْلٰى فِيْ بُيُوْتِكُنَّ مِنْ اٰيٰتِ اللّٰهِ وَ
الْحِكْمَةِ ؕ اِنَّ اللّٰهَ كَانَ لَطِيْفًا خَبِيْرًا ﴿٣٤﴾

ତୁମମାନଙ୍କ ଘରେ କୁରଆନର ଯାହା ବାଣୀ ପାଠ ହୁଏ ଏବଂ ତତ୍ତ୍ୱଜ୍ଞାନର ଯାହା ଶିକ୍ଷା ଦିଆଯାଏ, ତାହା ମନେରଖ । ଅଲ୍ଲାହ ସୂକ୍ଷ୍ମଦର୍ଶୀ ଏବଂ ସେ ସବୁ ଖବର ରଖନ୍ତି । (୩୩/୩୪)

### ୩୬୨. ଈଶ୍ୱର ଓ ଈଶ୍ୱରଦୂତଙ୍କ ନିଷ୍ପତ୍ତି ହିଁ ଅନ୍ତିମ

وَ مَا كَانَ لِمُؤْمِنٍ وَّ لَا مُؤْمِنَةٍ اِذَا قَضَى اللّٰهُ وَ
رَسُوْلُهٗۤ اَمْرًا اَنْ يَّكُوْنَ لَهُمُ الْخِيَرَةُ مِنْ اَمْرِهِمْ ؕ وَ مَنْ
يَّعْصِ اللّٰهَ وَ رَسُوْلَهٗ فَقَدْ ضَلَّ ضَلٰلًا مُّبِيْنًا ﴿٣٦﴾

ଯଦି ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହ କୌଣସି ବିଷୟରେ ନିଷ୍ପତ୍ତି କରି ଦିଅନ୍ତି, ତେବେ କୌଣସି ମୁସଲିମ୍ ପୁରୁଷ ବା ନାରୀର ଅଧିକାର ନାହିଁ ଯେ ସେ ନିଜ ଇଚ୍ଛାର ପ୍ରୟୋଗ କରୁ । (ଜାଣିରଖ) ଯିଏ ଅଲ୍ଲାହ୍ ଓ ତାଙ୍କ ଦୂତଙ୍କର ଅବଜ୍ଞା କରେ, ସେ ସ୍ପଷ୍ଟ ରୂପେ ପଥଭ୍ରଷ୍ଟ ହୋଇଯାଏ । (୩୩/୩୬)

### ୩୬୩. ମହାମାନ୍ୟ ମୁହମ୍ମଦ ଅନ୍ତିମ ଈଶ୍ୱରଦୂତ

مَا كَانَ مُحَمَّدٌ اَبَاۤ اَحَدٍ مِّنْ رِّجَالِكُمْ وَ لٰكِنْ
رَّسُوْلَ اللّٰهِ وَ خَاتَمَ النَّبِيّٖنَ ؕ وَ كَانَ اللّٰهُ بِكُلِّ
شَيْءٍ عَلِيْمًا ﴿٤٠﴾

ମୁହମ୍ମଦ ତୁମ ପୁରୁଷମାନଙ୍କ ମଧ୍ୟରୁ କାହାରି ପିତା ନୁହନ୍ତି, ମାତ୍ର ସେ ଅଲ୍ଲାହଙ୍କ ବାର୍ତ୍ତାବହ ତଥା ଅନ୍ତିମ ଈଶ୍ୱରଦୂତ । ଅଲ୍ଲାହ୍ ସବୁ ବିଷୟରେ ଜାଣନ୍ତି । (୩୩/୪୦)

### ୩୬୪. ମହିଳାମାନେ ଓଢ଼ଣା ଦିଅନ୍ତୁ

يٰۤاَيُّهَا النَّبِيُّ قُلْ لِّاَزْوَاجِكَ وَ بَنٰتِكَ وَ نِسَآءِ
الْمُؤْمِنِيْنَ يُدْنِيْنَ عَلَيْهِنَّ مِنْ جَلَابِيْبِهِنَّ ؕ

ହେ ଈଶ୍ୱରଦୂତ ! ନିଜର ପତ୍ନୀ, କନ୍ୟା ଏବଂ (ଅନ୍ୟ) ମୁସଲିମ୍ ନାରୀମାନଙ୍କୁ କହିଦିଅ ଯେ (ବାହାରକୁ ବାହାରିବା ସମୟରେ) ସେମାନେ ନିଜର ଓଢ଼ଣା ଟାଣି ନିଅନ୍ତୁ । ଏହାଦ୍ୱାରା ଖୁବ୍‌ସମ୍ଭବ,

ସେମାନେ (ଭଦ୍ର ମହିଳା ରୂପେ) ଚିହ୍ନିତ ହୋଇ ପାରିବେ ଏବଂ ଅସଦ୍‌ବ୍ୟବହାରରୁ ରକ୍ଷା ପାଇବେ। ଅଲ୍ଲାହ୍ କ୍ଷମାଶୀଳ ଏବଂ ଦୟାବାନ ଅଟନ୍ତି। (୩୩/୫୯)

ذٰلِكَ اَدْنٰۤى اَنْ يُّعْرَفْنَ فَلَا يُؤْذَيْنَ ؕ وَ كَانَ اللّٰهُ

غَفُوْرًا رَّحِيْمًا ﴿۵۹﴾

## ୩୬୫.ଈଶ୍ୱରଙ୍କ ନୀତି ପରିବର୍ତ୍ତନଶୀଳ ନୁହେଁ

ତୁମେ ଅଲ୍ଲାହଙ୍କ ନୀତିରେ (କଦାପି) କୌଣସି ପରିବର୍ତ୍ତନ ଦେଖିବାକୁ ପାଇବ ନାହିଁ। (୩୩/୬୨)

وَ لَنْ تَجِدَ لِسُنَّةِ اللّٰهِ تَبْدِيْلًا ﴿۶۲﴾

## ୩୬୬. ତୁମ ବଡ଼-ବଡ଼ିଆମାନେ ତୁମକୁ ପଥଭ୍ରଷ୍ଟ କରିଦେବେ

ଯେଉଁଦିନ ସେମାନଙ୍କ (ଅର୍ଥାତ୍ ଅପରାଧୀମାନଙ୍କର) ମୁହଁକୁ ନିଆଁରେ ପକାଇ ଓଲଟପାଲଟ କରାଯିବ, ସେଦିନ ସେମାନେ (ଅବଶୋଷ କରି) କହିବେ, "ହାୟ! ଆମେ ଈଶ୍ୱର ଓ ଈଶ୍ୱରଦୂତଙ୍କ କଥା ମାନି ଚଳିଥାଆନ୍ତୁ କି?" ପୁଣି କହିବେ, "ହେ ପ୍ରଭୁ! ଆମେ ଆମ ମୁଖିଆ ଓ ବଡ଼ବଡ଼ିଆମାନଙ୍କ କଥାରେ ଚାଲିଲୁ, ଯାହାଫଳରେ ସେମାନେ ଆମକୁ ସତପଥରୁ ବିଭ୍ରାନ୍ତ କରିଦେଲେ। ହେ ପରମେଶ୍ୱର! ସେମାନଙ୍କୁ ଦ୍ୱିଗୁଣ ଦଣ୍ଡ ଦିଅ ଆଉ ସେମାନଙ୍କୁ ଖୁବ୍ ଧିକ୍କାର କର।" (୩୩/୬୬-୬୮)

يَوْمَ تُقَلَّبُ وُجُوْهُهُمْ فِى النَّارِ يَقُوْلُوْنَ يٰلَيْتَنَاۤ

اَطَعْنَا اللّٰهَ وَ اَطَعْنَا الرَّسُوْلَا ﴿۶۶﴾ وَ قَالُوْا رَبَّنَاۤ

اِنَّاۤ اَطَعْنَا سَادَتَنَا وَ كُبَرَآءَنَا فَاَضَلُّوْنَا

السَّبِيْلَا ﴿۶۷﴾ رَبَّنَاۤ اٰتِهِمْ ضِعْفَيْنِ مِنَ الْعَذَابِ

وَ الْعَنْهُمْ لَعْنًا كَبِيْرًا ﴿۶۸﴾

## ୩୬୭. ସର୍ବଦା ସତ କଥା କୁହ

ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହଙ୍କୁ ଭୟ କର ଏବଂ ସଠିକ୍ କଥା କୁହ। ସେ ତୁମମାନଙ୍କ ଆଚରଣ ସୁଧାରି ଦେବେ ଏବଂ ତୁମମାନଙ୍କର ପାପ କ୍ଷମା କରିଦେବେ। ଯିଏ ଅଲ୍ଲାହ୍ ଓ ତାଙ୍କ ଧର୍ମଦୂତଙ୍କ କଥା ମାନେ, ସେ ଅବଶ୍ୟ ବହୁତ ବଡ଼ ସଫଳତା ଲାଭ କରେ। (୩୩/୭୦-୭୧)

يٰۤاَيُّهَا الَّذِيْنَ اٰمَنُوا اتَّقُوا اللّٰهَ وَ قُوْلُوْا قَوْلًا

سَدِيْدًا ﴿۷۰﴾ يُّصْلِحْ لَكُمْ اَعْمَالَكُمْ وَيَغْفِرْ

لَكُمْ ذُنُوْبَكُمْ ؕ وَمَنْ يُّطِعِ اللّٰهَ وَرَسُوْلَهٗ فَقَدْ

فَازَ فَوْزًا عَظِيْمًا ﴿۷۱﴾

## ୩୬୮.ମହାମାନ୍ୟ ମୁହମ୍ମଦ ମାନବଜାତିର ମାର୍ଗଦର୍ଶକ

(ହେ ମୁହମ୍ମଦ!) ଆମ୍ଭେ ସମଗ୍ର ମାନବସମାଜକୁ (ସ୍ୱର୍ଗର) ସୁସମ୍ବାଦ ଦେବା ପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବା ପାଇଁ ତୁମକୁ ପଠାଇଛୁ, ମାତ୍ର ଅଧିକାଂଶ ମନୁଷ୍ୟ ଏହା ଜାଣନ୍ତି ନାହିଁ। (୩୪/୨୮)

وَمَاۤ اَرْسَلْنٰكَ اِلَّا كَآفَّةً لِّلنَّاسِ بَشِيْرًا وَّ نَذِيْرًا

وَّلٰكِنَّ اَكْثَرَ النَّاسِ لَا يَعْلَمُوْنَ ﴿۲۸﴾

**୩୬୯. ଅଲ୍ଲାହ୍ ଅପ୍ରତିରୋଧ**

ଯଦି ଅଲ୍ଲାହ୍ ଲୋକମାନଙ୍କ ପାଇଁ ନିଜ କୃପାର ଦ୍ୱାର ଖୋଲି ଦିଅନ୍ତି, କେହି ତାହାକୁ ବନ୍ଦ କରିପାରିବ ନାହିଁ, ଆଉ ଯଦି ସେ ତାକୁ ବନ୍ଦ କରି ଦିଅନ୍ତି, ତେବେ ଆଉ କେହି ତାକୁ ଖୋଲି ପାରିବନାହିଁ । ସେ ସର୍ବଶକ୍ତିମାନ ଏବଂ ତତ୍ତ୍ୱଜ୍ଞ । (୩୫/୨)

مَا يَفْتَحِ اللّٰهُ لِلنَّاسِ مِنْ رَّحْمَةٍ فَلَا مُمْسِكَ
لَهَا ۚ وَمَا يُمْسِكْ ۙ فَلَا مُرْسِلَ لَهٗ مِنْۢ بَعْدِهٖ ۗ وَهُوَ
الْعَزِيْزُ الْحَكِيْمُ ۝٢

**୩୭୦. ପ୍ରତ୍ୟେକ ସଂପ୍ରଦାୟ ପାଇଁ ଈଶ୍ୱରଦୂତ ଆସିଛନ୍ତି**

ଆମ୍ଭେ ତୁମକୁ (ସ୍ୱର୍ଗର) ସୁସମାଚାର ଦେବା ପାଇଁ ଏବଂ (ନର୍କ ସଂପର୍କରେ) ସାବଧାନ କରିବା ପାଇଁ ସଦ୍‌ବାର୍ତ୍ତା ଦେଇ ପଠାଇଛୁ । ଏଭଳି କୌଣସି ସଂପ୍ରଦାୟ ନାହିଁ, ଯାହା ନିକଟକୁ ଜଣେ ସଚେତକ ଆସି ନାହାନ୍ତି । (୩୫/୨୪)

اِنَّآ اَرْسَلْنٰكَ بِالْحَقِّ بَشِيْرًا وَّنَذِيْرًا ۗ وَاِنْ مِّنْ
اُمَّةٍ اِلَّا خَلَا فِيْهَا نَذِيْرٌ ۝٢٤

**୩୭୧. ନିୟମିତ କୁରଆନପାଠ କରୁଥାଅ**

ଯେଉଁମାନେ (ନିୟମିତ) ଅଲ୍ଲାହଙ୍କ ଗ୍ରନ୍ଥ (କୁରଆନ) ପାଠ କରନ୍ତି, ନମାଜ ସମ୍ପାଦନ କରନ୍ତି ଏବଂ ଯାହାକିଛି ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ ପ୍ରକାଶ୍ୟରେ ଏବଂ ଗୋପନରେ ଖର୍ଚ୍ଚ କରନ୍ତି, ସେମାନେ ଏଭଳି ଏକ ବ୍ୟବସାୟର ଆଶାୟୀ, ଯେଉଁଥିରେ ଆଦୌ କ୍ଷତି ନାହିଁ । (୩୫/୨୯)

اِنَّ الَّذِيْنَ يَتْلُوْنَ كِتٰبَ اللّٰهِ وَاَقَامُوا الصَّلٰوةَ وَ
اَنْفَقُوْا مِمَّا رَزَقْنٰهُمْ سِرًّا وَّ عَلَانِيَةً يَّرْجُوْنَ
تِجَارَةً لَّنْ تَبُوْرَ ۝٢٩

**୩୭୨. ବିଚାର ପାଇଁ ତୁମକୁ ଯଥେଷ୍ଟ ସମୟ ମିଳିଛି**

ଅଧର୍ମୀମାନେ ନର୍କ ମଧ୍ୟରେ ଚିତ୍କାର କରିବେ, "ହେ ପ୍ରଭୁ ! ଆମକୁ ଏଠାରୁ ବାହାର କର । ଆମେ ପୂର୍ବରୁ ଯେଭଳି (କୁକର୍ମ) କରୁଥିଲୁ, ସେଗୁଡ଼ିକୁ ଛାଡ଼ିଦେଇ ଏବେ ଭଲ କର୍ମ କରିବୁ ।" ଆମ୍ଭେ ଉତ୍ତର ଦେବୁ, "କ'ଣ ଆମ୍ଭେ ତୁମମାନଙ୍କୁ ଯଥେଷ୍ଟ ଆୟୁଷ ଦେଇ ନଥିଲୁ ଯେ ତାହା ମଧ୍ୟରେ ଯିଏ ବୁଝିବାକୁ ଚେଷ୍ଟା କରିଥାଆନ୍ତା, ସେ ବୁଝି ପାରିଥାଆନ୍ତା ? ତୁମମାନଙ୍କ ପାଖକୁ ସଚେତକ (ଈଶ୍ୱରଦୂତ) ମଧ୍ୟ ଆସିଥିଲେ । ଏବେ ମଜା ଚାଖ । ଦୁରାଚାରୀମାନଙ୍କର ସାହାଯ୍ୟକାରୀ କେହି ନାହାନ୍ତି ।" (୩୫/୩୭)

وَهُمْ يَصْطَرِخُوْنَ فِيْهَا ۚ رَبَّنَآ اَخْرِجْنَا نَعْمَلْ
صَالِحًا غَيْرَ الَّذِيْ كُنَّا نَعْمَلُ ۗ اَوَلَمْ نُعَمِّرْكُمْ مَّا
يَتَذَكَّرُ فِيْهِ مَنْ تَذَكَّرَ وَجَاۤءَكُمُ النَّذِيْرُ ۗ
فَذُوْقُوْا فَمَا لِلظّٰلِمِيْنَ مِنْ نَّصِيْرٍ ۝٣٧

**୩୭୩.ଦିବ୍ୟଗ୍ରନ୍ଥ ବହୁଈଶ୍ୱରବାଦର ଶିକ୍ଷା ଦିଅନ୍ତି ନାହିଁ**

ସେମାନଙ୍କୁ କୁହ, "କ'ଣ ତୁମେମାନେ ନିଜର ସେହି ମିଥ୍ୟା ଈଶ୍ୱରମାନଙ୍କ ବିଷୟରେ କେବେ ବିଚାର କରିଛ, ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଡ଼ାକ ? ମୋତେ ଟିକିଏ

قُلْ اَرَءَيْتُمْ شُرَكَاۤءَكُمُ الَّذِيْنَ تَدْعُوْنَ مِنْ دُوْنِ
اللّٰهِ ۗ اَرُوْنِيْ مَاذَا خَلَقُوْا مِنَ الْاَرْضِ اَمْ لَهُمْ

ଦେଖାଅ ଯେ ସେମାନେ ପୃଥିବୀରେ କ'ଣ ସୃଷ୍ଟି କରିଛନ୍ତି, ଅଥବା ଅନ୍ତରୀକ୍ଷର ନିର୍ମାଣରେ ସେମାନଙ୍କର କିପ୍ରକାର ଭାଗ ଅଛି? ଅଥବା କ'ଣ ଆମ୍ଭେ ସେମାନଙ୍କୁ କୌଣସି ଗ୍ରନ୍ଥ ଦେଇଛୁ, ଯେଉଁଥିରେ ସେମାନଙ୍କ ସପକ୍ଷରେ କୌଣସି ସ୍ପଷ୍ଟ ପ୍ରମାଣ ଅଛି ?" ଆଦୌ ନୁହେଁ। ବରଂ ଦୁରାଚାରୀମାନେ କେବଳ ପରସ୍ପରକୁ ପ୍ରତାରିତ କରୁଛନ୍ତି । (୩୫/୪୦)

شِرْكٌ فِي السَّمٰوٰتِ ۚ اَمْ اٰتَيْنٰهُمْ كِتٰبًا فَهُمْ عَلٰى
بَيِّنَتٍ مِّنْهُ ۚ بَلْ اِنْ يَّعِدُ الظّٰلِمُوْنَ بَعْضُهُمْ
بَعْضًا اِلَّا غُرُوْرًا ﴿٤٠﴾

## ୩୭୪. ଈଶ୍ୱର ତୁରନ୍ତ ଦୋଷ ଧରନ୍ତି ନାହିଁ

ଯଦି ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କ କୁକର୍ମ ଯୋଗୁଁ ତୁରନ୍ତ ଶାସ୍ତି ଦିଅନ୍ତେ, ତେବେ ଧରାପୃଷ୍ଠରେ ଗୋଟିଏ ହେଲେ ଜୀବକୁ ଜୀବିତ ଛାଡ଼ନ୍ତେ ନାହିଁ। ମାତ୍ର ସେ ସେମାନଙ୍କୁ ଏକ ନିର୍ଦ୍ଧାରିତ ଅବଧି ପର୍ଯ୍ୟନ୍ତ ଅବସର ଦିଅନ୍ତି । ପୁଣି ଯେତେବେଳେ ସେମାନଙ୍କର ଏହି ସମୟ ପୂରଣ ହୋଇଯିବ, ଅଲ୍ଲାହ୍ ନିଜ ଭକ୍ତମାନଙ୍କୁ ସ୍ୱୟଂ ଦେଖିନେବେ । (୩୫/୪୫)

وَلَوْ يُؤَاخِذُ اللّٰهُ النَّاسَ بِمَا كَسَبُوْا مَا تَرَكَ
عَلٰى ظَهْرِهَا مِنْ دَآبَّةٍ وَّلٰكِنْ يُّؤَخِّرُهُمْ اِلٰٓى اَجَلٍ
مُّسَمًّى ۚ فَاِذَا جَآءَ اَجَلُهُمْ فَاِنَّ اللّٰهَ كَانَ بِعِبَادِهٖ
بَصِيْرًا ﴿٤٥﴾

## ୩୭୫. ପ୍ରତ୍ୟକ୍ଷ ଓ ପରୋକ୍ଷ କର୍ମର ରେକର୍ଡ଼ ରହେ

ଆମ୍ଭେ ମୃତମାନଙ୍କୁ ନିଶ୍ଚୟ ଜୀବିତ କରିବୁ । ଯେଉଁ କର୍ମଗୁଡ଼ିକୁ ସେମାନେ (ଭବିଷ୍ୟତ ପାଇଁ ପ୍ରତ୍ୟକ୍ଷ ରୂପେ) କଲେ ଏବଂ ଯେଉଁ କର୍ମଗୁଡ଼ିକର ପ୍ରଭାବ ପଛରେ ଛାଡ଼ି ଆସିଲେ, ଆମ୍ଭେ ସବୁଗୁଡ଼ିକୁ ସ୍ପଷ୍ଟ ଗ୍ରନ୍ଥରେ ଲିପିବଦ୍ଧ କରୁଛୁ । (୩୬/ ୧୨)

اِنَّا نَحْنُ نُحْيِ الْمَوْتٰى وَنَكْتُبُ مَا قَدَّمُوْا وَاٰثَارَهُمْ ۛؕ
وَكُلَّ شَيْءٍ اَحْصَيْنٰهُ فِيْٓ اِمَامٍ مُّبِيْنٍ ﴿١٢﴾

## ୩୭୬. ଜୀବଜଡ଼ର ଯୁଗଳ ସୃଷ୍ଟି

ପରମ ପବିତ୍ର ସେଇ ସତ୍ତା ଯିଏ ଧରିତ୍ରୀରୁ ଜାତ ସମସ୍ତ ବସ୍ତୁକୁ ଯୋଡ଼ି ରୂପେ ସୃଷ୍ଟି କଲେ, ସେମାନଙ୍କୁ, ତଥା ସେହି ବସ୍ତୁଗୁଡ଼ିକୁ ମଧ୍ୟ, ଯାହାକୁ ସେମାନେ ଜାଣି ନାହାନ୍ତି । (୩୬/୩୬)

سُبْحٰنَ الَّذِيْ خَلَقَ الْاَزْوَاجَ كُلَّهَا مِمَّا تُنْۢبِتُ
الْاَرْضُ وَمِنْ اَنْفُسِهِمْ وَمِمَّا لَا يَعْلَمُوْنَ ﴿٣٦﴾

## ୩୭୭. ସୂର୍ଯ୍ୟଚନ୍ଦ୍ର ନିଜନିଜ କକ୍ଷପଥରେ ବୁଲୁଛନ୍ତି

ସୂର୍ଯ୍ୟ ତା'ପାଇଁ ନିର୍ଦ୍ଧାରିତ ହୋଇଥିବା ମାର୍ଗରେ ବୁଲୁଛି । ଏହା ସର୍ବଶକ୍ତିମାନ ଓ ସର୍ବଜ୍ଞ ସତ୍ତାଙ୍କ ଦ୍ୱାରା ନିରୂପିତ ନିୟମ । ଚନ୍ଦ୍ର ପାଇଁ ମଧ୍ୟ ଆମ୍ଭେ ବିଭିନ୍ନ ପର୍ଯ୍ୟାୟ ନିର୍ଦ୍ଧାରଣ କରିଛୁ, ଯାହାଫଳରେ ଏହା (କ୍ରମାଗତ ଭାବରେ ହ୍ରାସ ପାଇ) ଖଜୁରୀଗଛର ଶୁଖିଲା ଡ଼ାଳ ପରି ହୋଇଯାଏ । ସୂର୍ଯ୍ୟର ସାଧ୍ୟ ନାହିଁ ଯେ ଚନ୍ଦ୍ରକୁ ଯାଇ ଧରି ପକାଇବ, କିମ୍ବା ରାତି ଦିନକୁ ଅତିକ୍ରମ କରିପାରିବ । ପ୍ରତ୍ୟେକ

وَالشَّمْسُ تَجْرِيْ لِمُسْتَقَرٍّ لَّهَا ؕ ذٰلِكَ تَقْدِيْرُ
الْعَزِيْزِ الْعَلِيْمِ ﴿٣٨﴾ وَالْقَمَرَ قَدَّرْنٰهُ مَنَازِلَ حَتّٰى
عَادَ كَالْعُرْجُوْنِ الْقَدِيْمِ ﴿٣٩﴾ لَا الشَّمْسُ يَنْۢبَغِيْ
لَهَآ اَنْ تُدْرِكَ الْقَمَرَ وَلَا الَّيْلُ سَابِقُ النَّهَارِ ؕ

(ନିଜ ନିଜର) କକ୍ଷପଥରେ ଭାସି ବୁଲୁଛନ୍ତି । (୩୬/୩୮-୪୦)

وَكُلٌّ فِيْ فَلَكٍ يَّسْبَحُوْنَ ﴿٤٠﴾

## ୩୭୮. କୁରଆନ ପ୍ରତ୍ୟେକ ଜୀବିତ ବ୍ୟକ୍ତିକୁ ସାବଧାନ କରୁ

ଆମ୍ଭେ ତାଙ୍କୁ (ମହାମାନ୍ୟ ମୁହମ୍ମଦଙ୍କୁ) କବିତା ଶିଖାଇ ନାହୁଁ କିମ୍ବା ଏହା ତାଙ୍କ ପକ୍ଷରେ ଶୋଭନୀୟ (ମଧ୍ୟ) ନୁହେଁ । ଏହି କୁରଆନ ଏକ ଉପଦେଶ – ଏକ ସ୍ପଷ୍ଟ ପଠନୀୟ ଗ୍ରନ୍ଥ । (ଏହାର) ଉଦ୍ଦେଶ୍ୟ ହେଉଛି ଯେ ଏହା (ଧରାପୃଷ୍ଠର) ପ୍ରତ୍ୟେକ ଜୀବିତ ବ୍ୟକ୍ତିକୁ ସାବଧାନ କରିଦେଉ ଏବଂ ସତ୍ୟକୁ ମାନୁ ନଥିବା ଲୋକମାନଙ୍କ ପାଇଁ ଶାସ୍ତିର ଯଥାର୍ଥତା ସିଦ୍ଧ ହୋଇଯାଉ । (୩୬/୬୯-୭୦)

وَمَا عَلَّمْنٰهُ الشِّعْرَ وَمَا يَنْۢبَغِيْ لَهٗ ؕ اِنْ هُوَ اِلَّا
ذِكْرٌ وَّقُرْاٰنٌ مُّبِيْنٌ ﴿٦٩﴾ لِّيُنْذِرَ مَنْ كَانَ حَيًّا
وَّيَحِقَّ الْقَوْلُ عَلَى الْكٰفِرِيْنَ ﴿٧٠﴾

## ୩୭୯. କ'ଣ ଈଶ୍ୱର ପୁନର୍ଜୀବିତ କରିବାକୁ ଅକ୍ଷମ ?

କ'ଣ ମାନବକୁ ଏହା ଜଣାନାହିଁ ଯେ ଆମ୍ଭେ ତାକୁ ଏକ (ତୁଚ୍ଛ) ଶୁକ୍ରବିନ୍ଦୁରୁ ସୃଷ୍ଟି କରିଛୁ ? ତା'ପରେ ସେ ଖୋଲାଖୋଲି ଭାବରେ ଝଗଡ଼ା କରିବାକୁ ଲାଗିଲା । ସେ ଆମ୍ଭପାଇଁ ଉପମା ଗଢ଼ିଲା ଆଉ ନିଜର ଜନ୍ମକୁ ଭୁଲିଗଲା ଏବଂ କହିଲା, "ହାଡ଼ଗୁଡ଼ିକ ପଚିସଢ଼ି ନଷ୍ଟ ହୋଇଗଲା ପରେ ପୁଣି କିଏ ତାକୁ ଜୀବିତ କରି ପାରିବ ?" (ହେ ଈଶ୍ୱରଦୂତ !) କହିଦିଅ, "ସେଇ ଜୀବିତ କରିବେ ଯିଏ ତାକୁ ପ୍ରଥମଥର ସୃଷ୍ଟି କରିଥିଲେ ଏବଂ ସେ ସବୁ ପ୍ରକାରର ସୃଷ୍ଟି କରିବା ଜାଣନ୍ତି ।" ସେଇ, ଯିଏ ତୁମମାନଙ୍କ ପାଇଁ ସବୁଜ ବୃକ୍ଷରୁ ଅଗ୍ନି ସୃଷ୍ଟି କରିଦେଲେ, ଯେଉଁଥିରୁ ତୁମେମାନେ ଅଗ୍ନି ସଂଗ୍ରହ କରିଥାଅ । ଯିଏ ପୃଥିବୀ ଓ ଅନ୍ତରୀକ୍ଷ ସୃଷ୍ଟି କଲେ, କ'ଣ ସେ ତୁମମାନଙ୍କ ପରି (ସାମାନ୍ୟ) ମାନବକୁ ସୃଷ୍ଟି କରିବାକୁ ସକ୍ଷମ ନୁହନ୍ତି ? ଅବଶ୍ୟ ସକ୍ଷମ । ସେ ମହାନ ସ୍ରଷ୍ଟା – ମହାନ ଜ୍ଞାନୀ । ଯେତେବେଳେ ସେ କିଛି ଇଚ୍ଛା କରନ୍ତି, ତା'ବିଷୟରେ କେବଳ ଏତିକି କହନ୍ତି, "ହୋଇ ଯା" ଏବଂ ତାହା ହୋଇଯାଏ । ପରମ ପବିତ୍ର ସେହି ସତ୍ତା, ଯାହାଙ୍କ ହାତରେ ରହିଛି ସକଳ କ୍ଷମତା । ତୁମେ ସମସ୍ତେ (ଦିନେ) ତାଙ୍କରି ନିକଟକୁ ଫେରିବ । (୩୬/୭୭-୮୩)

اَوَلَمْ يَرَ الْاِنْسَانُ اَنَّا خَلَقْنٰهُ مِنْ نُّطْفَةٍ فَاِذَا
هُوَ خَصِيْمٌ مُّبِيْنٌ ﴿٧٧﴾ وَضَرَبَ لَنَا مَثَلًا وَّنَسِيَ
خَلْقَهٗ ؕ قَالَ مَنْ يُّحْيِ الْعِظَامَ وَهِيَ رَمِيْمٌ ﴿٧٨﴾
قُلْ يُحْيِيْهَا الَّذِيْۤ اَنْشَاَهَاۤ اَوَّلَ مَرَّةٍ ؕ وَهُوَ بِكُلِّ
خَلْقٍ عَلِيْمُ ﴿٧٩﴾ الَّذِيْ جَعَلَ لَكُمْ مِّنَ الشَّجَرِ
الْاَخْضَرِ نَارًا فَاِذَاۤ اَنْتُمْ مِّنْهُ تُوْقِدُوْنَ ﴿٨٠﴾
اَوَلَيْسَ الَّذِيْ خَلَقَ السَّمٰوٰتِ وَالْاَرْضَ بِقٰدِرٍ عَلٰۤى
اَنْ يَّخْلُقَ مِثْلَهُمْ ؕ بَلٰى ۗ وَهُوَ الْخَلّٰقُ الْعَلِيْمُ ﴿٨١﴾ اِنَّمَاۤ
اَمْرُهٗۤ اِذَاۤ اَرَادَ شَيْـًٔا اَنْ يَّقُوْلَ لَهٗ كُنْ
فَيَكُوْنُ ﴿٨٢﴾ فَسُبْحٰنَ الَّذِيْ بِيَدِهٖ مَلَكُوْتُ كُلِّ
شَيْءٍ وَّاِلَيْهِ تُرْجَعُوْنَ ﴿٨٣﴾

### ୩୮୦. ମାନବ ସୃଷ୍ଟି ଏକ ମାମୁଲି କାର୍ଯ୍ୟ

فَاسْتَفْتِهِمْ أَهُمْ أَشَدُّ خَلْقًا أَمْ مَّنْ خَلَقْنَا ۚ إِنَّا
خَلَقْنَٰهُم مِّن طِينٍ لَّازِبٍ ﴿١١﴾

ସେମାନଙ୍କୁ ଟିକିଏ ପଚାର ଯେ ସେମାନଙ୍କୁ (ପୁନର୍ବାର) ସୃଷ୍ଟି କରିବା ବଡ଼ କଥା କିମ୍ବା ଆମ୍ଭେ ଯାହା (ବିଶ୍ୱବ୍ରହ୍ମାଣ୍ଡରେ) ସୃଷ୍ଟି କରିଛୁ (ସେଗୁଡ଼ିକର ସୃଷ୍ଟି)? ଆମ୍ଭେ ତ ସେମାନଙ୍କୁ ଚିକିଟା ମାଟିରୁ ସୃଷ୍ଟି କରିଛୁ! (୩୭/୧୧)

### ୩୮୧. ଏ ସୃଷ୍ଟି ନିରର୍ଥକ ନୁହେଁ

وَمَا خَلَقْنَا السَّمَآءَ وَالْأَرْضَ وَمَا بَيْنَهُمَا
بَاطِلًا ۚ ذَٰلِكَ ظَنُّ الَّذِينَ كَفَرُوا ۚ فَوَيْلٌ لِّلَّذِينَ
كَفَرُوا مِنَ النَّارِ ﴿٢٧﴾

ଧରିତ୍ରୀ ଓ ଅନ୍ତରୀକ୍ଷ ଏବଂ ତା'ମଧ୍ୟରେ ଯାହାସବୁ ଅଛି, ଆମ୍ଭେ ସେଗୁଡ଼ିକୁ ନିରର୍ଥକ ସୃଷ୍ଟି କରିନାହୁଁ। ଏହା ତ ସେମାନଙ୍କର ଅନୁମାନ ଯେଉଁମାନେ (ସତ୍ୟକୁ) ପ୍ରତ୍ୟାଖ୍ୟାନ କଲେ। ଏଭଳି ଅଧର୍ମୀମାନଙ୍କୁ ନର୍କଦଣ୍ଡ ହେବ। (୩୮/୨୭)

### ୩୮୨. କ'ଣ ସଦାଚାରୀ ଓ ଦୁରାଚାରୀ ସମାନ?

أَمْ نَجْعَلُ الَّذِينَ آمَنُوا وَعَمِلُوا الصَّٰلِحَٰتِ
كَالْمُفْسِدِينَ فِي الْأَرْضِ أَمْ نَجْعَلُ الْمُتَّقِينَ
كَالْفُجَّارِ ﴿٢٨﴾

ଯେଉଁମାନେ ବିଶ୍ୱାସ ରଖିଲେ ଏବଂ ସତକର୍ମ କଲେ, କ'ଣ ଆମ୍ଭେ ସେମାନଙ୍କୁ ଏଭଳି ଲୋକଙ୍କ ସହ ସମାନ କରିଦେବୁ, ଯେଉଁମାନେ ଧରାପୃଷ୍ଠରେ ବିଶୃଂଖଳା ସୃଷ୍ଟି କରନ୍ତି? ଅଥବା କ'ଣ ଆମ୍ଭେ ସଦାଚାରୀମାନଙ୍କୁ ଦୁରାଚାରୀମାନଙ୍କ ସହ ସମାନ କରିଦେବୁ? (୩୮/୨୮)

### ୩୮୩. କୁରଆନର ବାଣୀ ଉପରେ ବିଚାର କର

كِتَٰبٌ أَنزَلْنَٰهُ إِلَيْكَ مُبَٰرَكٌ لِّيَدَّبَّرُوا آيَٰتِهِ وَ
لِيَتَذَكَّرَ أُولُوا الْأَلْبَٰبِ ﴿٢٩﴾

(ହେ ଈଶ୍ୱରଦୂତ!) ଏହି ଗ୍ରନ୍ଥଟି ଏକ ମଂଗଳକାରୀ ଗ୍ରନ୍ଥ ଯାହାକୁ ଆମ୍ଭେ ତୁମ ପ୍ରତି (ଏହି ଉଦ୍ଦେଶ୍ୟରେ) ପ୍ରକଟ କରିଛୁ ଯେ ଲୋକେ ଏହାର ବାଣୀଗୁଡ଼ିକରେ ଭଲରୂପେ ବିଚାର କରନ୍ତୁ ଏବଂ ବୁଦ୍ଧିମାନମାନେ ଏଥିରୁ ଶିକ୍ଷାଲାଭ କରନ୍ତୁ। (୩୮/୨୯)

### ୩୮୪. ଉପାସନା କେବଳ ସ୍ରଷ୍ଟାଙ୍କର ଅଧିକାର

أَلَا لِلَّهِ الدِّينُ الْخَالِصُ ۚ وَالَّذِينَ اتَّخَذُوا مِن دُونِهِ
أَوْلِيَآءَ مَا نَعْبُدُهُمْ إِلَّا لِيُقَرِّبُونَا إِلَى اللَّهِ زُلْفَىٰ
إِنَّ اللَّهَ يَحْكُمُ بَيْنَهُمْ فِي مَا هُمْ فِيهِ يَخْتَلِفُونَ ۗ إِنَّ
اللَّهَ لَا يَهْدِي مَنْ هُوَ كَٰذِبٌ كَفَّارٌ ﴿٣﴾

ମନେରଖ, ବିଶୁଦ୍ଧ ଉପାସନା କେବଳ ଅଲ୍ଲାହଙ୍କର ଅଧିକାର। ଯେଉଁମାନେ ତାଙ୍କୁ ଛାଡ଼ି ଅନ୍ୟମାନଙ୍କୁ ରକ୍ଷକ ମାନିଛନ୍ତି, ସେମାନେ କହନ୍ତି, 'ଆମେ ଏଇଥିପାଇଁ ସେମାନଙ୍କର ପୂଜା-ଅର୍ଚ୍ଚନା କରଛୁ ଯେ ସେମାନେ ଆମକୁ ଅଲ୍ଲାହଙ୍କର ନିକଟତର କରିଦେବେ।' ଯେଉଁ ବିଷୟରେ ଏମାନେ ମତଭେଦ କରୁଛନ୍ତି, ଅଲ୍ଲାହ୍ ନିଶ୍ଚୟ ତାହାର ନିଷ୍ପତ୍ତି କରିଦେବେ। ଅଲ୍ଲାହ୍ କୌଣସି ନାସ୍ତିକ ଓ ମିଥ୍ୟାବାଦୀର ପଥପ୍ରଦର୍ଶନ କରନ୍ତି ନାହିଁ। (୩୯/୩)

### ୩୮୫. କୁରଆନ ଏକ ଅନୁପମ ଗ୍ରନ୍ଥ

اَللّٰهُ نَزَّلَ اَحْسَنَ الْحَدِيْثِ كِتٰبًا مُّتَشَابِهًا مَّثَانِيَ ۖ تَقْشَعِرُّ مِنْهُ جُلُوْدُ الَّذِيْنَ يَخْشَوْنَ رَبَّهُمْ ۚ ثُمَّ تَلِيْنُ جُلُوْدُهُمْ وَ قُلُوْبُهُمْ اِلٰى ذِكْرِ اللّٰهِ ۗ ذٰلِكَ هُدَى اللّٰهِ يَهْدِيْ بِهٖ مَنْ يَّشَآءُ ۗ وَ مَنْ يُّضْلِلِ اللّٰهُ فَمَا لَهٗ مِنْ هَادٍ ﴿٢٣﴾

ଅଲ୍ଲାହ୍ (କୁରଆନ ରୂପରେ) ଅତି ସୁନ୍ଦର ବାଣୀ ପଠାଇଛନ୍ତି । ଏହା ଏପରି ଏକ ଗ୍ରନ୍ଥ, ଯାହାର ବାଣୀଗୁଡ଼ିକ ପରସ୍ପର ସଦୃଶ ଏବଂ ସେଗୁଡ଼ିକର ବାରମ୍ବାର ପୁନରାବୃତ୍ତି କରାଯାଇଛି । ଯେଉଁମାନେ ନିଜ ପ୍ରଭୁଙ୍କୁ ଭୟ କରନ୍ତି, (ଏହା ଶୁଣିଲେ) ସେମାନଙ୍କର ଲୋମ ଟାଙ୍କୁରି ଉଠେ । ପୁଣି ସେମାନେ ମନପ୍ରାଣ ଦେଇ ବିନୀତ ଭାବରେ ଅଲ୍ଲାହଙ୍କୁ ସ୍ମରଣ କରନ୍ତି । ଏହା ହେଉଛି ଅଲ୍ଲାହଙ୍କର ପଥପ୍ରଦର୍ଶନକାରୀ (ଗ୍ରନ୍ଥ) । ଏହାଦ୍ୱାରା ସେ ଯାହାକୁ ଚାହାନ୍ତି ତାକୁ ସତପଥକୁ ନେଇ ଆସନ୍ତି । ଯାହାକୁ ସେ ପଥଭ୍ରଷ୍ଟ କରନ୍ତି, ତା'ର କେହି ମାର୍ଗଦର୍ଶକ ନାହାନ୍ତି । (୩୯/୨୩)

### ୩୮୬. କୁରଆନରେ ବିଭିନ୍ନ ଉଦାହରଣ ଦିଆଯାଇଛି

وَ لَقَدْ ضَرَبْنَا لِلنَّاسِ فِيْ هٰذَا الْقُرْاٰنِ مِنْ كُلِّ مَثَلٍ لَّعَلَّهُمْ يَتَذَكَّرُوْنَ ﴿٢٧﴾

ଏହି କୁରଆନରେ ଲୋକମାନଙ୍କର (ବୁଝିବା) ପାଇଁ ଆମ୍ଭେ ବିଭିନ୍ନ ଦୃଷ୍ଟାନ୍ତ ବର୍ଣ୍ଣନା କରିଛୁ, ଯେପରିକି ସେମାନେ ଶିକ୍ଷାଲାଭ କରିବେ । (୩୯/୨୭)

### ୩୮୭. କୁରଆନ ଏକ ସରଳ ଗ୍ରନ୍ଥ

قُرْاٰنًا عَرَبِيًّا غَيْرَ ذِيْ عِوَجٍ لَّعَلَّهُمْ يَتَّقُوْنَ ﴿٢٨﴾

ଏହି କୁରଆନଟି ଆରବୀ ଭାଷାର (ଗ୍ରନ୍ଥ), ଯେଉଁଥିରେ କୌଣସି ପ୍ରକାରର ବକ୍ରତା ନାହିଁ, ଯେପରିକି ଲୋକେ (ଏହାର ଉପଦେଶ ମାନି) ସଦାଚାରୀ ହୁଅନ୍ତୁ । (୩୯/୨୮)

### ୩୮୮. ଜଣେ ମାଲିକର ଦାସ ହେବା ଭଲ

ضَرَبَ اللّٰهُ مَثَلًا رَّجُلًا فِيْهِ شُرَكَآءُ مُتَشٰكِسُوْنَ وَ رَجُلًا سَلَمًا لِّرَجُلٍ ۗ هَلْ يَسْتَوِيٰنِ مَثَلًا ۗ اَلْحَمْدُ لِلّٰهِ ۚ بَلْ اَكْثَرُهُمْ لَا يَعْلَمُوْنَ ﴿٢٩﴾

ଅଲ୍ଲାହ୍ ଉଦାହରଣ ଦେଉଛନ୍ତି ଯେ ଜଣେ ବ୍ୟକ୍ତିର ଅନେକ ମାଲିକ ଅଛନ୍ତି, ଯେଉଁମାନଙ୍କର ବିଚାର ପରସ୍ପରଠାରୁ ଭିନ୍ନ ଏବଂ ଆଉ ଜଣେ ବ୍ୟକ୍ତି ପୂରାପୁରି ଜଣେ ମାଲିକର ଦାସ । କ'ଣ ଏହି ଦୁଇଜଣଙ୍କ ଅବସ୍ଥା ଏକାପରି ହୋଇପାରେ ? ସକଳ ସ୍ତୁତି ଅଲ୍ଲାହଙ୍କ ପାଇଁ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । (୩୯/୨୯)

### ୩୮୯. ଅନ୍ୟ କେହି ତୁମର କାର୍ଯ୍ୟସିଦ୍ଧି କରିବାକୁ ସମର୍ଥ ନୁହେଁ

وَ لَئِنْ سَاَلْتَهُمْ مَّنْ خَلَقَ السَّمٰوٰتِ وَ الْاَرْضَ لَيَقُوْلُنَّ اللّٰهُ ۗ قُلْ اَفَرَءَيْتُمْ مَّا تَدْعُوْنَ مِنْ دُوْنِ اللّٰهِ اِنْ اَرَادَنِيَ اللّٰهُ بِضُرٍّ هَلْ هُنَّ كٰشِفٰتُ ضُرِّهٖۤ اَوْ

ଯଦି ତୁମେ ସେମାନଙ୍କୁ ପଚାରିବ ଯେ ଧରିତ୍ରୀ ଓ ଆକାଶକୁ କିଏ ଗଢ଼ିଛି, ସେମାନେ ନିଶ୍ଚୟ କହିବେ, "ଅଲ୍ଲାହ୍" । ସେମାନଙ୍କୁ କୁହ, "ଟିକିଏ ବିଚାର କର, ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି

ଯେଉଁମାନଙ୍କୁ ଡାକ, ଯଦି ଅଲ୍ଲାହ୍ ମୋତେ କୌଣସି ଦୁଃଖ ଦେବାକୁ ଚାହିଁବେ, କ'ଣ ଏମାନେ ତାହା ଦୂର କରି ପାରିବେ? କିମ୍ବା ଯଦି ଅଲ୍ଲାହ୍ ମୋ'ପ୍ରତି କିଛି କରୁଣା କରିବାକୁ ଚାହାନ୍ତି, କ'ଣ ଏମାନେ ତାଙ୍କ କରୁଣାକୁ ରୋକିଦେଇ ପାରିବେ?" କହିଦିଅ, "ମୋ'ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ। ଭରସା କରୁଥିବା ଲୋକେ ତାଙ୍କରି ଉପରେ ଭରସା କରି ଥାଆନ୍ତି। (୩୯/୩୮)

اَرَادَنِیْ بِرَحْمَةٍ هَلْ هُنَّ مُمْسِكٰتُ رَحْمَتِهٖ ؕ قُلْ
حَسْبِیَ اللّٰهُ ؕ عَلَیْهِ یَتَوَكَّلُ الْمُتَوَكِّلُوْنَ ﴿۳۸﴾

### ୩୯୦. କୁରଆନ ଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ

(ହେ ମୁହମ୍ମଦ!) ଆମ୍ଭେ ତୁମ ପ୍ରତି ଏହି ଗ୍ରନ୍ଥଟିକୁ ମାନବଜାତିର ମଂଗଳ ପାଇଁ ଯଥାର୍ଥ ଉଦ୍ଦେଶ୍ୟରେ ପ୍ରକଟ କରିଛୁ। ଏଣୁ, ଯିଏ ସତପଥ ଅବଲମ୍ବନ କରିବ, ସେ ନିଜର ମଂଗଳ ପାଇଁ କରିବ ଏବଂ ଯିଏ ପଥଭ୍ରଷ୍ଟ ହେବ, ସେ ନିଜର ହିଁ କ୍ଷତି କରିବ। ତୁମେ ସେମାନଙ୍କ ପାଇଁ ଦାୟୀ ହେବ ନାହିଁ। (୩୯/୪୧)

اِنَّاۤ اَنْزَلْنَا عَلَیْكَ الْكِتٰبَ لِلنَّاسِ بِالْحَقِّ ۚ فَمَنِ
اهْتَدٰی فَلِنَفْسِهٖ ۚ وَ مَنْ ضَلَّ فَاِنَّمَا یَضِلُّ
عَلَیْهَا ۚ وَ مَاۤ اَنْتَ عَلَیْهِمْ بِوَكِیْلٍ ﴿۴۱﴾

### ୩୯୧. ସେ ନିଦ୍ରା ଅବସ୍ଥାରେ ଆତ୍ମା ହରଣ କରନ୍ତି

ଅଲ୍ଲାହ୍ ହିଁ ମୃତ୍ୟୁ ବେଳେ ଆତ୍ମାକୁ ହରଣ କରି ନିଅନ୍ତି ଏବଂ ଯେଉଁମାନଙ୍କର ମୃତ୍ୟୁ ହୋଇ ନଥାଏ, ସେମାନଙ୍କର ଆତ୍ମାକୁ ନିଦ୍ରାବସ୍ଥାରେ ହରଣ କରନ୍ତି। ପୁଣି (ଏମାନଙ୍କ ମଧ୍ୟରୁ) ଯେଉଁମାନଙ୍କ ପାଇଁ ସେ ମୃତ୍ୟୁର ଆଜ୍ଞା ଦେଇଥାଆନ୍ତି, ସେମାନଙ୍କ ଆତ୍ମାକୁ ଅଟକାଇ ରଖନ୍ତି ଏବଂ ଅବଶିଷ୍ଟ ଆତ୍ମାକୁ ଏକ ନିର୍ଦ୍ଧିଷ୍ଟ ସମୟ ପାଇଁ ଛାଡ଼ିଦିଅନ୍ତି। ଯେଉଁମାନେ ଚିନ୍ତା କରନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ରହିଛି। (୩୯/୪୨)

اَللّٰهُ یَتَوَفَّی الْاَنْفُسَ حِیْنَ مَوْتِهَا وَ الَّتِیْ لَمْ تَمُتْ
فِیْ مَنَامِهَا ۚ فَیُمْسِكُ الَّتِیْ قَضٰی عَلَیْهَا الْمَوْتَ
وَ یُرْسِلُ الْاُخْرٰۤی اِلٰۤی اَجَلٍ مُّسَمًّی ؕ اِنَّ فِیْ ذٰلِكَ
لَاٰیٰتٍ لِّقَوْمٍ یَّتَفَكَّرُوْنَ ﴿۴۲﴾

### ୩୯୨. ଏକେଶ୍ୱରବାଦର ଚର୍ଚ୍ଚା ବହୁଦେବବାଦୀଙ୍କୁ ଅପ୍ରିୟ ଲାଗେ

ଯେତେବେଳେ ଅଦ୍ୱିତୀୟ ଅଲ୍ଲାହ୍‌ଙ୍କ ବିଷୟରେ ଚର୍ଚ୍ଚା ହୁଏ, ପରଲୋକକୁ ମାନୁ ନଥିବା ଲୋକମାନଙ୍କ ହୃଦୟ ସଂକୁଚିତ ହୋଇଯାଏ, ମାତ୍ର ଯେବେବେଳେ ତାଙ୍କ ବ୍ୟତୀତ ଅନ୍ୟ (କଳ୍ପିତ ଉପାସ୍ୟ) ମାନଙ୍କର ଚର୍ଚ୍ଚା ହୁଏ, ସେମାନେ ଭାରି ଖୁସି ହୋଇଯାଆନ୍ତି। (୩୯/୪୫)

وَ اِذَا ذُكِرَ اللّٰهُ وَحْدَهُ اشْمَاَزَّتْ قُلُوْبُ الَّذِیْنَ لَا
یُؤْمِنُوْنَ بِالْاٰخِرَةِ ۚ وَ اِذَا ذُكِرَ الَّذِیْنَ مِنْ دُوْنِهٖۤ
اِذَا هُمْ یَسْتَبْشِرُوْنَ ﴿۴۵﴾

### ୩୯୩. ବିପଦ କଟିଗଲେ ମଣିଷ କହେ 'ବୁଦ୍ଧି ବଳରେ ବଂଚିଗଲି'

ଯେତେବେଳେ ମଣିଷକୁ କଷ୍ଟ ହୁଏ, ସେ ଆମ୍ଭଙ୍କୁ ଡ଼ାକ ପକାଏ । ପୁଣି ଯଦି ଆମ୍ଭେ ତା'ପ୍ରତି ନିଜର କୃପା କରିଦେଉ, ସେ କହେ "ଏହା ତ ମୋତେ ମୋ' ଜ୍ଞାନ ବା ବୁଦ୍ଧି ବଳରେ ହେଲା ।" ନା, ଏହା ତ ଏକ ପରୀକ୍ଷା (ଥିଲା), ମାତ୍ର ଅଧିକାଂଶ ଲୋକ ଏକଥା ଜାଣନ୍ତି ନାହିଁ । ଏହିକଥା ସେମାନଙ୍କ ପୂର୍ବଜମାନେ ମଧ୍ୟ କହିଥିଲେ । ତେଣୁ, ସେମାନେ ଯାହାକିଛି ଅର୍ଜନ କରିଥିଲେ, ତାହା ସେମାନଙ୍କର କାମରେ ଆସିଲା ନାହିଁ । (୩୯/୪୯-୫୦)

فَإِذَا مَسَّ الْإِنْسَانَ ضُرٌّ دَعَانَا ثُمَّ إِذَا خَوَّلْنَاهُ
نِعْمَةً مِنَّا قَالَ إِنَّمَا أُوتِيتُهُ عَلَىٰ عِلْمٍ ۚ بَلْ هِيَ
فِتْنَةٌ وَلَٰكِنَّ أَكْثَرَهُمْ لَا يَعْلَمُونَ ﴿٤٩﴾ قَدْ
قَالَهَا الَّذِينَ مِنْ قَبْلِهِمْ فَمَا أَغْنَىٰ عَنْهُمْ مَا
كَانُوا يَكْسِبُونَ ﴿٥٠﴾

### ୩୯୪. ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ

(ହେ ଈଶ୍ୱରଦୂତ!) କହିଦିଅ ଯେ ହେ ମୋ' ଭକ୍ତଗଣ! ଯେଉଁମାନେ (ପାପକରି) ନିଜ ପ୍ରତି ଅତ୍ୟାଚାର କରିଛ, ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ । (ଅନୁତାପ କଲେ) ଅଲ୍ଲାହ୍ ସବୁ ପାପ କ୍ଷମା କରିଦିଅନ୍ତି । ବାସ୍ତବରେ ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ଅସୀମ ଦୟାବାନ । (୩୯/୫୩)

قُلْ يَا عِبَادِيَ الَّذِينَ أَسْرَفُوا عَلَىٰ أَنْفُسِهِمْ لَا
تَقْنَطُوا مِنْ رَحْمَةِ اللَّهِ ۚ إِنَّ اللَّهَ يَغْفِرُ الذُّنُوبَ
جَمِيعًا ۚ إِنَّهُ هُوَ الْغَفُورُ الرَّحِيمُ ﴿٥٣﴾

### ୩୯୫. ମୃତ୍ୟୁ ପୂର୍ବରୁ କୁରଆନର ଆଜ୍ଞା ମାନିନିଅ

ବିପଦ ଆସିବା ପୂର୍ବରୁ ନିଜ ପ୍ରଭୁଙ୍କ ନିକଟରେ ପଶ୍ଚାତାପ କର ଏବଂ ନିଜକୁ ତାଙ୍କଠାରେ ସମର୍ପଣ କର, ଅନ୍ୟଥା ତୁମମାନଙ୍କର (କୌଣସି) ସହାୟତା କରାଯିବ ନାହିଁ । ତୁମ ଅଜାଣତରେ ହଠାତ୍ କୌଣସି ବିପତ୍ତି ଆସିବା ପୂର୍ବରୁ ତୁମମାନଙ୍କ ପ୍ରଭୁ ପଠାଇଥିବା (କୁରଆନର) ମହତ ଉପଦେଶଗୁଡ଼ିକୁ ପାଳନ କର । ଏମିତି ନହେଉ ଯେ, ପରେ କେହି (ଅବଶୋଷ କରି) କହୁ, "ହାୟ ମୋ ଦୁର୍ଭାଗ୍ୟ! ମୁଁ ଅଲ୍ଲାହଙ୍କ ପ୍ରତି ଘୋର ଅବହେଳା କଲି ଏବଂ (ତାଙ୍କ ଆଦେଶ ପ୍ରତି) ଉପହାସ କଲି ।" ଅଥବା କେହି ଏହା ନ କହୁ ଯେ ଯଦି ଅଲ୍ଲାହ୍ ମୋତେ ସତପଥ ଦେଖାଇଥାଆନ୍ତେ, ତେବେ ମୁଁ ମଧ୍ୟ ସଦାଚାରୀ ହୋଇ ଥାଆନ୍ତି କିମ୍ବା ନର୍କଯନ୍ତ୍ରଣା ଦେଖି ଏହା ନ କହୁ ଯେ ଯଦି ମୋତେ (ଆଉଥରେ ସଂସାରକୁ ଫେରିବାର) ସୁଯୋଗ ମିଳନ୍ତା, ତେବେ ମୁଁ (ନିଶ୍ଚୟ) ପୁଣ୍ୟବାନ ହୁଅନ୍ତି । (ତାକୁ ଉତ୍ତର ଦିଆଯିବ) "ଆଦୌ ନୁହେଁ, ତୋ ପାଖରେ ମୋ' ବାଣୀ ପହଁଚି ସାରିଥିଲା । ତୁ ତାହାକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲୁ ଏବଂ

وَأَنِيبُوا إِلَىٰ رَبِّكُمْ وَأَسْلِمُوا لَهُ مِنْ قَبْلِ أَنْ
يَأْتِيَكُمُ الْعَذَابُ ثُمَّ لَا تُنْصَرُونَ ﴿٥٤﴾ وَاتَّبِعُوا
أَحْسَنَ مَا أُنْزِلَ إِلَيْكُمْ مِنْ رَبِّكُمْ مِنْ قَبْلِ
أَنْ يَأْتِيَكُمُ الْعَذَابُ بَغْتَةً وَأَنْتُمْ لَا تَشْعُرُونَ ﴿٥٥﴾
أَنْ تَقُولَ نَفْسٌ يَا حَسْرَتَىٰ عَلَىٰ مَا فَرَّطْتُ فِي جَنْبِ
اللَّهِ وَإِنْ كُنْتُ لَمِنَ السَّاخِرِينَ ﴿٥٦﴾ أَوْ تَقُولَ لَوْ
أَنَّ اللَّهَ هَدَانِي لَكُنْتُ مِنَ الْمُتَّقِينَ ﴿٥٧﴾
أَوْ تَقُولَ حِينَ تَرَى الْعَذَابَ لَوْ أَنَّ لِي كَرَّةً
فَأَكُونَ مِنَ الْمُحْسِنِينَ ﴿٥٨﴾ بَلَىٰ قَدْ جَاءَتْكَ

ଅହଂକାର କରି ଅଧର୍ମୀ ହୋଇ ଯାଇଥିଲୁ ।" (୩୯/୫୪-୫୯)

اٰيٰتِىْ فَكَذَّبْتَ بِهَا وَاسْتَكْبَرْتَ وَكُنْتَ مِنَ
الْكٰفِرِيْنَ ﴿٥٩﴾

## ୩୯୬. ସବୁ ଈଶ୍ୱରଦୂତଙ୍କୁ ଏକା ଦୈବବାଣୀ

(ହେ ମୁହମ୍ମଦ!) ତୁମ ପ୍ରତି ଏବଂ ତୁମ ପୂର୍ବରୁ ଆସିଥିବା (ବିଶ୍ୱର) ସବୁ ଈଶ୍ୱରଦୂତଙ୍କ ପ୍ରତି (ମଧ୍ୟ) ଏହି ଦୈବବାଣୀ କରା ଯାଇସାରିଛି ଯେ ଯଦି ତୁମେ ବହୁଈଶ୍ୱରବାଦୀ ହୁଅ, ତେବେ ତୁମମାନଙ୍କର ସବୁ କର୍ମ ବୃଥା  ହୋଇଯିବ ଏବଂ ତୁମେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବ । ସୁତରାଂ, କେବଳ ଅଲ୍ଲାହଙ୍କର ଉପାସନା କର ଏବଂ (ତାଙ୍କ ପ୍ରତି) କୃତଜ୍ଞ ହୁଅ । (୩୯/୬୫-୬୬)

وَلَقَدْ اُوْحِىَ اِلَيْكَ وَاِلَى الَّذِيْنَ مِنْ قَبْلِكَ ۚ لَئِنْ
اَشْرَكْتَ لَيَحْبَطَنَّ عَمَلُكَ وَ لَتَكُوْنَنَّ مِنَ
الْخٰسِرِيْنَ ﴿٦٥﴾ بَلِ اللّٰهَ فَاعْبُدْ وَكُنْ مِّنَ
الشّٰكِرِيْنَ ﴿٦٦﴾

## ୩୯୭. ପ୍ରଳୟ ଦିନର ଦୃଶ୍ୟ

ଯେତେବେଳେ ତୂରୀନାଦ ହେବ, ଧରିତ୍ରୀ ଓ ଆକାଶ ମଧ୍ୟରେ ଯେଉଁମାନେ ଅଛନ୍ତି, ସମସ୍ତେ ଚେତାଶୂନ୍ୟ ହୋଇ ପଡ଼ିଯିବେ, ମାତ୍ର ଯଦି ଅଲ୍ଲାହ୍ କାହାରି ପାଇଁ ଭିନ୍ନ କିଛି ଇଚ୍ଛା କରନ୍ତି, ତେବେ ତା' କଥା ଭିନ୍ନ । ଏହାପରେ ଦ୍ୱିତୀୟଥର ତୂରୀନାଦ ହେବ ଏବଂ ସଂଗେସଂଗେ ସମସ୍ତେ ଠିଆ ହୋଇପଡ଼ି (ଚାରିଆଡ଼େ) ଦେଖିବେ । ଧରିତ୍ରୀ ନିଜ ପ୍ରଭୁଙ୍କ ଜ୍ୟୋତିରେ ଝଲସି ଉଠିବ, କର୍ମପଞ୍ଜିକା ଉପସ୍ଥାପନ କରାଯିବ, ଈଶ୍ୱରଦୂତଗଣ ଓ ସାକ୍ଷୀଗଣଙ୍କୁ ଅଣାଯିବ ଏବଂ ଲୋକମାନଙ୍କ ମଧ୍ୟରେ ନ୍ୟାୟସଂଗତ ଭାବେ ନିଷ୍ପତ୍ତି କରିଦିଆଯିବ । ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରାଯିବ ନାହିଁ । ଯିଏ ଯାହା କର୍ମ କରିଥିବ, ତାକୁ ତା' (କର୍ମର) ସଂପୂର୍ଣ୍ଣ ପ୍ରତିଫଳ ଦିଆଯିବ । ସେମାନେ ଯାହା କରୁଛନ୍ତି, ଈଶ୍ୱର ଭଲରୂପେ ଜାଣନ୍ତି । (୩୯/୬୮-୭୦)

وَنُفِخَ فِى الصُّوْرِ فَصَعِقَ مَنْ فِى السَّمٰوٰتِ وَمَنْ فِى
الْاَرْضِ اِلَّا مَنْ شَآءَ اللّٰهُ ۗ ثُمَّ نُفِخَ فِيْهِ اُخْرٰى
فَاِذَا هُمْ قِيَامٌ يَّنْظُرُوْنَ ﴿٦٨﴾ وَاَشْرَقَتِ الْاَرْضُ
بِنُوْرِ رَبِّهَا وَ وُضِعَ الْكِتٰبُ وَجِاْئَ
بِالنَّبِيّٖنَ وَ الشُّهَدَآءِ وَقُضِىَ بَيْنَهُمْ بِالْحَقِّ
وَهُمْ لَا يُظْلَمُوْنَ ﴿٦٩﴾ وَوُفِّيَتْ كُلُّ نَفْسٍ مَّا
عَمِلَتْ وَهُوَ اَعْلَمُ بِمَا يَفْعَلُوْنَ ﴿٧٠﴾

## ୩୯୮. ବିଶୁଦ୍ଧ ଏକେଶ୍ୱରବାଦୀ ହୁଅ

ନିଜର ଉପାସନାକୁ କେବଳ ଅଲ୍ଲାହଙ୍କ ପାଇଁ ବିଶୁଦ୍ଧ କରି ତାଙ୍କୁ ପ୍ରାର୍ଥନା କରୁଥାଅ, ଅସଦବିଶ୍ୱାସୀମାନଙ୍କୁ ପଛେ ଯେତେ ଅପ୍ରିୟ ଲାଗୁ । (୪୦/୧୪)

فَادْعُوا اللّٰهَ مُخْلِصِيْنَ لَهُ الدِّيْنَ وَلَوْ كَرِهَ
الْكٰفِرُوْنَ ﴿١٤﴾

## ୩୯୯. ସେ ତୁମ ଆଖିର ଚୋରି ବିଷୟରେ ଜାଣନ୍ତି

ସେ ତୁମ ଆଖିର ଚୋରି (ଅର୍ଥାତ୍ କୁଦୃଷ୍ଟି) ବିଷୟରେ ଜାଣନ୍ତି ଏବଂ ଅନ୍ତରର ଗୋପନ କଥାକୁ ମଧ୍ୟ । (୪୦/୧୯)

يَعْلَمُ خَآئِنَةَ الْاَعْيُنِ وَمَا تُخْفِى الصُّدُوْرُ ﴿١٩﴾

### ୪୦୦. ସଦବିଶ୍ୱାସୀମାନଙ୍କର ଦୈବୀ ସହାୟତା ହୁଏ

ଆମ୍ଭେ ନିଜ ବାର୍ତ୍ତାବହଙ୍କର ତଥା ଆମ୍ଭ ପ୍ରତି ବିଶ୍ୱାସ ରଖିଥିବା ଲୋକମାନଙ୍କର ସହାୟତା ଅବଶ୍ୟ ସାଂସାରିକ ଜୀବନରେ କରିଥାଉ ଏବଂ ସେଦିନ ମଧ୍ୟ କରିବୁ, ଯେଉଁଦିନ ସାକ୍ଷୀମାନେ (ବିଚାର ବେଳେ ଆମ୍ଭ ସମ୍ମୁଖରେ) ଠିଆ ହେବେ । (୪୦/୫୧)

اِنَّا لَنَنْصُرُ رُسُلَنَا وَ الَّذِيْنَ اٰمَنُوْا فِى الْحَيٰوةِ
الدُّنْيَا وَيَوْمَ يَقُوْمُ الْاَشْهَادُ ﴿٥١﴾

### ୪୦୧. ତୁମକୁ ପୁନର୍ଜୀବିତ କରିବା ବଡ଼କଥା ନୁହେଁ

ପୃଥିବୀ ଓ ଅନ୍ତରୀକ୍ଷ ସୃଷ୍ଟି କରିବା, (ସାଧାରଣ) ମନୁଷ୍ୟଙ୍କୁ ସୃଷ୍ଟି କରିବା ତୁଳନାରେ ନିଶ୍ଚୟ ବଡ଼ କାର୍ଯ୍ୟ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । (୪୦/୫୭)

لَخَلْقُ السَّمٰوٰتِ وَ الْاَرْضِ اَكْبَرُ مِنْ خَلْقِ
النَّاسِ وَلٰكِنَّ اَكْثَرَ النَّاسِ لَا يَعْلَمُوْنَ ﴿٥٧﴾

### ୪୦୨. କେବଳ ତାଙ୍କୁ ହିଁ ଡାକ

ତୁମ ପ୍ରଭୁ କହିଛନ୍ତି ଯେ ମୋତେ ଡାକ, ମୁଁ ତୁମର ପ୍ରାର୍ଥନା ସ୍ୱୀକାର କରିବି । ଯେଉଁମାନେ (ଅହଂକାର ବଶତଃ) ମୋ' ଉପାସନାରୁ ମୁହଁ ମୋଡ଼ନ୍ତି, ସେମାନେ ଶୀଘ୍ର ଲାଂଛିତ ହୋଇ ନର୍କକୁ ଯିବେ । (୪୦/୬୦)

وَ قَالَ رَبُّكُمُ ادْعُوْنِيْٓ اَسْتَجِبْ لَكُمْ ؕ اِنَّ
الَّذِيْنَ يَسْتَكْبِرُوْنَ عَنْ عِبَادَتِيْ سَيَدْخُلُوْنَ
جَهَنَّمَ دٰخِرِيْنَ ﴿٦٠﴾

### ୪୦୩. ତୁମମାନଙ୍କର ଅଲ୍ଲାହ୍ କିଏ

(ତୁମମାନଙ୍କର) ଅଲ୍ଲାହ୍ ସେଇ, ଯିଏ ତୁମମାନଙ୍କ ପାଇଁ ଧରିତ୍ରୀକୁ ବାସୋପଯୋଗୀ କଲେ, ଆକାଶକୁ ଛାତ କଲେ ଏବଂ ତୁମମାନଙ୍କୁ ରୂପ ଦେଲେ – ସୁନ୍ଦର ରୂପ, ଏବଂ ତୁମମାନଙ୍କୁ ଶୁଦ୍ଧ ଆହାର ଦେଲେ । ସେଇ ତୁମମାନଙ୍କ ପ୍ରଭୁ ଅଲ୍ଲାହ୍ । ମଂଗଳମୟ ଜଗତପାଳକ ଅଲ୍ଲାହ୍ । ସେ ସଦା-ଜୀବନ୍ତ । ତାଙ୍କ ବ୍ୟତୀତ କେହି ପୂଜ୍ୟ ନୁହେଁ । ତେଣୁ, ନିଜ ପୂଜା-ଉପାସନାକୁ ତାଙ୍କ ପାଇଁ ସଂପୂର୍ଣ୍ଣ ରୂପେ ବିଶୁଦ୍ଧ କରି ତାଙ୍କୁ ଡାକୁଥାଅ । ସକଳ ସ୍ତୁତି ଜଗଦୀଶ୍ୱର ଅଲ୍ଲାହଙ୍କ ପାଇଁ । (୪୦/୬୪-୬୫)

اَللّٰهُ الَّذِيْ جَعَلَ لَكُمُ الْاَرْضَ قَرَارًا وَّ
السَّمَآءَ بِنَآءً وَّ صَوَّرَكُمْ فَاَحْسَنَ صُوَرَكُمْ وَ
رَزَقَكُمْ مِّنَ الطَّيِّبٰتِ ؕ ذٰلِكُمُ اللّٰهُ رَبُّكُمْ ۚ
فَتَبٰرَكَ اللّٰهُ رَبُّ الْعٰلَمِيْنَ ﴿٦٤﴾ هُوَ الْحَيُّ لَآ اِلٰهَ
اِلَّا هُوَ فَادْعُوْهُ مُخْلِصِيْنَ لَهُ الدِّيْنَ ؕ اَلْحَمْدُ لِلّٰهِ
رَبِّ الْعٰلَمِيْنَ ﴿٦٥﴾

### ୪୦୪. କୁରଆନକୁ ଜ୍ଞାନୀମାନେ ହିଁ ବୁଝନ୍ତି

ଏହି କୁରଆନ ପରମ ଦୟାଳୁ ଏବଂ ଅତ୍ୟନ୍ତ କୃପାଶୀଳ ସତ୍ତାଙ୍କ ଦ୍ୱାରା ଅବତରଣ କରାଯାଇଛି । ଏହି ଗ୍ରନ୍ଥର ବାଣୀଗୁଡ଼ିକୁ ଆରବୀ ଭାଷାରେ ସ୍ପଷ୍ଟ ଭାବରେ ଜ୍ଞାନୀଲୋକମାନଙ୍କ ପାଇଁ ବର୍ଣ୍ଣନା କରାଯାଇଛି । (୪୧/୨-୩)

تَنْزِيْلٌ مِّنَ الرَّحْمٰنِ الرَّحِيْمِ ﴿٢﴾ كِتٰبٌ فُصِّلَتْ
اٰيٰتُهٗ قُرْاٰنًا عَرَبِيًّا لِّقَوْمٍ يَّعْلَمُوْنَ ﴿٣﴾

### ୪୦୫. ଏକ ଗ୍ୟାସୀୟ ପିଣ୍ଡରୁ ତାରକାପୁଞ୍ଜର ସୃଷ୍ଟି

ତା’ପରେ ସେ ଆକାଶ ପ୍ରତି ଧ୍ୟାନ ଦେଲେ ଯାହା ସେତେବେଳେ ଧୂଆଁ ପରି (ଅର୍ଥାତ୍ ଗ୍ୟାସୀୟ ଅବସ୍ଥାରେ) ଥିଲା । (୪୧/୧୧)

ثُمَّ اسْتَوٰٓى اِلَى السَّمَآءِ وَهِيَ دُخَانٌ

### ୪୦୬. ସ୍ୱର୍ଗରେ ଯାହା ଚାହିଁବ, ତାହା ପାଇବ

ଯେଉଁମାନେ କହିଲେ ଯେ ଆମ ପ୍ରଭୁ ଅଲ୍ଲାହ୍ ଏବଂ ନିଜ କଥାରେ ଅଟଳ ରହିଲେ, (ମୃତ୍ୟୁ ବେଳେ) ସେମାନଙ୍କ ପାଖକୁ ସ୍ୱର୍ଗଦୂତ ଆସି କହିବେ, “ଭୟ କରନାହିଁ ବା ଦୁଃଖ କରନାହିଁ । ତୁମପାଇଁ ସ୍ୱର୍ଗର ସୁସମ୍ବାଦ ଅଛି, ଯାହାର ପ୍ରତିଶ୍ରୁତି ତୁମକୁ ଦିଆଯାଇଥିଲା । ଆମ୍ଭେ ସାଂସାରିକ ଜୀବନରେ ତୁମର ସାଥି ଥିଲୁ ଏବଂ ପରଲୋକରେ ମଧ୍ୟ ରହିବୁ । ସେଠାରେ ତୁମେ ଯାହାକିଛି ଇଚ୍ଛା କରିବ, ତାହା ତୁମକୁ ମିଳିବ ଏବଂ ଯାହାକିଛି ମାଗିବ, ତାହା ପାଇବ । କ୍ଷମାଶୀଳ ଓ ପରମ ଦୟାଳୁ ପରମେଶ୍ୱରଙ୍କ ତରଫରୁ ଏହା ତୁମମାନଙ୍କର ଆତିଥ୍ୟ ହେବ ।” (୪୧/୩୦-୩୨)

اِنَّ الَّذِيْنَ قَالُوْا رَبُّنَا اللّٰهُ ثُمَّ اسْتَقَامُوْا تَتَنَزَّلُ
عَلَيْهِمُ الْمَلٰٓئِكَةُ اَلَّا تَخَافُوْا وَ لَا تَحْزَنُوْا وَ
اَبْشِرُوْا بِالْجَنَّةِ الَّتِيْ كُنْتُمْ تُوْعَدُوْنَ ﴿٣٠﴾ نَحْنُ
اَوْلِيٰٓؤُكُمْ فِي الْحَيٰوةِ الدُّنْيَا وَ فِي الْاٰخِرَةِ ۚ وَ
لَكُمْ فِيْهَا مَا تَشْتَهِيْٓ اَنْفُسُكُمْ وَ لَكُمْ
فِيْهَا مَا تَدَّعُوْنَ ﴿٣١﴾ نُزُلًا مِّنْ غَفُوْرٍ رَّحِيْمٍ ﴿٣٢﴾

### ୪୦୭. ଲୋକଙ୍କୁ ସଦୁପଦେଶ ଦେଉଥାଅ

ସେଇ ବ୍ୟକ୍ତି ଅପେକ୍ଷା ଆଉ କାହା କଥା ଅଧିକ ଭଲ ହୋଇପାରେ, ଯିଏ ଲୋକମାନଙ୍କୁ ଅଲ୍ଲାହ୍‌ଙ୍କ ମାର୍ଗକୁ ଡାକେ, ସତକର୍ମ କରେ ଏବଂ ନିଜକୁ (ଈଶ୍ୱରଙ୍କ) ଆଜ୍ଞାକାରୀ (ଅର୍ଥାତ୍, ମୁସଲିମ୍) ବୋଲି କହେ ? (୪୧/୩୩)

وَ مَنْ اَحْسَنُ قَوْلًا مِّمَّنْ دَعَآ اِلَى اللّٰهِ وَ عَمِلَ
صَالِحًا وَّ قَالَ اِنَّنِيْ مِنَ الْمُسْلِمِيْنَ ﴿٣٣﴾

### ୪୦୮. ଦୁର୍ବ୍ୟବହାରର ଉତ୍ତର ସଦ୍‌ବ୍ୟବହାର ଦ୍ୱାରା ଦିଅ

ଭଲ କର୍ମ ଓ ମନ୍ଦ କର୍ମ ସମାନ ନୁହେଁ । ତୁମେ ଦୁର୍ବ୍ୟବହାରର ଉତ୍ତର ସଦବ୍ୟବହାର ଦ୍ୱାରା ଦିଅ । ପୁଣି ଦେଖିବ ଯେ ଯେଉଁ ବ୍ୟକ୍ତି ସହିତ ତୁମର ଶତ୍ରୁତା ଥିଲା, ସେ ତୁମର ଅନ୍ତରଂଗ ବନ୍ଧୁ ପାଲଟିଯିବ । ଏହି ଗୌରବର ଅଧିକାରୀ ସେଇମାନେ ହୁଅନ୍ତି, ଯେଉଁମାନେ ସହନଶୀଳ ଏବଂ ଯେଉଁମାନେ ସୌଭାଗ୍ୟଶାଳୀ । ଯଦି ଶଇତାନ ତୁମ ମନରେ କୌଣସି ଦୁର୍ଭାବନା ଉତ୍ପନ୍ନ କରେ, ତେବେ ଅଲ୍ଲାହ୍‌ଙ୍କର ଶରଣ ନିଅ । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । (୪୧/୩୪-୩୬)

وَلَا تَسْتَوِي الْحَسَنَةُ وَلَا السَّيِّئَةُ ؕ اِدْفَعْ بِالَّتِيْ
هِيَ اَحْسَنُ فَاِذَا الَّذِيْ بَيْنَكَ وَ بَيْنَهٗ عَدَاوَةٌ
كَاَنَّهٗ وَلِيٌّ حَمِيْمٌ ﴿٣٤﴾ وَمَا يُلَقّٰىهَآ اِلَّا الَّذِيْنَ
صَبَرُوْا ۚ وَمَا يُلَقّٰىهَآ اِلَّا ذُوْ حَظٍّ عَظِيْمٍ ﴿٣٥﴾
وَ اِمَّا يَنْزَغَنَّكَ مِنَ الشَّيْطٰنِ نَزْغٌ فَاسْتَعِذْ
بِاللّٰهِ ؕ اِنَّهٗ هُوَ السَّمِيْعُ الْعَلِيْمُ ﴿٣٦﴾

**୪୦୯. ଦୈବବାଣୀକୁ କଦର୍ଥ କଲେ ନର୍କଦଣ୍ଡ ଭୋଗିବ**

ଯେଉଁମାନେ ଆମ୍ଭର ବାଣୀକୁ କଦର୍ଥ କରନ୍ତି, ସେମାନେ ଆମ୍ଭଠାରୁ ଲୁଚି ରହିନାହାନ୍ତି । ଯାହାକୁ ନର୍କରେ ନିକ୍ଷେପ କରାଯିବ ସେ ଭଲ, ବା ଯିଏ ବିଚାରଦିନ (ଆମ୍ଭ ନିକଟକୁ) ନିର୍ଭୟରେ ଆସିବ, ସେ ଭଲ? ଯାହା ଇଚ୍ଛା କର । ଯାହା ତୁମେମାନେ କରୁଛ, ସେ ଦେଖୁଛନ୍ତି । (୪୧/୪୦)

إِنَّ الَّذِينَ يُلْحِدُونَ فِيٓ ءَايَٰتِنَا لَا يَخْفَوْنَ عَلَيْنَآ ۗ أَفَمَن يُلْقَىٰ فِى النَّارِ خَيْرٌ أَم مَّن يَأْتِيٓ ءَامِنًا يَوْمَ الْقِيَٰمَةِ ۚ اعْمَلُوا مَا شِئْتُمْ ۙ إِنَّهُۥ بِمَا تَعْمَلُونَ بَصِيرٌ ﴿٤٠﴾

**୪୧୦. କୁରଆନରେ ପ୍ରକ୍ଷେପଣ ସମ୍ଭବ ନୁହେଁ**

ଯେତେବେଳେ ସେମାନଙ୍କ ପାଖରେ କୁରଆନ ପହଁଚିଲା, ସେମାନେ ଏହାକୁ ଅସ୍ୱୀକାର କଲେ, କିନ୍ତୁ ବାସ୍ତବରେ ଏହା ଏକ ମହାନ ଗ୍ରନ୍ଥ । ଅସତ୍ୟ ଏହାକୁ (କୌଣସି ପ୍ରକାରରେ) ସ୍ପର୍ଶ କରି ପାରିବ ନାହିଁ - ନା ଆଗରୁ ନା ପଛରୁ । ଏହା ତତ୍ତ୍ୱଦର୍ଶୀ ଓ ପ୍ରଶଂସାଯୋଗ୍ୟ ସତ୍ତାଙ୍କ ଦ୍ୱାରା ଅବତରଣ କରାଯାଇଛି । (୪୧/୪୧-୪୨)

إِنَّ الَّذِينَ كَفَرُوا بِالذِّكْرِ لَمَّا جَآءَهُمْ ۖ وَإِنَّهُۥ لَكِتَٰبٌ عَزِيزٌ ﴿٤١﴾ لَّا يَأْتِيهِ الْبَٰطِلُ مِنۢ بَيْنِ يَدَيْهِ وَلَا مِنْ خَلْفِهِۦ ۖ تَنزِيلٌ مِّنْ حَكِيمٍ حَمِيدٍ ﴿٤٢﴾

**୪୧୧. ଈଶ୍ୱରଦୂତ ନୂଆ ଧର୍ମତତ୍ତ୍ୱ ଆଣି ନାହାନ୍ତି**

(ହେ ମୁହମ୍ମଦ !) ତୁମକୁ ତାହାହିଁ କୁହାଯାଇଛି, ଯାହା ତୁମ ପୂର୍ବ ଈଶ୍ୱରଦୂତମାନଙ୍କୁ କୁହାଯାଇଥିଲା । ନିଃସନ୍ଦେହରେ ତୁମ ପ୍ରଭୁ ଅତ୍ୟନ୍ତ କ୍ଷମାଶୀଳ ଏବଂ କଠୋର ଶାସ୍ତିଦାତା । (୪୧/୪୩)

مَّا يُقَالُ لَكَ إِلَّا مَا قَدْ قِيلَ لِلرُّسُلِ مِن قَبْلِكَ ۚ إِنَّ رَبَّكَ لَذُو مَغْفِرَةٍ وَذُو عِقَابٍ أَلِيمٍ ﴿٤٣﴾

**୪୧୨. ଯିଏ କର୍ମ କରେ, ସେ ହିଁ ଫଳ ଭୋଗେ**

ଯିଏ ସତକର୍ମ କରେ, ନିଜ ପାଇଁ କରେ ଏବଂ ଯିଏ ଅସତକର୍ମ କରେ, ତାହାର ଫଳ ସେଇ ଭୋଗିବ । ଅଲ୍ଲାହ୍ ନିଜ ଭକ୍ତମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ କରନ୍ତି ନାହିଁ । (୪୧/୪୬)

مَّنْ عَمِلَ صَٰلِحًا فَلِنَفْسِهِۦ ۖ وَمَنْ أَسَآءَ فَعَلَيْهَا ۗ وَمَا رَبُّكَ بِظَلَّٰمٍ لِّلْعَبِيدِ ﴿٤٦﴾

**୪୧୩. ସୁଖରେ ମଣିଷ ଈଶ୍ୱରଙ୍କୁ ଭୁଲିଯାଏ**

ଯଦି ଆମ୍ଭେ (ସୁଖ ପ୍ରଦାନ କରି) ମନୁଷ୍ୟ ପ୍ରତି କୌଣସି ଅନୁଗ୍ରହ କରୁ, ସେ ଆମ୍ଭ ପ୍ରତି ବିମୁଖ ହୋଇଯାଏ, ମାତ୍ର ଯଦି କୌଣସି ବିପଦ ପଡ଼େ, ସେ ଲମ୍ବା ଲମ୍ବା ପ୍ରାର୍ଥନା କରିଥାଏ । (୪୧/୫୧)

وَإِذَآ أَنْعَمْنَا عَلَى الْإِنسَٰنِ أَعْرَضَ وَنَـَٔا بِجَانِبِهِۦ ۖ وَإِذَا مَسَّهُ الشَّرُّ فَذُو دُعَآءٍ عَرِيضٍ ﴿٥١﴾

**୪୧୪. ବ୍ରହ୍ମାଣ୍ଡରେ ତାଙ୍କର ଉପମା ନାହିଁ**

ସେ ଧରିତ୍ରୀ ଓ ଆକାଶର ସ୍ରଷ୍ଟା । ସେ ତୁମମାନଙ୍କ ପାଇଁ ତୁମ ସମଜାତିରୁ (ନର ଓ ନାରୀର) ଯୋଡ଼ି ସୃଷ୍ଟି କଲେ ଏବଂ

فَاطِرُ السَّمَٰوَٰتِ وَالْأَرْضِ ۚ جَعَلَ لَكُم مِّنْ

ପଶୁମାନଙ୍କୁ ମଧ୍ୟ ଯୋଡ଼ି ରୂପେ ସୃଷ୍ଟି କଲେ । ଏହିପରି ସେ ତୁମମାନଙ୍କର ବଂଶ ବିସ୍ତାର କରନ୍ତି । (ବ୍ରହ୍ମାଣ୍ଡରେ) ତାଙ୍କ ସଦୃଶ କିଛି ନାହିଁ । ସେ ସର୍ବଶ୍ରୋତା ଓ ସର୍ବଜ୍ଞ । (୪୨/୧୧)

اَنْفُسِكُمْ اَزْوَاجًا وَّ مِنَ الْاَنْعَامِ اَزْوَاجًا ۚ
يَذْرَؤُكُمْ فِيْهِ ۗ لَيْسَ كَمِثْلِهٖ شَيْءٌ ۚ وَهُوَ السَّمِيْعُ
الْبَصِيْرُ ﴿١١﴾

## ୪୧୫. ଏହି ଧର୍ମ ଏକ ପ୍ରାଚୀନ ଧର୍ମ

ସେ ତୁମମାନଙ୍କ ପାଇଁ ସେଇ ଧର୍ମ ନିର୍ଦ୍ଧାରିତ କରିଛନ୍ତି, ଯେଉଁ ଧର୍ମ ସ୍ଥାପନା କରିବାର ଆଜ୍ଞା ସେ (ଈଶ୍ୱରଦୂତ) ନୂହଙ୍କୁ ଦେଇଥିଲେ ଏବଂ (ହେ ଈଶ୍ୱରଦୂତ!) ଯାହା ଆମ୍ଭେ ଏବେ ତୁମପ୍ରତି ଦୈବବାଣୀ କରିଅଛୁ ଏବଂ ଯାହାର (ସ୍ଥାପନାର) ଆଦେଶ ଆମ୍ଭେ (ଈଶ୍ୱରଦୂତ) ଇବ୍ରାହିମ, ମୁସା ଏବଂ ଇସା (ଯିଶୁ)ଙ୍କୁ ଦେଇ କହିଥିଲୁ ଯେ ଏହି ଧର୍ମ ପ୍ରତିଷ୍ଠା କର ଏବଂ ଏଥିରେ ବିଭାଜନ କରନାହିଁ । (୪୨/୧୩)

شَرَعَ لَكُمْ مِّنَ الدِّيْنِ مَا وَصّٰى بِهٖ نُوْحًا وَّ الَّذِيْٓ
اَوْحَيْنَآ اِلَيْكَ وَ مَا وَصَّيْنَا بِهٖٓ اِبْرٰهِيْمَ وَ
مُوْسٰى وَ عِيْسٰٓى اَنْ اَقِيْمُوا الدِّيْنَ وَلَا تَتَفَرَّقُوْا
فِيْهِ ۗ

## ୪୧୬. ସମସ୍ତେ ଧନୀ ହୋଇଥିଲେ ଧରାବକ୍ଷରେ ଉପଦ୍ରବ ହୁଅନ୍ତା

ଯଦି ଅଲ୍ଲାହ୍ ନିଜର ସବୁ ଭକ୍ତମାନଙ୍କ ପାଇଁ ସାଂସାରିକ ପ୍ରାବଧାନର ଭଣ୍ଡାର ଖୋଲି ଦିଅନ୍ତେ, ତେବେ ସେମାନେ ଧରାପୃଷ୍ଠରେ ଭାରି ଉପଦ୍ରବ କରନ୍ତେ, ମାତ୍ର ସେ (ଯାହାପାଇଁ) ଯାହା ଇଚ୍ଛା କରନ୍ତି, ଏକ ନିର୍ଦ୍ଦିଷ୍ଟ ମାତ୍ରାରେ ଦିଅନ୍ତି । ସେ ଅବଶ୍ୟ ନିଜ ଭକ୍ତମାନଙ୍କର ସବୁ ଖବର ରଖନ୍ତି ଏବଂ ସବୁକିଛି ଦେଖନ୍ତି । (୪୨/୨୭)

وَ لَوْ بَسَطَ اللّٰهُ الرِّزْقَ لِعِبَادِهٖ لَبَغَوْا فِي الْاَرْضِ
وَلٰكِنْ يُّنَزِّلُ بِقَدَرٍ مَّا يَشَآءُ ۗ اِنَّهٗ بِعِبَادِهٖ
خَبِيْرٌۢ بَصِيْرٌ ﴿٢٧﴾

## ୪୧୭. ତୁମର ସ୍ୱଅର୍ଜିତ କର୍ମ ଯୋଗୁଁ ବିପଦ ଆସେ

ତୁମମାନଙ୍କ ଉପରେ ଯେଉଁ ବିପଦ ଆସେ, ତାହା ତୁମମାନଙ୍କ ସ୍ୱଅର୍ଜିତ କର୍ମ ଯୋଗୁଁ ଆସିଥାଏ ଆଉ ସେ ତ (ଏମିତି) ବହୁତ (ପାପ) କ୍ଷମା କରିଦିଅନ୍ତି । ତୁମେମାନେ ଧରାପୃଷ୍ଠରୁ ତାଙ୍କ କବଳରୁ ଖସି ଯାଇପାରିବ ନାହିଁ । ଅଲ୍ଲାହଙ୍କ ବ୍ୟତୀତ, ନା କେହି ତୁମମାନଙ୍କର କର୍ତ୍ତାଧର୍ତ୍ତା ଅଛି ନା କେହି ରକ୍ଷକ ।

(୪୨/୩୦-୩୧)

وَ مَآ اَصَابَكُمْ مِّنْ مُّصِيْبَةٍ فَبِمَا كَسَبَتْ
اَيْدِيْكُمْ وَيَعْفُوْا عَنْ كَثِيْرٍ ﴿٣٠﴾ وَ مَآ اَنْتُمْ
بِمُعْجِزِيْنَ فِي الْاَرْضِ ۚ وَ مَا لَكُمْ مِّنْ دُوْنِ
اللّٰهِ مِنْ وَّلِيٍّ وَّلَا نَصِيْرٍ ﴿٣١﴾

### ୪୧୮. ସଦାଚାରୀମାନଙ୍କର ସ୍ୱଭାବ

(ହେ ମନୁଷ୍ୟଗଣ!) ତୁମମାନଙ୍କୁ ଯାହାକିଛି ଦିଆଯାଇଛି, ତାହା କେବଳ ସଂସାରରେ ଜୀବନ ନିର୍ବାହ କରିବାଲାଗି ଉଦ୍ଦିଷ୍ଟ ଏବଂ (ପରଲୋକର ଐଶ୍ୱର୍ଯ୍ୟ) ଯାହା ଅଲ୍ଲାଙ୍କ ପାଖରେ ଅଛି, ତାହା ଯଥେଷ୍ଟ ଭଲ ଓ ଚିରସ୍ଥାୟୀ । ଏଗୁଡ଼ିକ ସେଇମାନଙ୍କ ପାଇଁ ରହିଛି, ଯେଉଁମାନେ (ସତ୍ୟରେ) ବିଶ୍ୱାସ କରନ୍ତି, ନିଜ ପ୍ରଭୁଙ୍କ ଉପରେ ଭରସା ରଖନ୍ତି, ମହାପାପ ତଥା ଅଶ୍ଳୀଳ କର୍ମରୁ ବିରତ ରହନ୍ତି ଏବଂ ଯଦି ସେମାନଙ୍କୁ କ୍ରୋଧ ଆସେ, ତେବେ କ୍ଷମା କରିଦିଅନ୍ତି । ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଆଜ୍ଞା ମାନନ୍ତି, (ନିୟମିତ) ନମାଜ ସଂପାଦନ କରନ୍ତି, ପରସ୍ପର ସହ ପରାମର୍ଶ କରି ନିଜ କାର୍ଯ୍ୟ କରନ୍ତି ଏବଂ ଆମ୍ଭେ ଯାହାକିଛି ସେମାନଙ୍କୁ ଦେଇଛୁ, ସେଥିରୁ (ପୁଣ୍ୟକର୍ମରେ) ଖର୍ଚ୍ଚ କରନ୍ତି ଏବଂ ଯଦି ସେମାନଙ୍କ ପ୍ରତି ଅତ୍ୟାଚାର ହୁଏ, ତେବେ ପ୍ରତିରକ୍ଷା କରନ୍ତି । (୪୨/୩୬-୩୯)

فَمَآ أُوْتِيتُم مِّن شَيْءٍ فَمَتَاعُ الْحَيَوٰةِ الدُّنْيَا ۚ وَمَا
عِندَ اللَّهِ خَيْرٌ وَأَبْقَىٰ لِلَّذِينَ آمَنُوا وَعَلَىٰ رَبِّهِمْ
يَتَوَكَّلُونَ ﴿٣٦﴾ وَالَّذِينَ يَجْتَنِبُونَ كَبَٰٓئِرَ الْإِثْمِ
وَالْفَوَاحِشَ وَإِذَا مَا غَضِبُوا هُمْ يَغْفِرُونَ ﴿٣٧﴾
وَالَّذِينَ اسْتَجَابُوا لِرَبِّهِمْ وَأَقَامُوا الصَّلَوٰةَ وَ
أَمْرُهُمْ شُورَىٰ بَيْنَهُمْ وَمِمَّا رَزَقْنَٰهُمْ يُنفِقُونَ ﴿٣٨﴾
وَالَّذِينَ إِذَآ أَصَابَهُمُ الْبَغْيُ هُمْ يَنتَصِرُونَ ﴿٣٩﴾

### ୪୧୯. କ୍ଷମା କରିଦେବା ଏକ ସାହସିକ କାର୍ଯ୍ୟ

କୌଣସି ଦୁର୍ବ୍ୟବହାରର ପ୍ରତିବଦଳ ଠିକ୍ ସେହି ପରିମାଣରେ (ନିଆ ଯାଇପାରେ) ଯେଉଁ ପରିମାଣରେ ଅତ୍ୟାଚାର ହେଲା । ମାତ୍ର ଯିଏ କ୍ଷମା କରିଦିଏ ଆଉ ବୁଝାମଣା କରିନିଏ, ତେବେ ତାକୁ ପୁରସ୍କୃତ କରିବା ଅଲ୍ଲାହଙ୍କ ଦାୟିତ୍ୱ । ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ । ଯାହା ପ୍ରତି ଅତ୍ୟାଚାର ହେଲା, ଯଦି ସେ ଏହାର (ସମାନ) ପ୍ରତିବଦଳ ନିଏ, ତେବେ ଏଭଳି ଲୋକମାନଙ୍କର କିଛି ଦୋଷ ନାହିଁ । ଦୋଷ ସେଇମାନଙ୍କର, ଯେଉଁମାନେ ଲୋକଙ୍କ ପ୍ରତି ଅତ୍ୟାଚାର କରନ୍ତି ଏବଂ ଅନ୍ୟାୟରେ ଧରାପୃଷ୍ଠରେ ଉପଦ୍ରବ କରନ୍ତି । ଏଭଳି ଲୋକମାନଙ୍କୁ କଠୋର ଶାସ୍ତି ମିଳିବ । ଅବଶ୍ୟ ଯିଏ ସହିଯାଏ ଏବଂ ଅନ୍ୟକୁ କ୍ଷମା କରିଦିଏ, ତେବେ ଏହା ନିଶ୍ଚୟ ଏକ ସାହସିକ କାର୍ଯ୍ୟ ।

(୪୨/୪୦-୪୩)

وَجَزَٰٓؤُا سَيِّئَةٍ سَيِّئَةٌ مِّثْلُهَا ۖ فَمَنْ عَفَا وَأَصْلَحَ
فَأَجْرُهُ عَلَى اللَّهِ ۚ إِنَّهُ لَا يُحِبُّ الظَّٰلِمِينَ ﴿٤٠﴾
وَلَمَنِ انتَصَرَ بَعْدَ ظُلْمِهِ فَأُولَٰٓئِكَ مَا عَلَيْهِم مِّن
سَبِيلٍ ﴿٤١﴾ إِنَّمَا السَّبِيلُ عَلَى الَّذِينَ يَظْلِمُونَ
النَّاسَ وَيَبْغُونَ فِي الْأَرْضِ بِغَيْرِ الْحَقِّ ۚ
أُولَٰٓئِكَ لَهُمْ عَذَابٌ أَلِيمٌ ﴿٤٢﴾ وَلَمَن صَبَرَ وَ
غَفَرَ إِنَّ ذَٰلِكَ لَمِنْ عَزْمِ الْأُمُورِ ﴿٤٣﴾

### ୪୨୦. ସେ ହିଁ ସନ୍ତାନ ଦିଅନ୍ତି ବା ନିଃସନ୍ତାନ ରଖନ୍ତି

ଧରିତ୍ରୀ ଓ ଆକାଶରେ ଅଲ୍ଲାହଙ୍କର ହିଁ ଆଧିପତ୍ୟ । ସେ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି । ଯାହାକୁ ଚାହାନ୍ତି କନ୍ୟା ଦିଅନ୍ତି, ଯାହାକୁ ଚାହାନ୍ତି ପୁତ୍ର ଦିଅନ୍ତି କିମ୍ବା ଉଭୟ ଦିଅନ୍ତି ଏବଂ ଯାହାକୁ

لِلَّهِ مُلْكُ السَّمَٰوَٰتِ وَالْأَرْضِ ۚ يَخْلُقُ مَا
يَشَآءُ ۚ يَهَبُ لِمَن يَشَآءُ إِنَٰثًا وَيَهَبُ لِمَن يَشَآءُ

ଚାହାନ୍ତି ନିଃସନ୍ତାନ ରଖନ୍ତି । ସେ ସର୍ବଜ୍ଞ ଓ ସର୍ବକ୍ଷମ ।
(୪୨/୪୯-୫୦)

الذُّكُوْرَ ﴿٤٩﴾ اَوْ يُزَوِّجُهُمْ ذُكْرَانًا وَّ اِنَاثًا ۚ وَ يَجْعَلُ
مَنْ يَّشَآءُ عَقِيْمًا ۭ اِنَّهٗ عَلِيْمٌ قَدِيْرٌ ﴿٥٠﴾

## ୪୨୧. ଈଶ୍ୱର ପ୍ରତ୍ୟକ୍ଷ କଥାବାର୍ତ୍ତା କରନ୍ତି ନାହିଁ

କୌଣସି ମାନବର ଏହି ସାମର୍ଥ୍ୟ ନାହିଁ ଯେ ଅଲ୍ଲାହ୍ ତା' ସହିତ (ପ୍ରତ୍ୟକ୍ଷ) କଥାବାର୍ତ୍ତା କରନ୍ତୁ । ମାତ୍ର ସେ (କେବଳ) ଦୈବବାଣୀ ଅଥବା ଶୂନ୍ୟବାଣୀ ମାଧ୍ୟମରେ (ସମ୍ବୋଧନ କରିଥାଆନ୍ତି) କିମ୍ବା ଜଣେ ସ୍ୱର୍ଗଦୂତଙ୍କୁ ପଠାଇ ଦିଅନ୍ତି, ଯିଏ ଅଲ୍ଲାହଙ୍କ ଆଜ୍ଞା ଓ ଇଚ୍ଛା ଅନୁଯାୟୀ ଦୈବବାଣୀ କରନ୍ତି । ନିଃସନ୍ଦେହରେ ସେ ସର୍ବଶ୍ରେଷ୍ଠ ଓ ତତ୍ତ୍ୱଦର୍ଶୀ । (୪୨/୫୧)

وَ مَا كَانَ لِبَشَرٍ اَنْ يُّكَلِّمَهُ اللّٰهُ اِلَّا وَحْيًا اَوْ مِنْ
وَّرَآئِ حِجَابٍ اَوْ يُرْسِلَ رَسُوْلًا فَيُوْحِيَ بِاِذْنِهٖ مَا
يَشَآءُ ۭ اِنَّهٗ عَلِيٌّ حَكِيْمٌ ﴿٥١﴾

## ୪୨୨. ଧନୀ ଓ ଗରିବ ସୃଷ୍ଟିର ରହସ୍ୟ

ନିଜ ପ୍ରଭୁଙ୍କ ଅନୁଗ୍ରହକୁ କ'ଣ ସେଇମାନେ ବାଣ୍ଟିବେ? ସଂସାରରେ ସେମାନଙ୍କ ମଧ୍ୟରେ ଜୀବିକାର ଆବଣ୍ଟନ ମଧ୍ୟ ଆମ୍ଭେ ହିଁ କରିଛୁ । ସେମାନଙ୍କ ମଧ୍ୟରୁ କେତେକଙ୍କୁ ଆମ୍ଭେ ଅନ୍ୟ କେତେକଙ୍କ ଅପେକ୍ଷା (ଆର୍ଥିକ ଦୃଷ୍ଟିରୁ) ଉଚ୍ଚ ପାହ୍ୟା ଦେଇଛୁ, ଯେପରିକି ଜଣେ ଅନ୍ୟ ଜଣକର ସେବା ନେଇପାରିବ । ଯେଉଁ (ଧନ) ସେମାନେ ସଂଚୟ କରୁଛନ୍ତି, ତୁମ ପ୍ରଭୁଙ୍କ କୃପା ତାହାଠାରୁ ଯଥେଷ୍ଟ ଭଲ । ଯଦି ଏହାର ସମ୍ଭାବନା ନ ଥାଆନ୍ତା ଯେ ସବୁ ମଣିଷ ଏକା ବାଟ ଧରିବେ (ଅର୍ଥାତ୍ ନାସ୍ତିକ ହୋଇଯିବେ), ତେବେ ଯେଉଁମାନେ ଦୟାମୟଙ୍କୁ ମାନୁନାହାନ୍ତି, ଆମ୍ଭେ ସେମାନଙ୍କ ଘରର ଛାତଗୁଡ଼ିକୁ ରୂପାର କରିଦିଅନ୍ତୁ ଏବଂ ଯେଉଁ ସିଡ଼ିରେ ସେମାନେ ଚଢ଼ନ୍ତି, ସେଗୁଡ଼ିକୁ ମଧ୍ୟ । ସେମାନଙ୍କ ଦୁଆର ଓ ଚଉକିଗୁଡ଼ିକୁ ମଧ୍ୟ (ରୂପାର କରିଦିଅନ୍ତୁ) ଯେଉଁଥିରେ ସେମାନେ ତକିଆ ଦେଇ ବସନ୍ତି, ବରଂ, ସେସବୁକୁ ସୁନାର କରିଦିଅନ୍ତୁ । ଏଗୁଡ଼ିକ କିଛି ନୁହେଁ, କେବଳ ପାର୍ଥିବ ଜୀବନର ଭୋଗ୍ୟବସ୍ତୁ, ମାତ୍ର ତୁମ ପ୍ରଭୁଙ୍କ ଦୃଷ୍ଟିରେ ପରଲୋକ (ସ୍ୱର୍ଗସୁଖ) କେବଳ ସଦାଚାରୀମାନଙ୍କ (ଭୋଗିବା) ପାଇଁ ଅଛି । (୪୩/୩୨-୩୫)

اَهُمْ يَقْسِمُوْنَ رَحْمَتَ رَبِّكَ ۭ نَحْنُ قَسَمْنَا بَيْنَهُمْ
مَّعِيْشَتَهُمْ فِي الْحَيٰوةِ الدُّنْيَا وَ رَفَعْنَا بَعْضَهُمْ
فَوْقَ بَعْضٍ دَرَجٰتٍ لِّيَتَّخِذَ بَعْضُهُمْ بَعْضًا سُخْرِيًّا ۭ
وَرَحْمَتُ رَبِّكَ خَيْرٌ مِّمَّا يَجْمَعُوْنَ ﴿٣٢﴾ وَ لَوْ لَآ اَنْ
يَّكُوْنَ النَّاسُ اُمَّةً وَّاحِدَةً لَّجَعَلْنَا لِمَنْ يَّكْفُرُ
بِالرَّحْمٰنِ لِبُيُوْتِهِمْ سُقُفًا مِّنْ فِضَّةٍ وَّ مَعَارِجَ
عَلَيْهَا يَظْهَرُوْنَ ﴿٣٣﴾ وَلِبُيُوْتِهِمْ اَبْوَابًا وَّ سُرُرًا
عَلَيْهَا يَتَّكِـُٔوْنَ ﴿٣٤﴾ وَ زُخْرُفًا ۭ وَ اِنْ كُلُّ ذٰلِكَ
لَمَّا مَتَاعُ الْحَيٰوةِ الدُّنْيَا ۭ وَالْاٰخِرَةُ عِنْدَ رَبِّكَ
لِلْمُتَّقِيْنَ ﴿٣٥﴾

### ୪୨୩. ବ୍ରହ୍ମାଣ୍ଡର ସୃଷ୍ଟି ଖେଳ ନୁହେଁ

ଧରିତ୍ରୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଯାହାକିଛି ଅଛି, ସେଗୁଡ଼ିକୁ ଆମ୍ଭେ ଖେଳ ରୂପେ ସୃଷ୍ଟି କରିନାହୁଁ । ଆମ୍ଭେ ସେଗୁଡ଼ିକୁ ଉଚିତ ଲକ୍ଷ୍ୟରେ ସୃଷ୍ଟି କରିଛୁ । ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । (୪୪/୩୮-୩୯)

وَ مَا خَلَقْنَا السَّمٰوٰتِ وَ الْاَرْضَ وَ مَا بَيْنَهُمَا
لٰعِبِيْنَ ﴿٣٨﴾ مَا خَلَقْنٰهُمَآ اِلَّا بِالْحَقِّ وَلٰكِنَّ
اَكْثَرَهُمْ لَا يَعْلَمُوْنَ ﴿٣٩﴾

### ୪୨୪. କୁରଆନର ଉପଦେଶ ପାଳନ କର

ସର୍ବନାଶ ହେଉ (ସେହି) ମିଥ୍ୟାବାଦୀ ଓ ପାପିଷ୍ଠର, ଯାହା ପାଖରେ ଅଲ୍ଲାହଙ୍କର ବାଣୀ ପାଠ କରାଯାଏ, ମାତ୍ର ସେ ଏହାକୁ ଶୁଣିବା ପରେ ମଧ୍ୟ ଅହଂକାର କରି (ନିଜ ବିଚାରରେ) ଅଟଳ ରହେ, ସତେ ଯେପରି ସେ (ଆଦୌ) ଶୁଣିନାହିଁ । ଏଭଳି ବ୍ୟକ୍ତିକୁ ପୀଡ଼ାଦାୟକ ଶାସ୍ତିର ସୁସମାଚାର ଦେଇଦିଅ । (୪୫/୭-୮)

وَيْلٌ لِّكُلِّ اَفَّاكٍ اَثِيْمٍ ﴿٧﴾ يَّسْمَعُ اٰيٰتِ اللّٰهِ تُتْلٰى
عَلَيْهِ ثُمَّ يُصِرُّ مُسْتَكْبِرًا كَاَنْ لَّمْ يَسْمَعْهَا ۚ
فَبَشِّرْهُ بِعَذَابٍ اَلِيْمٍ ﴿٨﴾

### ୪୨୫. ପୁଣ୍ୟାତ୍ମା ଓ ପାପୀ ସମାନ ହେବେ ନାହିଁ

ଯେଉଁମାନେ ଦୁଷ୍କର୍ମ କରୁଛନ୍ତି, କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭେ ଏମାନଙ୍କୁ ସେହି ଲୋକମାନଙ୍କ ସହିତ ସମାନ କରିଦେବୁ ଯେଉଁମାନେ (ଆମ୍ଭପ୍ରତି) ଆସ୍ଥା ରଖିଲେ ଆଉ ସତକର୍ମ କଲେ, ଯାହାଫଳରେ କି ସମସ୍ତଙ୍କର ଜିଇଁବା ଓ ମରିବା ଏକା ପରି ହୋଇଯାଉ ? ସେମାନଙ୍କର କି କଦର୍ଯ୍ୟ ବିଚାର ! (୪୫/୨୧)

اَمْ حَسِبَ الَّذِيْنَ اجْتَرَحُوا السَّيِّاٰتِ اَنْ
نَّجْعَلَهُمْ كَالَّذِيْنَ اٰمَنُوْا وَ عَمِلُوا الصّٰلِحٰتِ ۙ
سَوَآءً مَّحْيَاهُمْ وَ مَمَاتُهُمْ ؕ سَآءَ مَا يَحْكُمُوْنَ ﴿٢١﴾

### ୪୨୬. ନାସ୍ତିକମାନଙ୍କ ପାଇଁ ସଂସାର ହିଁ ସବୁକିଛି

ସେମାନେ କହନ୍ତି "ଜୀବନରେ ଯାହା କିଛି ହୁଏ, ଏହି ସଂସାର ମଧ୍ୟରେ ହୁଏ । (ଏଇଠି) ଆମେ ଜିଇଁଥାଉ ଏବଂ (ଏଇଠି) ମରିଥାଉ । କେବଳ କାଳ ହିଁ ଆମର ବିନାଶ କରେ ।" ସେମାନଙ୍କର ଏ ବିଷୟରେ କୌଣସି ଜ୍ଞାନ ନାହିଁ । ସେମାନେ କେବଳ ଅନୁମାନ କରୁଛନ୍ତି । (୪୫/୨୪)

وَ قَالُوْا مَا هِيَ اِلَّا حَيَاتُنَا الدُّنْيَا نَمُوْتُ وَ نَحْيَا
وَ مَا يُهْلِكُنَآ اِلَّا الدَّهْرُ ۚ وَ مَا لَهُمْ بِذٰلِكَ مِنْ
عِلْمٍ ۚ اِنْ هُمْ اِلَّا يَظُنُّوْنَ ﴿٢٤﴾

### ୪୨୭. ଦିବ୍ୟଗ୍ରନ୍ଥ ସୃଷ୍ଟିପୂଜାର ଆଦେଶ ଦିଅନ୍ତିନାହିଁ

ସେମାନଙ୍କୁ କୁହ,"ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକ, କ'ଣ ସେମାନଙ୍କ ବିଷୟରେ ଥରେ ବିଚାର କରିଛ ? ମୋତେ ଟିକିଏ ଦେଖାଇଦିଅ ଯେ ସେମାନେ ପୃଥିବୀରେ କ'ଣ ସୃଷ୍ଟି କରିଛନ୍ତି କିମ୍ବା ଅନ୍ତରୀକ୍ଷର ନିର୍ମାଣରେ ସେମାନଙ୍କର କି ପ୍ରକାର ଭାଗ ଅଛି ? ଏଥିପୂର୍ବରୁ ଆସିଥିବା କୌଣସି ଗ୍ରନ୍ଥ ବା

قُلْ اَرَءَيْتُمْ مَّا تَدْعُوْنَ مِنْ دُوْنِ اللّٰهِ اَرُوْنِيْ
مَاذَا خَلَقُوْا مِنَ الْاَرْضِ اَمْ لَهُمْ شِرْكٌ فِي
السَّمٰوٰتِ ؕ اِيْتُوْنِيْ بِكِتٰبٍ مِّنْ قَبْلِ هٰذَآ اَوْ اَثٰرَةٍ

مِّنْ عِلْمٍ اِنْ كُنْتُمْ صٰدِقِيْنَ ﴿٤﴾

କୌଣସି ଜ୍ଞାନଭିତ୍ତିକ କଥା ଆଣି ମୋତେ ଦେଖାଅ, ଯଦି ତୁମେମାନେ (ପ୍ରକୃତରେ) ସତ୍ୟବାଦୀ ।" (୪୬/୪)

وَ مَنْ اَضَلُّ مِمَّنْ يَّدْعُوْا مِنْ دُوْنِ اللّٰهِ مَنْ لَّا يَسْتَجِيْبُ لَهٗۤ اِلٰى يَوْمِ الْقِيٰمَةِ وَ هُمْ عَنْ دُعَآئِهِمْ غٰفِلُوْنَ ﴿٥﴾

### ୪୨୮. କେବଳ ଅଲ୍ଲାହ ହିଁ ତୁମ ଡ଼ାକ ଶୁଣିପାରନ୍ତି

ସେହି ବ୍ୟକ୍ତି ଅପେକ୍ଷା ଅଧିକ ପଥଭ୍ରଷ୍ଟ ଆଉ କିଏ ହୋଇପାରେ, ଯିଏ ଅଲ୍ଲାହଙ୍କୁ ଛାଡ଼ି ସେହି (କଳ୍ପିତ ଉପାସ୍ୟ) ମାନଙ୍କୁ ଡାକେ, ଯେଉଁମାନେ ପ୍ରଳୟ ପର୍ଯ୍ୟନ୍ତ ମଧ୍ୟ ତା' ଡାକର ଉତ୍ତର ଦେଇ ପାରିବେ ନାହିଁ, ବରଂ ସେମାନେ ଏମାନଙ୍କ ପ୍ରାର୍ଥନା ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଅଛନ୍ତି । (୪୬/୫)

وَلِكُلٍّ دَرَجٰتٌ مِّمَّا عَمِلُوْا ۚ وَ لِيُوَفِّيَهُمْ اَعْمَالَهُمْ وَ هُمْ لَا يُظْلَمُوْنَ ﴿١٩﴾

### ୪୨୯. ସ୍ୱର୍ଗ ଓ ନର୍କରେ ବିଭିନ୍ନ ଶ୍ରେଣୀ ଅଛି

ପ୍ରତ୍ୟେକ ବ୍ୟକ୍ତି ପାଇଁ ତା' କର୍ମ ଅନୁଯାୟୀ (ସ୍ୱର୍ଗ ବା ନର୍କରେ) ବିଭିନ୍ନ ଶ୍ରେଣୀ ରହିଛି, ଯେପରିକି ପ୍ରଭୁ ସେମାନଙ୍କୁ ସେମାନଙ୍କ କର୍ମର ସଂପୂର୍ଣ୍ଣ ଫଳ ଦେବେ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ ହେବନାହିଁ । (୪୬/୧୯)

يٰۤاَيُّهَا الَّذِيْنَ اٰمَنُوْۤا اِنْ جَآءَكُمْ فَاسِقٌۢ بِنَبَاٍ فَتَبَيَّنُوْۤا اَنْ تُصِيْبُوْا قَوْمًۢا بِجَهَالَةٍ فَتُصْبِحُوْا عَلٰى مَا فَعَلْتُمْ نٰدِمِيْنَ ﴿٦﴾

### ୪୩୦. ଖବରର ସତ୍ୟତା ପରୀକ୍ଷା କର

ହେ ସଦ୍‌ବିଶ୍ୱାସୀମାନେ ! ଯଦି କେହି ଭ୍ରଷ୍ଟାଚାରୀ ବ୍ୟକ୍ତି ତୁମ ପାଖକୁ କୌଣସି ଖବର ଆଣେ, ତେବେ ତାହାର ସତ୍ୟତା ସଂପର୍କରେ (ଭଲ ରୂପେ) ଅନୁସନ୍ଧାନ କରିନିଅ, ଅନ୍ୟଥା ତୁମେମାନେ ନିଜ ଅଜାଣତରେ କିଛି ଲୋକଙ୍କର ଅନିଷ୍ଟ କରିଦେବ ଏବଂ ନିଜ କୃତକର୍ମ ପାଇଁ ଅନୁତାପ କରିବ । (୪୯/୬)

وَ اِنْ طَآئِفَتٰنِ مِنَ الْمُؤْمِنِيْنَ اقْتَتَلُوْا فَاَصْلِحُوْا بَيْنَهُمَا ۚ فَاِنْۢ بَغَتْ اِحْدٰىهُمَا عَلَى الْاُخْرٰى فَقَاتِلُوا الَّتِيْ تَبْغِيْ حَتّٰى تَفِيْٓءَ اِلٰۤى اَمْرِ اللّٰهِ ۚ فَاِنْ فَآءَتْ فَاَصْلِحُوْا بَيْنَهُمَا بِالْعَدْلِ وَ اَقْسِطُوْا ؕ اِنَّ اللّٰهَ يُحِبُّ الْمُقْسِطِيْنَ ﴿٩﴾ اِنَّمَا الْمُؤْمِنُوْنَ اِخْوَةٌ فَاَصْلِحُوْا بَيْنَ اَخَوَيْكُمْ

### ୪୩୧. ଲୋକମାନଙ୍କ ମଧ୍ୟରେ ବୁଝାମଣା କରିଦିଅ

ଯଦି ବିଶ୍ୱାସକାରୀମାନଙ୍କର ଦୁଇ ଗୋଷ୍ଠୀ ପରସ୍ପର ମଧ୍ୟରେ ଲଢ଼ନ୍ତି, ତେବେ ସେମାନଙ୍କ ମଧ୍ୟରେ ବୁଝାମଣା କରିଦିଅ । ଏହାପରେ ଯଦି କୌଣସି ଗୋଷ୍ଠୀ ଅନ୍ୟ ପ୍ରତି ଅତ୍ୟାଚାର କରେ, ତେବେ ଯେପର୍ଯ୍ୟନ୍ତ ସେମାନେ ଅଲ୍ଲାହଙ୍କ ଆଜ୍ଞା ନ ମାନିଛନ୍ତି, ତୁମେମାନେ ଅତ୍ୟାଚାର କରିଥିବା ଗୋଷ୍ଠୀର ମୁକାବିଲା କର । ଯଦି ସେମାନେ ଆଜ୍ଞା ପାଳନ କରନ୍ତି, ତେବେ ଉଭୟ ଗୋଷ୍ଠୀ ମଧ୍ୟରେ ନ୍ୟାୟସଂଗତ ଭାବରେ ବୁଝାମଣା କରିଦିଅ । (ସର୍ବଦା) ଉଚିତ ବିଚାର କର । ଅଲ୍ଲାହ୍ ନ୍ୟାୟ କରୁଥିବା ଲୋକମାନଙ୍କୁ ପ୍ରେମ କରନ୍ତି । ବିଶ୍ୱାସକାରୀମାନେ ତ ପରସ୍ପର ଭାଇଭାଇ । ସୁତରାଂ,

وَاتَّقُوا اللّٰهَ لَعَلَّكُمْ تُرْحَمُوْنَ ﴿١٠﴾

ନିଜ ଭାଇମାନଙ୍କ ମଧ୍ୟରେ ବୁଝାମଣା କରିଦିଅ ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ, ତା'ହେଲେ ତୁମମାନଙ୍କ ପ୍ରତି ତାଙ୍କର କୃପା ହେବ । (୪୯/୯-୧୦)

## ୪୩୨. କାହାରିକୁ ତାଚ୍ଛଲ୍ୟ ବା ବିଦ୍ରୂପ କରନାହିଁ

يٰۤاَيُّهَا الَّذِيْنَ اٰمَنُوْا لَا يَسْخَرْ قَوْمٌ مِّنْ قَوْمٍ عَسٰۤى اَنْ يَّكُوْنُوْا خَيْرًا مِّنْهُمْ وَلَا نِسَآءٌ مِّنْ نِّسَآءٍ عَسٰۤى اَنْ يَّكُنَّ خَيْرًا مِّنْهُنَّ ۚ وَلَا تَلْمِزُوْۤا اَنْفُسَكُمْ وَلَا تَنَابَزُوْا بِالْاَلْقَابِ ؕ بِئْسَ الِاسْمُ الْفُسُوْقُ بَعْدَ الْاِيْمَانِ ۚ وَمَنْ لَّمْ يَتُبْ فَاُولٰٓئِكَ هُمُ الظّٰلِمُوْنَ ﴿١١﴾

ହେ ବିଶ୍ୱାସକାରୀମାନେ! ପୁରୁଷମାନେ ଅନ୍ୟ ପୁରୁଷଙ୍କୁ ବିଦ୍ରୂପ ନ କରନ୍ତୁ, ହୁଏତ ସେମାନେ ଏମାନଙ୍କ ଅପେକ୍ଷା ଅଧିକ ଭଲ ହୋଇ ଥାଇପାରନ୍ତି । (ସେହିପରି) ନାରୀମାନେ ଅନ୍ୟ ନାରୀମାନଙ୍କୁ ବିଦ୍ରୂପ ନ କରନ୍ତୁ, ହୁଏତ ସେମାନେ ଏମାନଙ୍କ ଅପେକ୍ଷା ଅଧିକ ଭଲ ହୋଇଥାଇ ପାରନ୍ତି । ପରସ୍ପରକୁ ତାଚ୍ଛଲ୍ୟ କରନାହିଁ କିମ୍ବା ପରସ୍ପରକୁ ବ୍ୟଙ୍ଗାତ୍ମକ ନାମରେ ଡାକନାହିଁ । ମାନିନେବା ପରେ ଏଭଳି ପାପାଚାର ଅତ୍ୟନ୍ତ ନିନ୍ଦନୀୟ । ଯେଉଁମାନେ ଅନୁତାପ ନ କରନ୍ତି, ସେମାନେ ଦୁରାଚାରୀ । (୪୯/୧୧)

## ୪୩୩. ପରଛିଦ୍ର ଖୋଜନାହିଁ ବା ପରନିନ୍ଦା କରନାହିଁ

يٰۤاَيُّهَا الَّذِيْنَ اٰمَنُوا اجْتَنِبُوْا كَثِيْرًا مِّنَ الظَّنِّ ۫ اِنَّ بَعْضَ الظَّنِّ اِثْمٌ وَّلَا تَجَسَّسُوْا وَلَا يَغْتَبْ بَّعْضُكُمْ بَعْضًا ؕ

ହେ ସଦ୍‌ବିଶ୍ୱାସୀମାନେ! ମାତ୍ରାଧିକ ସନ୍ଦେହ କରିବାରୁ ବିରତ ରୁହ, କାରଣ ଅନେକ ସମୟରେ ସନ୍ଦେହ ପାପ ହୋଇଥାଏ । ଅନ୍ୟର ଦୋଷ ଅନ୍ୱେଷଣ କରନାହିଁ କିମ୍ବା ପରନିନ୍ଦା କରନାହିଁ । (୪୯/୧୨)

## ୪୩୪. ବଂଶ ଓ ସଂପ୍ରଦାୟ ସୃଷ୍ଟିର ରହସ୍ୟ

يٰۤاَيُّهَا النَّاسُ اِنَّا خَلَقْنٰكُمْ مِّنْ ذَكَرٍ وَّاُنْثٰى وَجَعَلْنٰكُمْ شُعُوْبًا وَّقَبَآئِلَ لِتَعَارَفُوْا ؕ اِنَّ اَكْرَمَكُمْ عِنْدَ اللّٰهِ اَتْقٰكُمْ ؕ اِنَّ اللّٰهَ عَلِيْمٌ خَبِيْرٌ ﴿١٣﴾

ହେ ମନୁଷ୍ୟଗଣ! ଆମ୍ଭେ ତୁମମାନଙ୍କୁ ଜଣେ ପୁରୁଷ ଓ ଜଣେ ନାରୀରୁ ସୃଷ୍ଟି କରିଛୁ ଏବଂ (କେବଳ) ପରସ୍ପରର ଚିହ୍ନଟ ପାଇଁ ତୁମମାନଙ୍କୁ ବିଭିନ୍ନ ସଂପ୍ରଦାୟ ଓ (ବିଭିନ୍ନ) ବଂଶରେ ବିଭକ୍ତ କରିଛୁ । ବାସ୍ତବରେ ଅଲ୍ଲାହଙ୍କ ନିକଟରେ ସର୍ବାଧିକ ସମ୍ମାନିତ ବ୍ୟକ୍ତି ସେଇ, ଯିଏ ତୁମମାନଙ୍କ ମଧ୍ୟରେ ସର୍ବାଧିକ ସଦାଚାରୀ । ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି । (୪୯/୧୩)

## ୪୩୫. ମୃତଶରୀରର ସଂପୂର୍ଣ୍ଣ ଅବକ୍ଷୟ ହୁଏନାହିଁ

بَلْ عَجِبُوْۤا اَنْ جَآءَهُمْ مُّنْذِرٌ مِّنْهُمْ فَقَالَ الْكٰفِرُوْنَ هٰذَا شَیْءٌ عَجِيْبٌ ﴿٢﴾ ءَاِذَا مِتْنَا

ମାତ୍ର ଏଇକଥା ସେମାନଙ୍କୁ ଭାରି ବିସ୍ମିତ କରିଛି ଯେ ସେମାନଙ୍କ ପାଖକୁ ସେଇମାନଙ୍କ ମଧ୍ୟରୁ ଜଣେ ସଚେତକ ଆସିଗଲେ । ସୁତରାଂ, ଅବିଶ୍ୱାସ କରୁଥିବା ଲୋକମାନେ କହି ଉଠିଲେ, "ଏହା

ତ ବିଚିତ୍ର କଥା!" କ'ଣ (ସତରେ) ଯେତେବେଳେ ଆମେ ମରିସାରି ମାଟି ହୋଇଯିବୁ, ତା'ପରେ ମଧ୍ୟ (ପୁନର୍ଜୀବିତ ହେବୁ?) ଏଭଳି ପୁନର୍ଜୀବନ (କଥା) ଆମ ବୁଦ୍ଧିର ବାହାରେ।" ଧରିତ୍ରୀ ସେମାନଙ୍କ ମରଶରୀରକୁ କେତେ କ୍ଷୟ କରେ, ତାହା ଆମ୍ଭଙ୍କୁ ଜଣା ଏବଂ ଆମ୍ଭ ପାଖରେ ଥିବା ଏକ ଗ୍ରନ୍ଥରେ ସବୁକିଛି (ଲିଖିତ ରୂପେ) ସୁରକ୍ଷିତ ହୋଇ ରହିଛି । (୫୦/୨-୪)

وَكُنَّا تُرَابًا ۚ ذٰلِكَ رَجْعٌۢ بَعِيْدٌ ﴿٣﴾ قَدْ عَلِمْنَا مَا تَنْقُصُ الْاَرْضُ مِنْهُمْ ۚ وَعِنْدَنَا كِتٰبٌ حَفِيْظٌ ﴿٤﴾

**୪୩୬. ତୁମେ ଯାହା ଚିନ୍ତା କର, ସେ ଜାଣନ୍ତି**

ଆମ୍ଭେ ହିଁ ମନୁଷ୍ୟକୁ ସୃଷ୍ଟି କରିଛୁ ଏବଂ ତା'ମନରେ ଯେଉଁ ଭାବନା ଉତ୍ପନ୍ନ ହୁଏ, ତାହା ଆମ୍ଭେ ଭଲରୂପେ ଜାଣୁ । ଆମ୍ଭେ ତା' କଣ୍ଠର ଧମନୀଠାରୁ ମଧ୍ୟ ତା'ର ଅଧିକ ନିକଟତର । (୫୦/୧୬)

وَلَقَدْ خَلَقْنَا الْاِنْسَانَ وَنَعْلَمُ مَا تُوَسْوِسُ بِهٖ نَفْسُهٗ ۖ وَنَحْنُ اَقْرَبُ اِلَيْهِ مِنْ حَبْلِ الْوَرِيْدِ ﴿١٦﴾

**୪୩୭. ଧର୍ମ ବିଷୟରେ କାହାରିକୁ ବାଧ କରନାହିଁ**

ସେମାନେ ଯାହା କହନ୍ତି, ଆମ୍ଭେ ଖୁବ୍ ଜାଣୁ । (ହେ ମୁହମ୍ମଦ!) ସେମାନଙ୍କୁ ବାଧ କରି ମନାଇବା ତୁମର କାର୍ଯ୍ୟ ନୁହେଁ । ସୁତରାଂ, ଯେଉଁମାନେ ମୋ'ଚେତାବନୀ ପ୍ରତି ଭୟ କରନ୍ତି, ସେମାନଙ୍କୁ ଏହି କୁରଆନ ଦ୍ୱାରା ଉପଦେଶ ଦେଉଥାଅ । (୫୦/୪୫)

نَحْنُ اَعْلَمُ بِمَا يَقُوْلُوْنَ وَمَآ اَنْتَ عَلَيْهِمْ بِجَبَّارٍ ۫ فَذَكِّرْ بِالْقُرْاٰنِ مَنْ يَّخَافُ وَعِيْدِ ﴿٤٥﴾

**୪୩୮. ଧାର୍ମିକମାନେ ବ୍ରାହ୍ମମୁହୂର୍ତ୍ତରେ ପ୍ରାର୍ଥନା କରନ୍ତି**

ସଦାଚାରୀମାନେ ସ୍ୱର୍ଗୋଦ୍ୟାନ ଓ ଝରଣା ମଧ୍ୟରେ (ଆମୋଦରତ) ଥିବେ । ସେମାନଙ୍କ ପ୍ରଭୁ ଯାହା ପ୍ରଦାନ କରୁଥିବେ, ତାହାକୁ ସେମାନେ (ଆନନ୍ଦରେ) ଗ୍ରହଣ କରୁଥିବେ । ଏଥିପୂର୍ବରୁ (ସଂସାରରେ) ଏହି ଲୋକମାନେ ସତକର୍ମ କରୁଥିଲେ । ରାତିରେ ଅଳ୍ପ ସମୟ ଶୋଉଥିଲେ ଏବଂ ବ୍ରାହ୍ମମୁହୂର୍ତ୍ତରେ (ଈଶ୍ୱରଙ୍କ ନିକଟରେ) କ୍ଷମାପ୍ରାର୍ଥନା କରୁଥିଲେ । (୫୧/୧୫-୧୮)

اِنَّ الْمُتَّقِيْنَ فِيْ جَنّٰتٍ وَّعُيُوْنٍ ﴿١٥﴾ اٰخِذِيْنَ مَآ اٰتٰىهُمْ رَبُّهُمْ ۭ اِنَّهُمْ كَانُوْا قَبْلَ ذٰلِكَ مُحْسِنِيْنَ ﴿١٦﴾ كَانُوْا قَلِيْلًا مِّنَ الَّيْلِ مَا يَهْجَعُوْنَ ﴿١٧﴾ وَبِالْاَسْحَارِ هُمْ يَسْتَغْفِرُوْنَ ﴿١٨﴾

**୪୩୯.ଧାର୍ମିକଙ୍କ ଧନରେ ଦୀନ-ଦୁଃଖୀଙ୍କ ଭାଗ ଥାଏ**

ସେମାନଙ୍କ ଧନରେ ଭିକ୍ଷୁକ ଏବଂ (ଭିକ୍ଷା କରୁ ନଥିବା) ଦରିଦ୍ରମାନଙ୍କର ମଧ୍ୟ ଭାଗ ରହୁଥିଲା । (୫୧/୧୯)

وَفِيْٓ اَمْوَالِهِمْ حَقٌّ لِّلسَّاۤىِٕلِ وَالْمَحْرُوْمِ ﴿١٩﴾

**୪୪୦. ପ୍ରତ୍ୟେକ ସୃଷ୍ଟିକୁ ଯୋଡ଼ି ରୂପେ ଗଢ଼ାଯାଇଛି**

ଆମ୍ଭେ ପ୍ରତ୍ୟେକ ଜୀବଜଡ଼କୁ ଯୋଡ଼ି ରୂପେ ସୃଷ୍ଟି କରିଛୁ । ସମ୍ଭବତଃ ତୁମେମାନେ (ଏଥିପ୍ରତି) ଧ୍ୟାନ ଦେବ । (୫୧/୪୯)

وَمِنْ كُلِّ شَيْءٍ خَلَقْنَا زَوْجَيْنِ لَعَلَّكُمْ تَذَكَّرُوْنَ ﴿٤٩﴾

### ୪୪୧. ପ୍ରଭୁଙ୍କ ସେବା ପାଇଁ ମଣିଷର ସୃଷ୍ଟି

وَمَا خَلَقْتُ الْجِنَّ وَالْإِنْسَ إِلَّا لِيَعْبُدُونِ ﴿٥٦﴾ مَا أُرِيدُ مِنْهُمْ مِنْ رِزْقٍ وَمَا أُرِيدُ أَنْ يُطْعِمُونِ ﴿٥٧﴾ إِنَّ اللَّهَ هُوَ الرَّزَّاقُ ذُو الْقُوَّةِ الْمَتِينُ ﴿٥٨﴾

ମୁଁ ଦାନବ (ଜିନ୍ନ) ଓ ମାନବ ସମୁଦାୟକୁ ଏହି କାରଣରୁ ସୃଷ୍ଟି କରିଛି ଯେ ସେମାନେ (ମୋ' ବିଧାନ ଅନୁଯାୟୀ) ମୋ'ର ସେବା କରନ୍ତୁ । ମୁଁ ସେମାନଙ୍କଠାରୁ ଆହାର ମାଗୁନାହିଁ ବା ଏହା ଚାହୁଁନାହିଁ ଯେ ସେମାନେ ମୋତେ ଖାଇବାକୁ ଦିଅନ୍ତୁ । ଅଲ୍ଲାହ୍ ତ (ସମସ୍ତଙ୍କର) ଆହାରଦାତା – ସେ ମହାକ୍ଷମତାଶାଳୀ ଓ ସର୍ବଶକ୍ତିମାନ । (୫୧/୫୬-୫୮)

### ୪୪୨. କ'ଣ ମଣିଷ ନିଜେ ନିଜକୁ ସୃଷ୍ଟି କରିଛି ?

أَمْ خُلِقُوا مِنْ غَيْرِ شَيْءٍ أَمْ هُمُ الْخَالِقُونَ ﴿٣٥﴾ أَمْ خَلَقُوا السَّمَاوَاتِ وَالْأَرْضَ ۚ بَلْ لَا يُوقِنُونَ ﴿٣٦﴾

କ'ଣ ସେମାନେ (କୌଣସି ସ୍ରଷ୍ଟା ବିନା) ଆପେ ଆପେ ସୃଷ୍ଟି ହୋଇଗଲେ ? ଅଥବା ସେମାନେ ନିଜେ ନିଜକୁ ସୃଷ୍ଟି କଲେ ? କ'ଣ ଧରିତ୍ରୀ ଓ ଅନ୍ତରୀକ୍ଷକୁ ସେଇମାନେ ସୃଷ୍ଟି କରିଛନ୍ତି ? ପ୍ରକୃତ କଥା ହେଉଛି ଯେ ସେମାନେ ବିଶ୍ୱାସ କରିବା ଲୋକ ନୁହନ୍ତି ।
(୫୨/୩୫-୩୬)

### ୪୪୩. ବଡ଼ ଧରଣର ପାପରୁ ବିରତ ରହିଲେ ସାମାନ୍ୟ ଦୋଷତ୍ରୁଟି କ୍ଷମା କରିଦିଆଯିବ

الَّذِينَ يَجْتَنِبُونَ كَبَائِرَ الْإِثْمِ وَالْفَوَاحِشَ إِلَّا اللَّمَمَ ۚ إِنَّ رَبَّكَ وَاسِعُ الْمَغْفِرَةِ ۚ هُوَ أَعْلَمُ بِكُمْ إِذْ أَنْشَأَكُمْ مِنَ الْأَرْضِ وَإِذْ أَنْتُمْ أَجِنَّةٌ فِي بُطُونِ أُمَّهَاتِكُمْ ۖ فَلَا تُزَكُّوا أَنْفُسَكُمْ ۖ هُوَ أَعْلَمُ بِمَنِ اتَّقَىٰ ﴿٣٢﴾

ଯେଉଁମାନେ ସାମାନ୍ୟ ଦୋଷତ୍ରୁଟି ବ୍ୟତୀତ, ବଡ଼ବଡ଼ ପାପ ତଥା ଅଶ୍ଳୀଳ କର୍ମରୁ ବିରତ ରହନ୍ତି, (ସେମାନେ ଜାଣି ରଖନ୍ତୁ ଯେ) ତୁମ ପ୍ରଭୁ ଅତ୍ୟନ୍ତ କ୍ଷମାଶୀଳ । ସେ ତୁମମାନଙ୍କୁ (ସେହି ସମୟରୁ) ଭଲରୂପେ ଜାଣନ୍ତି ଯେତେବେଳେ ସେ ତୁମମାନଙ୍କୁ ମାଟିରୁ ସୃଷ୍ଟି କରିଥିଲେ ଆଉ ଯେତେବେଳେ ତୁମେମାନେ ମାତୃଗର୍ଭରେ (ଏକ) ଭ୍ରୂଣ ରୂପେ ଥିଲ । ତେଣୁ, ନିଜକୁ ପବିତ୍ର ମନେ କରନାହିଁ । ସଦାଚାରୀ କିଏ, ସେ ଭଲରୂପେ ଜାଣନ୍ତି । (୫୩/୩୨)

### ୪୪୪.ସେ ହିଁ ହସାଇ ଥାଆନ୍ତି ଏବଂ କନ୍ଦାଇ ଥାଆନ୍ତି

وَأَنَّهُ هُوَ أَضْحَكَ وَأَبْكَىٰ ﴿٤٣﴾ وَأَنَّهُ هُوَ أَمَاتَ وَأَحْيَا ﴿٤٤﴾ وَأَنَّهُ خَلَقَ الزَّوْجَيْنِ الذَّكَرَ وَالْأُنْثَىٰ ﴿٤٥﴾ مِنْ نُطْفَةٍ إِذَا تُمْنَىٰ ﴿٤٦﴾ وَأَنَّ عَلَيْهِ النَّشْأَةَ الْأُخْرَىٰ ﴿٤٧﴾

ସେ ହିଁ ହସାଇ ଥାଆନ୍ତି ଏବଂ କନ୍ଦାଇ ଥାଆନ୍ତି ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଏବଂ ଜୀବିତ କରନ୍ତି । ସେ ହିଁ (ଗର୍ଭାଶୟରେ) ନିକ୍ଷିପ୍ତ ହେଉଥିବା ଏକ ଶୁକ୍ରବିନ୍ଦୁରୁ (ନର ଓ ନାରୀର) ଯୋଡ଼ି ସୃଷ୍ଟି କଲେ ଏବଂ ପୁନର୍ବାର ଜୀବିତ କରିବା ତାଙ୍କରି ଦାୟିତ୍ୱ ।
(୫୩/୪୩-୪୭)

**୪୪୫. କୁରଆନର ଶିକ୍ଷା ଗ୍ରହଣ କର**

ଆମ୍ଭେ କୁରଆନକୁ ଶିଖିବା ପାଇଁ ସହଜ କରି ଦେଇଛୁ । କେହି ଅଛି, ଯିଏ ଏହାର ଶିକ୍ଷା ଗ୍ରହଣ କରିବ ? (୫୪/୧୭)

وَلَقَدْ يَسَّرْنَا الْقُرْاٰنَ لِلذِّكْرِ فَهَلْ مِنْ مُّدَّكِرٍ ﴿١٧﴾

**୪୪୬. ସେ ନିତ୍ୟ ନୂତନ ମହିମାରେ ମଣ୍ଡିତ**

ପୃଥିବୀ ଓ ଅନ୍ତରୀକ୍ଷରେ ଯେଉଁମାନେ ଅଛନ୍ତି, ସମସ୍ତେ ତାଙ୍କୁ ହିଁ ମାଗନ୍ତି । ସେ ନିତ୍ୟ ନୂତନ ମହିମାରେ ମଣ୍ଡିତ । ତୁମ ପ୍ରଭୁଙ୍କର କେଉଁ ଅନୁଗ୍ରହକୁ ତୁମେ ଅସ୍ୱୀକାର କରିବ ? (୫୫/୨୯-୩୦)

يَسْـَٔلُهٗ مَنْ فِى السَّمٰوٰتِ وَالْاَرْضِ ؕ كُلَّ يَوْمٍ هُوَ
فِىْ شَاْنٍ ﴿٢٩﴾ فَبِاَىِّ اٰلَاۤءِ رَبِّكُمَا تُكَذِّبٰنِ ﴿٣٠﴾

**୪୪୭. ଗର୍ଭାଶୟ ମଧ୍ୟରେ କିଏ ଶିଶୁ ଗଢ଼େ ?**

ଆମ୍ଭେ ହିଁ ତ ତୁମମାନଙ୍କୁ ସୃଷ୍ଟି କରିଛୁ ? ପୁଣି କାହିଁକି (ପୁନର୍ଜୀବିତ ହେବାକୁ) ସତ ମାନୁନାହିଁ ? ଆଚ୍ଛା କହିଲ, ଯେଉଁ ଶୁକ୍ର ତୁମେ (ନାରୀ ଗର୍ଭ ମଧ୍ୟରେ) ଛାଡ଼ିଥାଅ, ସେଥିରୁ ତୁମେମାନେ (ମନୁଷ୍ୟ) ଗଢ଼ ବା ଆମ୍ଭେ ଗଢୁ ? (୫୬/୫୭-୫୯)

نَحْنُ خَلَقْنٰكُمْ فَلَوْلَا تُصَدِّقُوْنَ ﴿٥٧﴾ اَفَرَءَيْتُمْ مَّا
تُمْنُوْنَ ﴿٥٨﴾ ءَاَنْتُمْ تَخْلُقُوْنَهٗۤ اَمْ نَحْنُ الْخٰلِقُوْنَ ﴿٥٩﴾

**୪୪୮. ବୀଜରୁ ଶସ୍ୟ କିଏ ବାହାର କରେ ?**

କ'ଣ ସେହି ବୀଜକୁ ଲକ୍ଷ୍ୟ କରିଛ ଯାହାକୁ ତୁମେମାନେ କ୍ଷେତରେ ବୁଣ ? ସେଥିରୁ ତୁମେମାନେ ଫସଲ ଉତ୍ପନ୍ନ କର ବା ଆମ୍ଭେ କରୁ ? ଯଦି ଆମ୍ଭେ ଇଚ୍ଛା କରିବୁ ତେବେ ତାକୁ ଭୁସିରେ ପରିଣତ କରିଦେବୁ ଏବଂ ତୁମେମାନେ ଚକିତ ରହିଯିବ (ଏବଂ କହିବ) "ଆମେ ତ ଋଣରେ ବୁଡ଼ିଗଲୁ, ବରଂ (କହିବ ଯେ) ସର୍ବସ୍ୱାନ୍ତ ହୋଇଗଲୁ ।" (୫୬/୬୩-୬୭)

اَفَرَءَيْتُمْ مَّا تَحْرُثُوْنَ ﴿٦٣﴾ ءَاَنْتُمْ تَزْرَعُوْنَهٗۤ اَمْ
نَحْنُ الزّٰرِعُوْنَ ﴿٦٤﴾ لَوْ نَشَآءُ لَجَعَلْنٰهُ حُطَامًا
فَظَلْتُمْ تَفَكَّهُوْنَ ﴿٦٥﴾ اِنَّا لَمُغْرَمُوْنَ ﴿٦٦﴾ بَلْ نَحْنُ
مَحْرُوْمُوْنَ ﴿٦٧﴾

**୪୪୯. କୁରଆନକୁ ହାଲୁକା ଭାବରେ ନିଅନାହିଁ**

ଏହା ଏକ ଗୌରବମୟ କୁରଆନ - ଏକ ସୁରକ୍ଷିତ ଗ୍ରନ୍ଥରେ (ଲିପିବଦ୍ଧ) । ଏହାକୁ କେବଳ ସେଇମାନେ ସ୍ପର୍ଶ କରନ୍ତି ଯେଉଁମାନେ ପବିତ୍ର । ଏହାକୁ ଜଗତପାଳକଙ୍କ ଦ୍ୱାରା ଅବତରଣ କରାଯାଇଛି । କ'ଣ ତୁମେମାନେ ଏହି ବାଣୀକୁ ହାଲୁକା ଭାବରେ ନେଉଛ ? (୫୬/୭୭-୮୧)

اِنَّهٗ لَقُرْاٰنٌ كَرِيْمٌ ﴿٧٧﴾ فِىْ كِتٰبٍ مَّكْنُوْنٍ ﴿٧٨﴾ لَّا
يَمَسُّهٗۤ اِلَّا الْمُطَهَّرُوْنَ ﴿٧٩﴾ تَنْزِيْلٌ مِّنْ رَّبِّ
الْعٰلَمِيْنَ ﴿٨٠﴾ اَفَبِهٰذَا الْحَدِيْثِ اَنْتُمْ
مُّدْهِنُوْنَ ﴿٨١﴾

**୪୫୦. ସେ ଆଦି ଓ ଅନ୍ତ ଏବଂ ବ୍ୟକ୍ତ ଓ ଅବ୍ୟକ୍ତ**

ସେ ହିଁ ଆଦି ଏବଂ ସେ ହିଁ ଅନ୍ତ, ସେ ହିଁ ପ୍ରକାଶମାନ ଏବଂ ସେ ହିଁ ଗୁପ୍ତ ଏବଂ ସେ ସବୁକଥା ଜାଣନ୍ତି । (୫୭/୩)

هُوَ الْاَوَّلُ وَالْاٰخِرُ وَالظَّاهِرُ وَالْبَاطِنُ ۚ وَهُوَ
بِكُلِّ شَىْءٍ عَلِيْمٌ ﴿٣﴾

**୪୫୧. ସେ ସବୁବେଳେ ତୁମ ସହିତ ଥାଆନ୍ତି**

هُوَ الَّذِىْ خَلَقَ السَّمٰوٰتِ وَالْاَرْضَ فِىْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ ؕ يَعْلَمُ مَا يَلِجُ فِى الْاَرْضِ وَمَا يَخْرُجُ مِنْهَا وَمَا يَنْزِلُ مِنَ السَّمَآءِ وَمَا يَعْرُجُ فِيْهَا ؕ وَهُوَ مَعَكُمْ اَيْنَ مَا كُنْتُمْ ؕ وَاللّٰهُ بِمَا تَعْمَلُوْنَ بَصِيْرٌ ﴿٤﴾

ସେ ହିଁ ଧରିତ୍ରୀ ଓ ଆକାଶକୁ ଛଅ ଦିନରେ ରଚନା କଲେ ଏବଂ ତା'ପରେ ନିଜ ସିଂହାସନରେ ଅଧିଷ୍ଠିତ ହେଲେ । ଯାହା ଧରିତ୍ରୀ ମଧ୍ୟରେ ପ୍ରବେଶ କରେ ଏବଂ ଯାହା ଏଥିରୁ ବାହାରି ଯାଏ, ଯାହା ଆକାଶରୁ ତଳକୁ ଆସେ ଏବଂ ଯାହା ତା'ଉପରକୁ ଉଠିଥାଏ, ସବୁ ତାଙ୍କୁ ଜଣା । ତୁମେମାନେ ଯେଉଁଠି ଥାଅନା କାହିଁକି, ସେ ତୁମମାନଙ୍କ ସହିତ ଥାଆନ୍ତି ଏବଂ ତୁମେମାନେ ଯାହାକିଛି କର, ସେ ଦେଖୁଥାଆନ୍ତି । (୫୭/୪)

**୪୫୨. ପ୍ରଭୁଙ୍କୁ ସ୍ମରଣ କରିବାର ବେଳ ଆସିନାହିଁ ?**

اَلَمْ يَاْنِ لِلَّذِيْنَ اٰمَنُوْٓا اَنْ تَخْشَعَ قُلُوْبُهُمْ لِذِكْرِ اللّٰهِ وَمَا نَزَلَ مِنَ الْحَقِّ ۙ

କ'ଣ ବିଶ୍ୱାସ ରଖିଥିବା ଲୋକମାନଙ୍କ ପାଇଁ ଏବେ ମଧ୍ୟ ଏହାର ବେଳ ଆସିନାହିଁ ଯେ  ସେମାନଙ୍କ ହୃଦୟ ଅଲ୍ଲାହଙ୍କ ସ୍ମରଣ-ଚିନ୍ତନ ପାଇଁ ଏବଂ ସେମାନଙ୍କ ପାଖକୁ ଆସିଥିବା ସତ୍ୟ (କୁରଆନ) ପାଇଁ ତରଳି ଯାଉ ? (୫୭/୧୬)

**୪୫୩. ପାର୍ଥିବ ଜୀବନର ବାସ୍ତବତା**

اِعْلَمُوْٓا اَنَّمَا الْحَيٰوةُ الدُّنْيَا لَعِبٌ وَّلَهْوٌ وَّزِيْنَةٌ وَّتَفَاخُرٌۢ بَيْنَكُمْ وَتَكَاثُرٌ فِى الْاَمْوَالِ وَالْاَوْلَادِ ؕ كَمَثَلِ غَيْثٍ اَعْجَبَ الْكُفَّارَ نَبَاتُهٗ ثُمَّ يَهِيْجُ فَتَرٰىهُ مُصْفَرًّا ثُمَّ يَكُوْنُ حُطَامًا ؕ وَفِى الْاٰخِرَةِ عَذَابٌ شَدِيْدٌ ۙ وَّمَغْفِرَةٌ مِّنَ اللّٰهِ وَرِضْوَانٌ ؕ وَمَا الْحَيٰوةُ الدُّنْيَآ اِلَّا مَتَاعُ الْغُرُوْرِ ﴿٢٠﴾

ଭଲ ରୂପେ ଜାଣିନିଅ ଯେ ପାର୍ଥିବ ଜୀବନ ହେଉଛି କେବଳ ଏକ ଖେଳ-ତାମସା, ଚାକଚକ୍ୟ, ପରସ୍ପର ମଧ୍ୟରେ ତୁମମାନଙ୍କର ବଡ଼ିମା ପ୍ରଦର୍ଶନ ଏବଂ ଧନସଂପତ୍ତି ଓ ସନ୍ତାନ-ସନ୍ତତିରେ ପରସ୍ପରକୁ ଟପିଯିବାର ପ୍ରୟାସ । ଏହା ସେହିପରି, ଯେପରି ବର୍ଷା ହେଲେ (କ୍ଷେତରେ ଲହଲହ ହେଉଥିବା) ଫସଲ ଚାଷୀର ମନ ମୁଗ୍ଧ କରିଦିଏ ଏବଂ ପୁଣି (ମରୁଡ଼ି ପଡ଼ିଗଲେ) ତୁମେମାନେ ତାହାକୁ ଶୁଖି ହଳଦିଆ ହୋଇ ଯିବାର ଦେଖ । ଏହାପରେ ତାହା ଅଗାଡ଼ି ପାଲଟିଯାଏ । ପରଲୋକରେ (ଦୁରାଚାରୀମାନେ) କଠୋର ଶାସ୍ତି ଭୋଗିବେ ଏବଂ (ସଦାଚାରୀମାନେ) ଅଲ୍ଲାହଙ୍କର କ୍ଷମା ଓ ପ୍ରସନ୍ନତା ଲାଭ କରିବେ । (ଜାଣିରଖ) ସାଂସାରିକ ଜୀବନର ସୁଖସମ୍ଭୋଗ କେବଳ ଏକ ମାୟାଭରା ଉପଲବ୍ଧି । (୫୭/୨୦)

**୪୫୪. କିଛି ହରାଇଲେ ଦୁଃଖ କରନାହିଁ ବା କିଛି ପାଇଲେ ଗର୍ବ କରନାହିଁ**

مَآ اَصَابَ مِنْ مُّصِيْبَةٍ فِى الْاَرْضِ وَلَا فِىْٓ اَنْفُسِكُمْ اِلَّا فِىْ كِتٰبٍ مِّنْ قَبْلِ اَنْ نَّبْرَاَهَا ؕ اِنَّ

ପୃଥିବୀରେ ଯାହା ବିପତ୍ତି ଆସେ ବା ତୁମମାନଙ୍କ ଉପରେ ଯାହା ବିପଦ ପଡ଼େ, ତାହା ଘଟିବା ପୂର୍ବରୁ ଏକ ଗ୍ରନ୍ଥରେ ଲିପିବଦ୍ଧ ହୋଇ

ରହିଥାଏ । ଏହା ଅଲ୍ଲାହଙ୍କ ପାଇଁ ଏକ ସାଧାରଣ କଥା । ଏହା ଏଇଥିପାଇଁ କୁହାଗଲା ଯେ, ତୁମେମାନେ ଯାହାକିଛି ହରାଅ, ତା' ପାଇଁ ଦୁଃଖ କରନା କିମ୍ବା ଯାହା ସେ ତୁମମାନଙ୍କୁ ଦିଅନ୍ତି, ତା' ଯୋଗୁଁ ଗର୍ବ କରନା । ଅଲ୍ଲାହ କୌଣସି ଅହଂକାରୀ ଓ ଆତ୍ମଗର୍ବୀକୁ ପସନ୍ଦ କରନ୍ତି ନାହିଁ । (୫୭/୨୨-୨୩)

ذٰلِكَ عَلَى اللّٰهِ يَسِيْرٌ ۝٢٢ لِّكَيْلَا تَأْسَوْا عَلٰى مَا فَاتَكُمْ وَلَا تَفْرَحُوْا بِمَآ اٰتٰىكُمْ ۗ وَاللّٰهُ لَا يُحِبُّ كُلَّ مُخْتَالٍ فَخُوْرِۨ ۝٢٣

## ୪୫୫. ପରଲୋକ ପ୍ରତି ସାବଧାନ ରୁହ

ହେ ସଦବିଶ୍ୱାସୀମାନେ ! ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ପ୍ରତ୍ୟେକ ବ୍ୟକ୍ତି ଏହା ଦେଖିବା ଉଚିତ ଯେ ସେ ଭବିଷ୍ୟତ (ଅର୍ଥାତ୍ ପରଲୋକ) ପାଇଁ କି ପୁଣ୍ୟ ଅର୍ଜନ କରି ପଠାଇଛି । ଅଲ୍ଲାହଙ୍କୁ ଭୟ କରୁଥାଅ । ତୁମେମାନେ ଯାହା କରୁଛ, ଅଲ୍ଲାହ ଅବଶ୍ୟ ତାହାର ଖବର ରଖୁଛନ୍ତି । (୫୯/୧୮)

يٰٓاَيُّهَا الَّذِيْنَ اٰمَنُوا اتَّقُوا اللّٰهَ وَلْتَنْظُرْ نَفْسٌ مَّا قَدَّمَتْ لِغَدٍ ۚ وَاتَّقُوا اللّٰهَ ۗ اِنَّ اللّٰهَ خَبِيْرٌۢ بِمَا تَعْمَلُوْنَ ۝١٨

## ୪୫୬. ଅଲ୍ଲାହ୍ ମହିମାମୟ

ସେ ଅଲ୍ଲାହ୍ – ତାଙ୍କ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ । (ସେ) ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା, ଅତ୍ୟନ୍ତ ଦୟାବାନ ଓ ଅସୀମ କୃପାଶୀଳ । ସେ ଅଲ୍ଲାହ୍ - ତାଙ୍କ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ । (ବ୍ରହ୍ମାଣ୍ଡର) ଅଧୀଶ୍ୱର, ପରମ ପବିତ୍ର, ମଂଗଳମୟ, ଅଭୟଦାତା, ରକ୍ଷକ, ସର୍ବଶକ୍ତିମାନ, ଅପ୍ରତିରୋଧ ଏବଂ ମହାପ୍ରତାପଶାଳୀ । ସେମାନଙ୍କର ବହୁଈଶ୍ୱରବାଦର ଆରୋପରୁ ସେ ପବିତ୍ର । ସେ ଅଲ୍ଲାହ୍ - ବିଶ୍ୱସ୍ରଷ୍ଟା, ଅସ୍ତିତ୍ୱଦାତା ଓ ରୂପଦାତା । ତାଙ୍କର ଭଲ ଭଲ ନାମ ଅଛି । ଧରିତ୍ରୀ ଓ ଅନ୍ତରୀକ୍ଷରେ ଯେଉଁମାନେ ଅଛନ୍ତି, ସମସ୍ତେ ତାଙ୍କର ଗୁଣଗାନ କରନ୍ତି । ସେ ସର୍ବଶକ୍ତିମାନ ଓ ତତ୍ତ୍ୱଦର୍ଶୀ । (୫୯/୨୨-୨୪)

هُوَ اللّٰهُ الَّذِيْ لَآ اِلٰهَ اِلَّا هُوَ ۚ عٰلِمُ الْغَيْبِ وَالشَّهَادَةِ ۚ هُوَ الرَّحْمٰنُ الرَّحِيْمُ ۝٢٢ هُوَ اللّٰهُ الَّذِيْ لَآ اِلٰهَ اِلَّا هُوَ ۚ اَلْمَلِكُ الْقُدُّوْسُ السَّلٰمُ الْمُؤْمِنُ الْمُهَيْمِنُ الْعَزِيْزُ الْجَبَّارُ الْمُتَكَبِّرُ ۗ سُبْحٰنَ اللّٰهِ عَمَّا يُشْرِكُوْنَ ۝٢٣ هُوَ اللّٰهُ الْخَالِقُ الْبَارِئُ الْمُصَوِّرُ لَهُ الْاَسْمَآءُ الْحُسْنٰى ۗ يُسَبِّحُ لَهٗ مَا فِي السَّمٰوٰتِ وَالْاَرْضِ ۚ وَهُوَ الْعَزِيْزُ الْحَكِيْمُ ۝٢٤

## ୪୫୭. ସେ ନ୍ୟାୟପରାୟଣ ଲୋକଙ୍କୁ ଭଲ ପାଆନ୍ତି

ଯେଉଁମାନେ ତୁମମାନଙ୍କ ସହ ଧର୍ମ ବିଷୟରେ ଯୁଦ୍ଧ କରିନାହାନ୍ତି କିମ୍ବା ତୁମମାନଙ୍କୁ ତୁମ ଘରୁ ବାହାର କରିନାହାନ୍ତି, ସେମାନଙ୍କ ସହିତ ଉଚିତ ଓ ନ୍ୟାୟପୂର୍ଣ୍ଣ ବ୍ୟବହାର କରିବାକୁ ଅଲ୍ଲାହ ତୁମମାନଙ୍କୁ ମନା କରୁନାହାନ୍ତି । ଅଲ୍ଲାହ ତ ନ୍ୟାୟବନ୍ତ ଲୋକମାନଙ୍କୁ ଭଲ ପାଆନ୍ତି । କେବଳ ସେଇମାନଙ୍କ ସହ ବନ୍ଧୁତା କରିବାକୁ ଅଲ୍ଲାହ୍ ତୁମମାନଙ୍କୁ ବାରଣ କରୁଛନ୍ତି, ଯେଉଁମାନେ ଧର୍ମ

لَا يَنْهٰىكُمُ اللّٰهُ عَنِ الَّذِيْنَ لَمْ يُقَاتِلُوْكُمْ فِي الدِّيْنِ وَلَمْ يُخْرِجُوْكُمْ مِّنْ دِيَارِكُمْ اَنْ تَبَرُّوْهُمْ وَتُقْسِطُوْٓا اِلَيْهِمْ ۗ اِنَّ اللّٰهَ يُحِبُّ الْمُقْسِطِيْنَ ۝٨ اِنَّمَا يَنْهٰىكُمُ اللّٰهُ عَنِ الَّذِيْنَ قٰتَلُوْكُمْ فِي

ବିଷୟରେ ତୁମମାନଙ୍କ ସହିତ ଯୁଦ୍ଧ କଲେ ଏବଂ ତୁମମାନଙ୍କୁ ତୁମ ଘରୁ ବାହାର କରିଦେଲେ କିମ୍ବା ବାହାର କରିବାରେ ଅନ୍ୟମାନଙ୍କୁ ସାହାଯ୍ୟ କଲେ । ଯେଉଁମାନେ ଏଭଳି ଲୋକମାନଙ୍କ ସହିତ ମିତ୍ରତା କରିବେ, ସେମାନେ ଭ୍ରଷ୍ଟାଚାରୀ । (୬୦/୮-୯)

الَّذِيْنِ وَ اَخْرَجُوْكُمْ مِّنْ دِيَارِكُمْ وَ ظٰهَرُوْا عَلٰٓى
اِخْرَاجِكُمْ اَنْ تَوَلَّوْهُمْ ۚ وَ مَنْ يَّتَوَلَّهُمْ فَاُولٰٓئِكَ
هُمُ الظّٰلِمُوْنَ ۝٩

**୪୫୮. ଅନ୍ୟଙ୍କୁ ଯାହା କୁହ, ତାହା ନିଜେ ମଧ୍ୟ କର**

ହେ ସଦ୍ ବିଶ୍ୱାସୀମାନେ ! ଏଭଳି କଥା କାହିଁକି କହୁଛ, ଯାହା (ନିଜେ) କରୁ ନାହିଁ ? (୬୧/୨)

يٰٓاَيُّهَا الَّذِيْنَ اٰمَنُوْا لِمَ تَقُوْلُوْنَ مَا لَا تَفْعَلُوْنَ ۝٢

**୪୫୯. ଈଶ୍ୱରଙ୍କ ମାର୍ଗରେ ସଂଘର୍ଷ କର**

ଅଲ୍ଲାହଙ୍କ ପ୍ରତି ଏବଂ ତାଙ୍କ ବାର୍ତ୍ତାବହଙ୍କ ପ୍ରତି ବିଶ୍ୱାସ ରଖ ଏବଂ ଅଲ୍ଲାହଙ୍କ ମାର୍ଗରେ ନିଜର ଧନଜୀବନ ଅର୍ପଣ କରି ସଂଘର୍ଷ କରୁଥାଅ । ଯଦି ତୁମେମାନେ ବୁଝିପାର, ତେବେ ଏହା ତୁମମାନଙ୍କ ପକ୍ଷରେ ଖୁବ୍ ଭଲ । (ଏହା କଲେ) ସେ ତୁମମାନଙ୍କର ପାପ କ୍ଷମା କରିଦେବେ ଏବଂ ତୁମମାନଙ୍କୁ ସେହି ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ - ବୈକୁଣ୍ଠର ଚିରସ୍ଥାୟୀ ସୁନ୍ଦର ଉଦ୍ୟାନମାନଙ୍କରେ । ଏହାହିଁ (ମଣିଷର) ବଡ଼ ସଫଳତା ।

(୬୧/୧୧-୧୨)

تُؤْمِنُوْنَ بِاللّٰهِ وَ رَسُوْلِهٖ وَ تُجَاهِدُوْنَ فِيْ سَبِيْلِ
اللّٰهِ بِاَمْوَالِكُمْ وَ اَنْفُسِكُمْ ؕ ذٰلِكُمْ خَيْرٌ
لَّكُمْ اِنْ كُنْتُمْ تَعْلَمُوْنَ ۝١١ يَغْفِرْ لَكُمْ
ذُنُوْبَكُمْ وَ يُدْخِلْكُمْ جَنّٰتٍ تَجْرِيْ مِنْ
تَحْتِهَا الْاَنْهٰرُ وَ مَسٰكِنَ طَيِّبَةً فِيْ جَنّٰتِ
عَدْنٍ ؕ ذٰلِكَ الْفَوْزُ الْعَظِيْمُ ۝١٢

**୪୬୦. ଶୁକ୍ରବାର ଦିନ ସାମୂହିକ ନମାଜ ପାଠ କର**

ହେ ସଦବିଶ୍ୱାସୀଗଣ ! ଶୁକ୍ରବାର ଦିନ ଯେତେବେଳେ ନମାଜ ପାଇଁ ଡ଼ାକାଯାଏ, ଅଲ୍ଲାହଙ୍କ ଚିନ୍ତନ ପାଇଁ ତତ୍ପର ହୁଅ ଏବଂ କିଣାବିକା ବନ୍ଦ କରିଦିଅ । ଯଦି ତୁମେମାନେ ଜାଣିପାର, ତେବେ ଏହା ତୁମମାନଙ୍କ ପକ୍ଷରେ ଖୁବ୍ ଭଲ । ପୁଣି ନମାଜ ଶେଷ ହେଲା ପରେ, ନିଜନିଜ କାର୍ଯ୍ୟରେ ବାହାରିପଡ଼ ଏବଂ ଅଲ୍ଲାହଙ୍କ ଅନୁଗ୍ରହର (ଅର୍ଥାତ୍ ଜୀବିକାର) ସନ୍ଧାନ କର ଏବଂ ଅଲ୍ଲାହଙ୍କୁ ନିରନ୍ତର ସ୍ମରଣ କରୁଥାଅ, ତାହେଲେ ତୁମେମାନେ ସଫଳ ହେବ ।

(୬୨/୯-୧୦)

يٰٓاَيُّهَا الَّذِيْنَ اٰمَنُوْٓا اِذَا نُوْدِيَ لِلصَّلٰوةِ مِنْ يَّوْمِ
الْجُمُعَةِ فَاسْعَوْا اِلٰى ذِكْرِ اللّٰهِ وَ ذَرُوا الْبَيْعَ ؕ
ذٰلِكُمْ خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ۝٩ فَاِذَا
قُضِيَتِ الصَّلٰوةُ فَانْتَشِرُوْا فِي الْاَرْضِ وَ
ابْتَغُوْا مِنْ فَضْلِ اللّٰهِ وَ اذْكُرُوا اللّٰهَ كَثِيْرًا
لَّعَلَّكُمْ تُفْلِحُوْنَ ۝١٠

**୪୬୧. ତୁମ ଧନ ଓ ପରିବାର ଅଲ୍ଲାହଙ୍କ ମାର୍ଗରେ ବାଧା ସୃଷ୍ଟି ନ କରୁ**

ହେ ସଦବିଶ୍ଵାସୀଗଣ ! ତୁମମାନଙ୍କର ଧନସଂପତ୍ତି ବା ସନ୍ତାନସନ୍ତତି ତୁମମାନଙ୍କୁ ଅଲ୍ଲାହଙ୍କ ଚିନ୍ତନରୁ ଦୂରେଇ ନଦେଉ । ଯେଉଁମାନେ ଏପରି କରିବେ, (ଜାଣିରଖ) ସେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବେ । ମୃତ୍ୟୁ ଆସିବା ପୂର୍ବରୁ ଆମ୍ଭେ ତୁମମାନଙ୍କୁ ଯାହା ଧନ ଦେଇଛୁ, ସେଥିରୁ (ସତକର୍ମରେ) ଖର୍ଚ୍ଚ କର । ଏହାପରେ କେହି ଏହା ନ କହୁ ଯେ ହେ ପ୍ରଭୁ ! ମୋତେ କାହିଁକି (ଆଉ) ଟିକିଏ ସମୟ ଦେଲନାହିଁ ? ମୁଁ (ନିଶ୍ଚୟ) ଦାନ କରିଥାଆନ୍ତି ଏବଂ ପୁଣ୍ୟବାନ ହୋଇ ଥାଆନ୍ତି । ଯେତେବେଳେ କାହାରି (ମୃତ୍ୟୁର) ନିର୍ଦ୍ଧାରିତ ସମୟ ଆସିଯାଏ, ସେତେବେଳେ ଅଲ୍ଲାହ ଆଦୌ ଅବସର ଦିଅନ୍ତି ନାହିଁ. ତୁମେମାନେ ଯାହାସବୁ କରୁଛ, ଅଲ୍ଲାହ ଜାଣନ୍ତି । (୬୩/୯-୧୧)

يَاَيُّهَا الَّذِيْنَ اٰمَنُوْا لَا تُلْهِكُمْ اَمْوَالُكُمْ وَ لَآ اَوْلَادُكُمْ عَنْ ذِكْرِ اللّٰهِ ۚ وَ مَنْ يَّفْعَلْ ذٰلِكَ فَاُولٰٓئِكَ هُمُ الْخٰسِرُوْنَ ﴿٩﴾ وَ اَنْفِقُوْا مِنْ مَّا رَزَقْنٰكُمْ مِّنْ قَبْلِ اَنْ يَّاْتِيَ اَحَدَكُمُ الْمَوْتُ فَيَقُوْلَ رَبِّ لَوْلَآ اَخَّرْتَنِيْٓ اِلٰٓى اَجَلٍ قَرِيْبٍ ۙ فَاَصَّدَّقَ وَ اَكُنْ مِّنَ الصّٰلِحِيْنَ ﴿١٠﴾ وَ لَنْ يُّؤَخِّرَ اللّٰهُ نَفْسًا اِذَا جَآءَ اَجَلُهَا ۚ وَ اللّٰهُ خَبِيْرٌۢ بِمَا تَعْمَلُوْنَ ﴿١١﴾

**୪୬୨. ଈଶ୍ଵରଙ୍କ ଆଜ୍ଞା ବିନା ବିପଦ ଆସେନାହିଁ**

ଅଲ୍ଲାହଙ୍କ ଆଜ୍ଞା ବିନା କୌଣସି ବିପଦ ଆସେନାହିଁ ଏବଂ ଯିଏ ଅଲ୍ଲାହଙ୍କ ପ୍ରତି ବିଶ୍ଵାସ ରଖେ, ସେ ତା' ଅନ୍ତରକୁ ବାଟ ଦେଖାଇ ଦିଅନ୍ତି । ଅଲ୍ଲାହଙ୍କୁ ସବୁ ବିଷୟ ଜଣା । (୬୪/୧୧)

مَآ اَصَابَ مِنْ مُّصِيْبَةٍ اِلَّا بِاِذْنِ اللّٰهِ ۗ وَ مَنْ يُّؤْمِنْۢ بِاللّٰهِ يَهْدِ قَلْبَهٗ ۗ وَ اللّٰهُ بِكُلِّ شَيْءٍ عَلِيْمٌ ﴿١١﴾

**୪୬୩. ତୁମ ଧନ ଓ ପରିଜନ ତୁମ ପରୀକ୍ଷାର ମାଧ୍ୟମ**

ହେ ବିଶ୍ଵାସୀମାନେ ! ତୁମମାନଙ୍କର ପତ୍ନୀ ଓ ସନ୍ତାନମାନଙ୍କ ମଧ୍ୟରୁ କେତେକ ତୁମର ଶତ୍ରୁ । ତେଣୁ, ସେମାନଙ୍କଠାରୁ ସାବଧାନ ରୁହ । ଯଦି ତୁମେ ସେମାନଙ୍କୁ କ୍ଷମା କରିଦିଅ ବା ଛାଡ଼ିଦିଅ ଏବଂ ସେମାନଙ୍କ ଦୋଷ ମାର୍ଜନା କରିଦିଅ, ତେବେ (ଜାଣିରଖ) ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ । ତୁମମାନଙ୍କର ଧନସମ୍ପତ୍ତି ଓ ସନ୍ତାନସନ୍ତତି କେବଳ (ତୁମ ପରୀକ୍ଷାର) ଏକ ମାଧ୍ୟମ ଏବଂ ଅଲ୍ଲାହଙ୍କ ନିକଟରେ (ତୁମ ଧର୍ମନିଷ୍ଠତାର) ଉତ୍ତମ ପୁରସ୍କାର ଅଛି । (୬୪/୧୪-୧୫)

يَاَيُّهَا الَّذِيْنَ اٰمَنُوْٓا اِنَّ مِنْ اَزْوَاجِكُمْ وَ اَوْلَادِكُمْ عَدُوًّا لَّكُمْ فَاحْذَرُوْهُمْ ۚ وَ اِنْ تَعْفُوْا وَ تَصْفَحُوْا وَ تَغْفِرُوْا فَاِنَّ اللّٰهَ غَفُوْرٌ رَّحِيْمٌ ﴿١٤﴾ اِنَّمَآ اَمْوَالُكُمْ وَ اَوْلَادُكُمْ فِتْنَةٌ ۗ وَ اللّٰهُ عِنْدَهٗٓ اَجْرٌ عَظِيْمٌ ﴿١٥﴾

**୪୬୪. ଇନ୍ଦ୍ରିୟ ଲାଳସାକୁ ଦମନ କର**

ସୁତରାଂ, ନିଜର ସାଧ୍ୟମତେ ଅଲ୍ଲାହଙ୍କୁ ଭୟ କରୁଥାଅ (ଅର୍ଥାତ୍ ତାଙ୍କ ପ୍ରତି ନିଜର କର୍ତ୍ତବ୍ୟ କରୁଥାଅ), ତାଙ୍କ ଆଜ୍ଞା ଶୁଣ ଆଉ

فَاتَّقُوا اللّٰهَ مَا اسْتَطَعْتُمْ وَ اسْمَعُوْا وَ اَطِيْعُوْا وَ

ପାଳନ କର ଏବଂ (ତାଙ୍କରି ମାର୍ଗରେ) ଧନଖର୍ଚ୍ଚ କରୁଥାଅ । ଏହା ତୁମମାନଙ୍କ ପକ୍ଷରେ ଖୁବ ଭଲ । ଯିଏ ନିଜ ଇନ୍ଦ୍ରିୟ ପ୍ରଲୋଭନରୁ ବର୍ତ୍ତିଗଲା, ଏଇଭଳି ଲୋକମାନେ ହିଁ ସଫଳ ହେବେ ।

(୬୪/୧୬)

أَنْفِقُوْا خَيْرًا لِّأَنْفُسِكُمْ ۗ وَمَنْ يُّوْقَ شُحَّ نَفْسِهٖ
فَأُولٰٓئِكَ هُمُ الْمُفْلِحُوْنَ ﴿١٦﴾

## ୪୬୫. ପ୍ରତୀକ୍ଷାକାଳ ସରିବା ପୂର୍ବରୁ ପତ୍ନୀମାନଙ୍କୁ ଘରୁ ବାହାର କରନାହିଁ

ହେ ଈଶ୍ୱରଦୂତ ! ଯଦି ତୁମେମାନେ ନାରୀମାନଙ୍କୁ ତଲାକ୍ ଦିଅ, ତେବେ (ସେମାନେ ଋତୁସ୍ନାନ କରି ଶୁଦ୍ଧ ହେବାପରେ) ପ୍ରତୀକ୍ଷାକାଳର ଆରମ୍ଭରେ ଦିଅ ଏବଂ ଏହି ଅବଧିକୁ ଗଣୁଥାଅ । ନିଜ ପ୍ରଭୁ ଅଲ୍ଲାହଙ୍କୁ ଭୟ କରୁଥାଅ । ସେମାନଙ୍କୁ ଘରୁ ବାହାର କରିଦିଅ ନାହିଁ କିମ୍ବା ସେମାନେ ନିଜେ (ଏହି ଅବଧି ମଧ୍ୟରେ) ଘରୁ ବାହାରି ନ ଯାଆନ୍ତୁ । ହଁ, ଯଦି ସେମାନେ କୌଣସି ସ୍ପଷ୍ଟ ଅଶ୍ଳୀଳ ଆଚରଣ କରନ୍ତି, ତେବେ ଭିନ୍ନ କଥା । ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା । ଯିଏ ଅଲ୍ଲାହଙ୍କ ନିର୍ଦ୍ଧାରିତ ସୀମାର ଉଲଂଘନ କରେ, ସେ ନିଜ ପ୍ରତି ଅତ୍ୟାଚାର କରେ । ତୁମକୁ ଜଣାନାହିଁ, ଏହାପରେ ହୁଏତ ଅଲ୍ଲାହ (ମିଳାମିଶାର) କୌଣସି ବାଟ ବାହାର କରିଦେବେ । ଯଦି ସେମାନଙ୍କର ପ୍ରତୀକ୍ଷାକାଳ (ଇଦ୍ଦତ୍) ସରିବାର ସମୟ ପାଖେଇ ଆସେ, ତେବେ ସେମାନଙ୍କୁ ଭଲ ଭାବରେ (ବିବାହ ବନ୍ଧନରେ) ରହିବାକୁ ଦିଅ କିମ୍ବା ଭଲଭାବରେ ଅଲଗା କରିଦିଅ ଏବଂ ନିଜ ଭିତରୁ ଦୁଇଜଣ ଲୋକଙ୍କୁ ଏହାର ସାକ୍ଷୀ କରିଦିଅ । (ହେ ସାକ୍ଷୀମାନେ !) ଅଲ୍ଲାହଙ୍କ ପାଇଁ ଠିକ୍ ଠିକ୍ ସାକ୍ଷ୍ୟ ଦିଅ । ଏହି ଉପଦେଶ ସେହି ବ୍ୟକ୍ତିକୁ ଦିଆଯାଉଛି, ଯିଏ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରେ । ଯିଏ ଅଲ୍ଲାହଙ୍କୁ ଭୟ କରିବ, ଅଲ୍ଲାହ୍ ତା' ପାଇଁ (ସଂକଟରୁ) ମୁକ୍ତିର ବାଟ ବାହାରି କରିଦେବେ । (୬୫/୧-୨)

يٰٓأَيُّهَا النَّبِيُّ إِذَا طَلَّقْتُمُ النِّسَآءَ فَطَلِّقُوْهُنَّ
لِعِدَّتِهِنَّ وَأَحْصُوا الْعِدَّةَ ۚ وَاتَّقُوا اللّٰهَ رَبَّكُمْ ۚ
لَا تُخْرِجُوْهُنَّ مِنْۢ بُيُوْتِهِنَّ وَلَا يَخْرُجْنَ إِلَّآ أَنْ
يَّأْتِيْنَ بِفَاحِشَةٍ مُّبَيِّنَةٍ ۗ وَتِلْكَ حُدُوْدُ اللّٰهِ ۗ وَ
مَنْ يَّتَعَدَّ حُدُوْدَ اللّٰهِ فَقَدْ ظَلَمَ نَفْسَهٗ ۗ لَا تَدْرِيْ
لَعَلَّ اللّٰهَ يُحْدِثُ بَعْدَ ذٰلِكَ أَمْرًا ﴿١﴾ فَإِذَا بَلَغْنَ
أَجَلَهُنَّ فَأَمْسِكُوْهُنَّ بِمَعْرُوْفٍ أَوْ فَارِقُوْهُنَّ
بِمَعْرُوْفٍ وَّ أَشْهِدُوْا ذَوَيْ عَدْلٍ مِّنْكُمْ
وَأَقِيْمُوا الشَّهَادَةَ لِلّٰهِ ۗ ذٰلِكُمْ يُوْعَظُ بِهٖ مَنْ
كَانَ يُؤْمِنُ بِاللّٰهِ وَالْيَوْمِ الْاٰخِرِ ۗ وَمَنْ يَّتَّقِ
اللّٰهَ يَجْعَلْ لَّهٗ مَخْرَجًا ﴿٢﴾

## ୪୬୬. ନିଜ ପରିବାରକୁ ନର୍କରୁ ରକ୍ଷା କର

ହେ ମୁସଲମାନମାନେ ! ନିଜକୁ ଏବଂ ନିଜ ପରିଜନଙ୍କୁ ସେହି ନର୍କର ଅଗ୍ନିରୁ ରକ୍ଷାକର, ଯାହାର ଇନ୍ଧନ ହେବେ ମଣିଷ ଓ ପଥର, ଯେଉଁଠି କଠୋରମନା ଓ ବଳଶାଳୀ ଦେବଦୂତମାନେ ନିଯୁକ୍ତ ହୋଇଥିବେ, ଯେଉଁମାନେ ଅଲ୍ଲାହଙ୍କର କୌଣସି ଆଜ୍ଞାର ଅବଜ୍ଞା

يٰٓأَيُّهَا الَّذِيْنَ اٰمَنُوْا قُوْٓا أَنْفُسَكُمْ وَأَهْلِيْكُمْ
نَارًا وَّ قُوْدُهَا النَّاسُ وَالْحِجَارَةُ عَلَيْهَا
مَلٰٓئِكَةٌ غِلَاظٌ شِدَادٌ لَّا يَعْصُوْنَ اللّٰهَ مَآ أَمَرَهُمْ وَ

କରନ୍ତି ନାହିଁ ଏବଂ ତାହାହିଁ କରନ୍ତି ଯାହାର ନିର୍ଦ୍ଦେଶ ସେମାନଙ୍କୁ ଦିଆଯାଏ । (୬୬/୬)

يَفۡعَلُوۡنَ مَا يُؤۡمَرُوۡنَ ﴿٦﴾

## ୪୬୭. ଅଲ୍ଲାହ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ

ଯେଉଁମାନେ ନିଜ ପରମେଶ୍ୱରଙ୍କୁ ନ ଦେଖି ମଧ୍ୟ ଭୟ କରନ୍ତି, ସେମାନଙ୍କ ପାଇଁ ଅଛି କ୍ଷମା ଆଉ ସୁନ୍ଦର ପୁରସ୍କାର । ତୁମେମାନେ ନିଜ କଥାକୁ ଗୋପନ ରଖ ବା ପ୍ରକାଶ କର, ସେ ଅନ୍ତର କଥା ଜାଣନ୍ତି । କ'ଣ ସେଇ ଜାଣିପାରିବ ନାହିଁ ଯିଏ (ତୁମକୁ) ସୃଷ୍ଟି କରିଛି ? ସେ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ ଏବଂ ସର୍ବଜ୍ଞ । (୬୭/୧୨-୧୪)

اِنَّ الَّذِيۡنَ يَخۡشَوۡنَ رَبَّهُمۡ بِالۡغَيۡبِ لَهُمۡ مَّغۡفِرَةٌ وَّ اَجۡرٌ كَبِيۡرٌ ﴿١٢﴾ وَ اَسِرُّوۡا قَوۡلَـكُمۡ اَوِ اجۡهَرُوۡا بِهٖ ؕ اِنَّهٗ عَلِيۡمٌۢ بِذَاتِ الصُّدُوۡرِ ﴿١٣﴾ اَلَا يَعۡلَمُ مَنۡ خَلَقَ ؕ وَهُوَ اللَّطِيۡفُ الۡخَبِيۡرُ ﴿١٤﴾

## ୪୬୮. ସେ ଭୂମିକମ୍ପ ଦ୍ୱାରା ବିନାଶ କରି ପାରନ୍ତି

କ'ଣ ତୁମେମାନେ ତାଙ୍କ ପ୍ରତି ନିର୍ଭୀକ ହୋଇ ଯାଇଛ, ଯିଏ ସ୍ୱର୍ଗରେ ଅବସ୍ଥାନ କରନ୍ତି ? ଯେତେବେଳେ ଭୂମି କମ୍ପିବାକୁ ଲାଗେ, (ସେତେବେଳେ) ହୁଏତ ସେ ତୁମମାନଙ୍କୁ ସେଥିରେ ଧସାଇ ଦେଇପାରନ୍ତି । (୬୭/୧୬)

ءَاَمِنۡتُمۡ مَّنۡ فِى السَّمَآءِ اَنۡ يَّخۡسِفَ بِكُمُ الۡاَرۡضَ فَاِذَا هِىَ تَمُوۡرُ ۙ﴿١٦﴾

## ୪୬୯. ସେ ଜଳସ୍ତରକୁ ତଳକୁ ଖସାଇ ପାରନ୍ତି

ସେମାନଙ୍କୁ କୁହ, "କ'ଣ ତୁମେମାନେ କେବେ ଚିନ୍ତା କରିଛ ଯେ ଯଦି ତୁମମାନଙ୍କ ଜଳ ଧରାତଳକୁ ଖସିଯାଏ, ତେବେ ତୁମମାନଙ୍କୁ ନିର୍ମଳ ଜଳଧାରା କିଏ ଯୋଗାଇଦେବ ?" (୬୭/୩୦)

قُلۡ اَرَءَيۡتُمۡ اِنۡ اَصۡبَحَ مَآؤُكُمۡ غَوۡرًا فَمَنۡ يَّاۡتِيۡكُمۡ بِمَآءٍ مَّعِيۡنٍ ﴿٣٠﴾

## ୪୭୦. ମହାମାନ୍ୟ ମୁହମ୍ମଦ ନିଖୁଣ ଚରିତ୍ରର ସ୍ୱାମୀ

(ହେ ମୁହମ୍ମଦ !) ନିଃସନ୍ଦେହରେ ତୁମେ ଆଦର୍ଶ ଚରିତ୍ରର ସ୍ୱାମୀ । (୬୮/୪)

وَاِنَّكَ لَعَلٰى خُلُقٍ عَظِيۡمٍ ﴿٤﴾

## ୪୭୧. ଦୁର୍ଜ୍ଜନ ସଂଗ ପରିତ୍ୟାଗ କର

ଏମିତି ଲୋକ କଥାରେ ପଡ଼ନାହିଁ, ଯିଏ କଥାରେ କଥାରେ ରାଣ ଖାଏ, ଯିଏ ମର୍ଯ୍ୟାଦାହୀନ, ତାସ୍ଲ୍ୟକାରୀ ବା ଚୁଗୁଲିଆ ଏବଂ ଯିଏ ଶୁଭକାର୍ଯ୍ୟରେ ବାଧା ଦିଏ, ଯିଏ ସୀମା ଲଂଘନକାରୀ ପାପିଷ୍ଠ ବା ଯିଏ କଟୁଭାଷୀ ବା କୁଳହୀନ, ଯଦିଓ ତା'ର (ବହୁତ) ଧନସଂପତ୍ତି ଥାଉ ବା ସନ୍ତାନସନ୍ତତି ଥାଆନ୍ତୁ । (୬୮/୧୦-୧୪)

وَلَا تُطِعۡ كُلَّ حَلَّافٍ مَّهِيۡنٍ ۙ﴿١٠﴾ هَمَّازٍ مَّشَّآءٍۢ بِنَمِيۡمٍ ۙ﴿١١﴾ مَّنَّاعٍ لِّلۡخَيۡرِ مُعۡتَدٍ اَثِيۡمٍ ۙ﴿١٢﴾ عُتُلٍّۢ بَعۡدَ ذٰلِكَ زَنِيۡمٍ ۙ﴿١٣﴾ اَنۡ كَانَ ذَا مَالٍ وَّ بَنِيۡنَ ﴿١٤﴾

## ୪୭୨. ସମସ୍ତଙ୍କ ପରିଣାମ ସମାନ ହେବ ନାହିଁ

ଅଲ୍ଲାହଙ୍କୁ ଭୟ କରୁଥିବା ଲୋକମାନଙ୍କ ପାଇଁ ସେମାନଙ୍କ ପ୍ରଭୁଙ୍କ

اِنَّ لِلۡمُتَّقِيۡنَ عِنۡدَ رَبِّهِمۡ جَنّٰتِ النَّعِيۡمِ ﴿٣٤﴾

ନିକଟରେ ଐଶ୍ୱର୍ଯ୍ୟଭରା ଉଦ୍ୟାନ ଅଛି। କ'ଣ ଆମ୍ଭେ ଆଜ୍ଞାକାରୀଙ୍କୁ ଅବଜ୍ଞାକାରୀଙ୍କ ସହ ସମାନ କରିଦେବୁ? ତୁମମାନଙ୍କର କ'ଣ ହୋଇଛି ? କେମିତି ବିଚାର କରୁଛ ?

(୬୮/୩୪-୩୬)

أَفَنَجْعَلُ الْمُسْلِمِينَ كَالْمُجْرِمِينَ ﴿٣٥﴾ مَا لَكُمْ
كَيْفَ تَحْكُمُونَ ﴿٣٦﴾

## ୪୭୩. ବୈକୁଣ୍ଠବାସୀମାନଙ୍କର ସ୍ୱଭାବ

ମଣିଷ ସ୍ୱଭାବତଃ ଅଧିର। ଯେତେବେଳେ ଦୁଃଖ ଆସେ, ସେ ବ୍ୟତିବ୍ୟସ୍ତ ହୋଇପଡ଼େ ଏବଂ ଯେତେବେଳେ ତାକୁ ଧନ ମିଳିଯାଏ, ସେ କୃପଣ ପାଲଟି ଯାଏ। ମାତ୍ର ସେହି ନମାଜ ପାଠ କରୁଥିବା ଲୋକଙ୍କ କଥା ଭିନ୍ନ, ଯେଉଁମାନେ ନିଜ ନମାଜ ପ୍ରତି ନିଷ୍ଠାବାନ ରହନ୍ତି ଏବଂ ସେମାନଙ୍କ ଧନରେ ଭିକ୍ଷା କରୁଥିବା ଏବଂ ଭିକ୍ଷା କରିବାରୁ କ୍ଷାନ୍ତ ରହୁଥିବା ଦରିଦ୍ରମାନଙ୍କର ଏକ ନିର୍ଦ୍ଦିଷ୍ଟ ଭାଗ ଥାଏ। ସେମାନେ ବିଚାର ଦିନକୁ ସତ୍ୟ ମାନନ୍ତି ଏବଂ ନିଜ ପରମେଶ୍ୱରଙ୍କ ଶାସ୍ତି ପ୍ରତି ଶଙ୍କିତ ରହିଥାଆନ୍ତି। ପ୍ରକୃତରେ ପରମେଶ୍ୱରଙ୍କ ଶାସ୍ତି ଭୟ କରିବା ଯୋଗ୍ୟ। ଯେଉଁମାନେ ସେମାନଙ୍କ ଗୁପ୍ତାଂଗକୁ (ଅବୈଧ ଯୌନସଂଗମରୁ) ନିବୃତ୍ତ ରଖନ୍ତି, ମାତ୍ର (ରିତୀମତେ ବିବାହ କରି) ପତ୍ନୀ ବା ନିଜ ଅଧିକାରରେ ଥିବା ଦାସୀମାନଙ୍କ ପାଖକୁ ଯିବା ସେମାନଙ୍କ ପକ୍ଷରେ ଦୋଷାବହ ନୁହେଁ। ଯେଉଁମାନେ ଏହା ବ୍ୟତୀତ ଅନ୍ୟ ବାଟ ଖୋଜନ୍ତି, ସେଇମାନେ ସୀମାଲଂଘନ କରନ୍ତି। ଯେଉଁମାନେ (ବିଶ୍ୱାସରେ ରଖାଯାଇଥିବା) ଅନ୍ୟର ଅମାନତ ପ୍ରତି ଏବଂ ନିଜର ପ୍ରତିଶ୍ରୁତି ପ୍ରତି ସଜାଗ ରହି ଥାଆନ୍ତି, ଯେଉଁମାନେ ନିଜ ସାକ୍ଷ୍ୟରେ ସଦା ଅଟଳ ରହନ୍ତି ଏବଂ ନିଜର ଦୈନିକ ପ୍ରାର୍ଥନା ପ୍ରତି ଯତ୍ନବାନ ଥାଆନ୍ତି, ଏଇମାନେ ସ୍ୱର୍ଗୋଦ୍ୟାନରେ ସମ୍ମାନର ସହିତ ରହିବେ।

(୭୦/୧୯-୩୫)

إِنَّ الْإِنْسَانَ خُلِقَ هَلُوعًا ﴿١٩﴾ إِذَا مَسَّهُ الشَّرُّ
جَزُوعًا ﴿٢٠﴾ وَإِذَا مَسَّهُ الْخَيْرُ مَنُوعًا ﴿٢١﴾ إِلَّا
الْمُصَلِّينَ ﴿٢٢﴾ الَّذِينَ هُمْ عَلَىٰ صَلَاتِهِمْ
دَائِمُونَ ﴿٢٣﴾ وَالَّذِينَ فِي أَمْوَالِهِمْ حَقٌّ مَعْلُومٌ ﴿٢٤﴾
لِلسَّائِلِ وَالْمَحْرُومِ ﴿٢٥﴾ وَالَّذِينَ يُصَدِّقُونَ
بِيَوْمِ الدِّينِ ﴿٢٦﴾ وَالَّذِينَ هُمْ مِنْ عَذَابِ رَبِّهِمْ
مُشْفِقُونَ ﴿٢٧﴾ إِنَّ عَذَابَ رَبِّهِمْ غَيْرُ مَأْمُونٍ ﴿٢٨﴾
وَالَّذِينَ هُمْ لِفُرُوجِهِمْ حَافِظُونَ ﴿٢٩﴾ إِلَّا عَلَىٰ
أَزْوَاجِهِمْ أَوْ مَا مَلَكَتْ أَيْمَانُهُمْ فَإِنَّهُمْ غَيْرُ
مَلُومِينَ ﴿٣٠﴾ فَمَنِ ابْتَغَىٰ وَرَاءَ ذَٰلِكَ فَأُولَٰئِكَ هُمُ
الْعَادُونَ ﴿٣١﴾ وَالَّذِينَ هُمْ لِأَمَانَاتِهِمْ وَعَهْدِهِمْ
رَاعُونَ ﴿٣٢﴾ وَالَّذِينَ هُمْ بِشَهَادَاتِهِمْ قَائِمُونَ ﴿٣٣﴾
وَالَّذِينَ هُمْ عَلَىٰ صَلَاتِهِمْ يُحَافِظُونَ ﴿٣٤﴾ أُولَٰئِكَ فِي
جَنَّاتٍ مُكْرَمُونَ ﴿٣٥﴾

## ୪୭୪. ନିଜ ବସ୍ତ୍ରକୁ ଶୁଦ୍ଧ ରଖ

ନିଜ ପ୍ରଭୁଙ୍କର ମହିମାଗାନ କର, ନିଜ ବସ୍ତ୍ରକୁ ଶୁଦ୍ଧ ରଖ ଏବଂ ଅଶୁଦ୍ଧତାଠାରୁ ଦୂରେଇ ରୁହ। (୭୪/୩-୫)

وَرَبَّكَ فَكَبِّرْ ﴿٣﴾ وَثِيَابَكَ فَطَهِّرْ ﴿٤﴾ وَالرُّجْزَ
فَاهْجُرْ ﴿٥﴾

### ୪୭୫. ଦୈନିକ ନମାଜ ପାଠ ନ କଲେ ନର୍କଦଣ୍ଡ

ସ୍ୱର୍ଗୋଦ୍ୟାନର ନିବାସୀମାନେ (ନର୍କବାସୀ) ଅପରାଧୀମାନଙ୍କୁ ପଚାରିବେ, "ତୁମେମାନେ ନର୍କକୁ କପରି ଆସିଲ ?" ସେମାନେ ଉତ୍ତର ଦେବେ, "ଆମେ ନମାଜ (ଦୈନିକ ଉପାସନା) କରୁ ନଥିଲୁ, କିମ୍ବା ଗରିବମାନଙ୍କୁ ଭୋଜନ ଦେଉ ନଥିଲୁ ଏବଂ ଅଯଥା ତର୍କବିତର୍କରେ ମାତି ରହୁଥିବା ଲୋକଙ୍କ ସହିତ ଆମେ ମଧ୍ୟ ମିଶିଯାଉଥିଲୁ । ଆମେ ବିଚାର ଦିନକୁ ମିଥ୍ୟା ମନେ କରୁଥିଲୁ । ଏହି ଅବସ୍ଥାରେ ଆମର ମୃତ୍ୟୁ ହୋଇଗଲା । " (୭୪/୪୦-୪୭)

فِيْ جَنّٰتٍ ۛ يَتَسَآءَلُوْنَ ﴿٤٠﴾ عَنِ الْمُجْرِمِيْنَ ﴿٤١﴾ مَا سَلَكَكُمْ فِيْ سَقَرَ ﴿٤٢﴾ قَالُوْا لَمْ نَكُ مِنَ الْمُصَلِّيْنَ ﴿٤٣﴾ وَلَمْ نَكُ نُطْعِمُ الْمِسْكِيْنَ ﴿٤٤﴾ وَكُنَّا نَخُوْضُ مَعَ الْخَآئِضِيْنَ ﴿٤٥﴾ وَكُنَّا نُكَذِّبُ بِيَوْمِ الدِّيْنِ ﴿٤٦﴾ حَتّٰىٓ اَتٰىنَا الْيَقِيْنُ ﴿٤٧﴾

### ୪୭୬. ମଣିଷ ନିଜକୁ ଠିକ୍ ଜାଣେ

ମଣିଷ ନିଜେ ନିଜକୁ ଭଲରୂପେ ଜାଣେ, ସେ ପଛେ ଯେତେ ବାହାନା କରୁଥାଉ । (୭୫/୧୪-୧୫)

بَلِ الْاِنْسَانُ عَلٰى نَفْسِهٖ بَصِيْرَةٌ ﴿١٤﴾ وَّلَوْ اَلْقٰى مَعَاذِيْرَهٗ ﴿١٥﴾

### ୪୭୭. ଟୋପାଏ ଶୁକ୍ରରୁ ତୁମର ସୃଷ୍ଟି

କ'ଣ ମଣିଷ ଭାବିଛି ଯେ ତାକୁ ଏତେ ସହଜରେ ଛାଡ଼ି ଦିଆଯିବ ? କ'ଣ ସେ (ଗର୍ଭାଶୟ ମଧ୍ୟରେ) ନିକ୍ଷିପ୍ତ ଟୋପାଏ ଶୁକ୍ର ନଥିଲା ? ପୁଣି ସେ ଏକ ମାଂସପିଣ୍ଡ ହେଲା । ପୁଣି ସେ ତାକୁ ରୂପ ଦେଲେ ଏବଂ ତା' ଅଂଗପ୍ରତ୍ୟଂଗ ଗୁଡ଼ିକୁ ସୁଚାରୁ ରୂପେ ଗଠନ କଲେ । ଏହାପରେ ସେଥିରୁ ପୁରୁଷ ଓ ସ୍ତ୍ରୀର ଯୋଡ଼ି ସୃଷ୍ଟି କଲେ । ତେବେ କ'ଣ ସେ ମୃତକୁ ପୁନର୍ଜୀବିତ କରିବାକୁ ସକ୍ଷମ ନୁହନ୍ତି ? (୭୫/୩୬-୪୦)

اَيَحْسَبُ الْاِنْسَانُ اَنْ يُّتْرَكَ سُدًى ﴿٣٦﴾ اَلَمْ يَكُ نُطْفَةً مِّنْ مَّنِيٍّ يُّمْنٰى ﴿٣٧﴾ ثُمَّ كَانَ عَلَقَةً فَخَلَقَ فَسَوّٰى ﴿٣٨﴾ فَجَعَلَ مِنْهُ الزَّوْجَيْنِ الذَّكَرَ وَالْاُنْثٰى ﴿٣٩﴾ اَلَيْسَ ذٰلِكَ بِقٰدِرٍ عَلٰٓى اَنْ يُّحْيِۦَ الْمَوْتٰى ﴿٤٠﴾

### ୪୭୮. ଏକଦା ତୁମେ ଚର୍ଚ୍ଚାଯୋଗ୍ୟ ନଥିଲ

କ'ଣ ମଣିଷ ଉପରେ ଏଭଳି ଏକ ସମୟ ବିତିନାହିଁ, ଯେତେବେଳେ ସେ ଚର୍ଚ୍ଚାର ଯୋଗ୍ୟ ନଥିଲା ? ଆମ୍ଭେ ମନୁଷ୍ୟକୁ (ପୁରୁଷ ଓ ନାରୀର) ମିଶ୍ରିତ ବୀର୍ଯ୍ୟରୁ ସୃଷ୍ଟି କଲୁ, ଯଦ୍ୱାରା ଆମ୍ଭେ ତା'ର ପରୀକ୍ଷା ନେବୁ । ତେଣୁ ଆମ୍ଭେ ତାକୁ ଶୁଣିବା ଓ ଦେଖିବାର ଶକ୍ତି ପ୍ରଦାନ କଲୁ । ତା'ପରେ ଆମ୍ଭେ ତାକୁ ବାଟ ଦେଖାଇ ଦେଲୁ । ଏବେ ସେ କୃତଜ୍ଞ ହେଉ ବା କୃତଘ୍ନ । (୭୬/୧-୩)

هَلْ اَتٰى عَلَى الْاِنْسَانِ حِيْنٌ مِّنَ الدَّهْرِ لَمْ يَكُنْ شَيْـًٔا مَّذْكُوْرًا ﴿١﴾ اِنَّا خَلَقْنَا الْاِنْسَانَ مِنْ نُّطْفَةٍ اَمْشَاجٍ ۖ نَّبْتَلِيْهِ فَجَعَلْنٰهُ سَمِيْعًا بَصِيْرًا ﴿٢﴾ اِنَّا هَدَيْنٰهُ السَّبِيْلَ اِمَّا شَاكِرًا وَّ اِمَّا كَفُوْرًا ﴿٣﴾

### ୪୭୯. ପରୋପକାର କେବଳ ଈଶ୍ୱରଙ୍କ ପାଇଁ କର

ପୁଣ୍ୟବନ୍ତ ଲୋକମାନେ ନିଜର ମାନସିକ ପୂରଣ କରନ୍ତି ଏବଂ

يُوْفُوْنَ بِالنَّذْرِ وَ يَخَافُوْنَ يَوْمًا كَانَ شَرُّهٗ

ସେହି (ପ୍ରଳୟ) ଦିନ ପ୍ରତି ସର୍ବଦା ଶଙ୍କିତ ଥାଆନ୍ତି ଯାହାର ଭୟାବହତା ଖୁବ ବ୍ୟାପକ ହେବ ଏବଂ ସେମାନେ ଅଲ୍ଲାହଙ୍କ ପ୍ରେମରେ ଦରିଦ୍ର, ଅନାଥ ଓ ବନ୍ଦୀମାନଙ୍କୁ ଭୋଜନ ଦିଅନ୍ତି (ଆଉ କହନ୍ତି ଯେ) 'ଆମେ ତ କେବଳ ଅଲ୍ଲାହଙ୍କ ପ୍ରସନ୍ନତା ଲାଭ କରିବା ଲାଗି ତୁମମାନଙ୍କୁ ଭୋଜନ ଦେଉଛୁ । ଆମେ ତୁମଠାରୁ (ଏହି ଉପକାରର) କୌଣସି ପ୍ରତିବଦଳ ଚାହୁଁନା କିମ୍ବା ତୁମର କୃତଜ୍ଞତା ମଧ୍ୟ ଚାହୁଁନା ।' (୭୬/୭-୯)

مُسْتَطِيْرًا ۝٧ وَيُطْعِمُوْنَ الطَّعَامَ عَلٰى حُبِّهٖ مِسْكِيْنًا وَّيَتِيْمًا وَّاَسِيْرًا ۝٨ اِنَّمَا نُطْعِمُكُمْ لِوَجْهِ اللّٰهِ لَا نُرِيْدُ مِنْكُمْ جَزَآءً وَّلَا شُكُوْرًا ۝٩

## ୪୮୦. ତୁମର ସୃଷ୍ଟି କଠିନ ବା ଅନ୍ତରୀକ୍ଷର ସୃଷ୍ଟି ?

କ'ଣ ତୁମମାନଙ୍କର (ପୁନର୍ବାର) ସୃଷ୍ଟି ଅଧିକ କଠିନ କିମ୍ବା ଅନ୍ତରୀକ୍ଷର ସୃଷ୍ଟି ? ଏହାକୁ ସେଇ (ଅଲ୍ଲାହ) ହିଁ ସୃଷ୍ଟି କରିଛନ୍ତି । (୭୯/୨୭)

ءَاَنْتُمْ اَشَدُّ خَلْقًا اَمِ السَّمَآءُ ۚ بَنٰهَا ۝٢٧

## ୪୮୧. ବୈକୁଣ୍ଠ ପ୍ରାପ୍ତି ପାଇଁ ଇନ୍ଦ୍ରିୟଦମନ କର

ଯିଏ ଔଦ୍ଧତ୍ୟ ପ୍ରଦର୍ଶନ କରିଥିବ ଏବଂ ପାର୍ଥିବ ଜୀବନକୁ (ପରଲୋକ ତୁଳନାରେ) ପ୍ରାଥମିକତା ଦେଇଥିବ, ନର୍କ ତା'ର ଠିକଣା ହେବ ଏବଂ ଯିଏ ନିଜ ଈଶ୍ୱରଙ୍କ ସାମନାରେ ଉପସ୍ଥିତ ହେବ ବୋଲି ଭୟ କରିଥିବ ତଥା ଇନ୍ଦ୍ରିୟଦମନ କରିଥିବ, ବୈକୁଣ୍ଠ ଅବଶ୍ୟ ତା'ର ନିବାସ ହେବ । (୭୯/୩୭-୪୧)

فَاَمَّا مَنْ طَغٰى ۝٣٧ وَاٰثَرَ الْحَيٰوةَ الدُّنْيَا ۝٣٨ فَاِنَّ الْجَحِيْمَ هِيَ الْمَاْوٰى ۝٣٩ وَاَمَّا مَنْ خَافَ مَقَامَ رَبِّهٖ وَنَهَى النَّفْسَ عَنِ الْهَوٰى ۝٤٠ فَاِنَّ الْجَنَّةَ هِيَ الْمَاْوٰى ۝٤١

## ୪୮୨. କର୍ମପଞ୍ଜିକା ଦେବଦୂତମାନେ ଲେଖନ୍ତି

ହେ ମାନବ ! ତୁ କିପରି ନିଜର କରୁଣାମୟ ପରମେଶ୍ୱରଙ୍କ ବିଷୟରେ ବାଟବଣା ହୋଇଗଲୁ ? ଯିଏ ତୋତେ ସୃଷ୍ଟି କଲେ, ରୂପ ଦେଲେ ଏବଂ (ତୋ ଅଂଗପ୍ରତ୍ୟଂଗଗୁଡ଼ିକୁ) ସନ୍ତୁଳିତ କଲେ ଏବଂ ଯେଉଁ ରୂପରେ ସେ ଚାହିଁଲେ, ତୋତେ ଗଢ଼ିଲେ ? ନା ନା, ତୁମେମାନେ ବିଚାରଦିନକୁ (ସତ୍ୟ ବୋଲି) ମାନୁନାହଁ, ଅଥଚ ତୁମମାନଙ୍କ ପାଇଁ ନିରୀକ୍ଷକ ନିଯୁକ୍ତ ହୋଇଛନ୍ତି, ଯେଉଁମାନେ ପ୍ରତିଷ୍ଠିତ ଲିପିକ । ତୁମେମାନେ ଯାହା କର, ସେମାନେ ତାହା ଜାଣନ୍ତି । ପୁଣ୍ୟବାନ ଲୋକମାନେ ଅବଶ୍ୟ (ସ୍ୱର୍ଗର) ଐଶ୍ୱର୍ଯ୍ୟ ମଧ୍ୟରେ ରହିବେ ଏବଂ ପାପୀମାନେ ନର୍କାଗ୍ନି ମଧ୍ୟରେ । (୮୨/୬-୧୪)

يٰۤاَيُّهَا الْاِنْسَانُ مَا غَرَّكَ بِرَبِّكَ الْكَرِيْمِ ۝٦ الَّذِيْ خَلَقَكَ فَسَوّٰىكَ فَعَدَلَكَ ۝٧ فِيْۤ اَيِّ صُوْرَةٍ مَّا شَآءَ رَكَّبَكَ ۝٨ كَلَّا بَلْ تُكَذِّبُوْنَ بِالدِّيْنِ ۝٩ وَاِنَّ عَلَيْكُمْ لَحٰفِظِيْنَ ۝١٠ كِرَامًا كَاتِبِيْنَ ۝١١ يَعْلَمُوْنَ مَا تَفْعَلُوْنَ ۝١٢ اِنَّ الْاَبْرَارَ لَفِيْ نَعِيْمٍ ۝١٣ وَاِنَّ الْفُجَّارَ لَفِيْ جَحِيْمٍ ۝١٤

## ୪୮୩. ମାପ ଓ ଓଜନ କମ୍ କରି ଦିଅନାହିଁ

ମାପ ଓ ଓଜନ କମ୍ କରି ଦେଉଥିବା ଲୋକଙ୍କର ସର୍ବନାଶ ହେବ । ଏମାନେ ଯେତେବେଳେ ଲୋକଙ୍କଠାରୁ (କୌଣସି ଜିନିଷ) ନିଅନ୍ତି, ପୂରା ମାତ୍ରାରେ ନିଅନ୍ତି ଏବଂ ଯେତେବେଳେ (କିଛି) ମାପ ବା ଓଜନ କରି ଦିଅନ୍ତି, ତେବେ କମ୍ କରି ଦିଅନ୍ତି । କ'ଣ ସେମାନେ ଟିକିଏ ଚିନ୍ତା କରୁନାହାନ୍ତି ଯେ ସେମାନଙ୍କୁ (କର୍ମର ହିସାବ ଦେବାପାଇଁ) ପୁନର୍ଜୀବିତ ହୋଇ ଉଠିବାକୁ ପଡ଼ିବ ? ଏକ ଭୟଙ୍କର ଦିନରେ, ଯେଉଁଦିନ ସମଗ୍ର ମାନବ ସମୁଦାୟ ସର୍ବଲୋକେଶ୍ୱରଙ୍କ ସମ୍ମୁଖରେ ଉପସ୍ଥିତ ହେବ । (୮୩/୧-୬)

وَيْلٌ لِّلْمُطَفِّفِيْنَ ﴿١﴾ الَّذِيْنَ اِذَا اكْتَالُوْا عَلَى
النَّاسِ يَسْتَوْفُوْنَ ﴿٢﴾ وَاِذَا كَالُوْهُمْ اَوْ وَّزَنُوْهُمْ
يُخْسِرُوْنَ ﴿٣﴾ اَلَا يَظُنُّ اُولٰٓئِكَ اَنَّهُمْ مَّبْعُوْثُوْنَ ﴿٤﴾
لِيَوْمٍ عَظِيْمٍ ﴿٥﴾ يَّوْمَ يَقُوْمُ النَّاسُ لِرَبِّ
الْعٰلَمِيْنَ ﴿٦﴾

## ୪୮୪. ଉପଦେଶ ଲାଭକାରୀ ହେଉଥିଲେ ଦିଅ

ସୁତରାଂ, ଉପଦେଶ ଯଦି ଲାଭକାରୀ ହେଉଛି, ତେବେ ଦିଅ । ଯାହାର (ଈଶ୍ୱରଙ୍କ ପ୍ରତି) ଭୟ ଥିବ, ସେ ଉପଦେଶ ଗ୍ରହଣ କରିବ, କିନ୍ତୁ ଯିଏ ହତଭାଗା ହୋଇଥିବ, ସେ ତାହାକୁ ଉପେକ୍ଷା କରିବ । ସେ ଭୟଙ୍କର ଅଗ୍ନିରେ ନିକ୍ଷିପ୍ତ ହେବ । ସେଠାରେ ସେ ନା ମରି ପାରିବ, ନା ଜିଇଁ ପାରିବ । (୮୭/୯-୧୩)

فَذَكِّرْ اِنْ نَّفَعَتِ الذِّكْرٰى ﴿٩﴾ سَيَذَّكَّرُ مَنْ يَّخْشٰى ﴿١٠﴾
وَيَتَجَنَّبُهَا الْاَشْقَى ﴿١١﴾ الَّذِىْ يَصْلَى النَّارَ
الْكُبْرٰى ﴿١٢﴾ ثُمَّ لَا يَمُوْتُ فِيْهَا وَلَا يَحْيٰى ﴿١٣﴾

## ୪୮୫. ଯିଏ ଅନ୍ତଃଶୁଦ୍ଧି କରେ ସେ ହିଁ ସଫଳ ହୁଏ

ସେହି ବ୍ୟକ୍ତି ଅବଶ୍ୟ ସଫଳ ହୁଏ, ଯିଏ ନିଜର ଅନ୍ତଃଶୁଦ୍ଧି କରେ ଏବଂ ପ୍ରଭୁଙ୍କ ନାମ ସ୍ମରଣ କରୁଥାଏ ଆଉ (ନିୟମିତ) ନମାଜ ସଂପାଦନ କରୁଥାଏ । ମାତ୍ର ତୁମେମାନେ ପାର୍ଥିବ ଜୀବନକୁ ପ୍ରାଥମିକତା ଦେଇଥାଅ, ଯଦିଓ ପରଲୋକ (ଏହାଠାରୁ) ଯଥେଷ୍ଟ ଭଲ ଆଉ ଚିରସ୍ଥାୟୀ ମଧ୍ୟ । ଏହାର ବର୍ଣ୍ଣନା ପୂର୍ବ ଗ୍ରନ୍ଥମାନଙ୍କରେ ମଧ୍ୟ ରହିଛି – ଇବ୍ରାହିମ୍ ଓ ମୁସାଙ୍କ ଗ୍ରନ୍ଥରେ (ମଧ୍ୟ) ।

(୮୭/୧୪-୧୯)

قَدْ اَفْلَحَ مَنْ تَزَكّٰى ﴿١٤﴾ وَذَكَرَ اسْمَ رَبِّهٖ فَصَلّٰى ﴿١٥﴾
بَلْ تُؤْثِرُوْنَ الْحَيٰوةَ الدُّنْيَا ﴿١٦﴾ وَالْاٰخِرَةُ خَيْرٌ
وَّاَبْقٰى ﴿١٧﴾ اِنَّ هٰذَا لَفِى الصُّحُفِ الْاُوْلٰى ﴿١٨﴾
صُحُفِ اِبْرٰهِيْمَ وَمُوْسٰى ﴿١٩﴾

## ୪୮୬. ଭଲ ଓ ମନ୍ଦ ଉଭୟ ପରିସ୍ଥିତିରେ ତୁମକୁ ପରୀକ୍ଷା କରାଯାଏ

ମଣିଷ ଏଭଳି (ଜୀବ) ଯେ ଯେତେବେଳେ ତା' ପ୍ରଭୁ ତାକୁ ସମ୍ମାନିତ କରି ବା ତା' ପ୍ରତି ଅନୁଗ୍ରହ କରି ତା'ର ପରୀକ୍ଷା ନିଅନ୍ତି, ସେ କହେ, "ମୋ ପ୍ରଭୁ ମୋତେ ସମ୍ମାନିତ କଲେ", କିନ୍ତୁ ଯେତେବେଳେ ସେ ତା' ପ୍ରାବଧାନକୁ ସଂକୁଚିତ କରି (ଭିନ୍ନ

فَاَمَّا الْاِنْسَانُ اِذَا مَا ابْتَلٰىهُ رَبُّهٗ فَاَكْرَمَهٗ
وَنَعَّمَهٗ ۙ فَيَقُوْلُ رَبِّىْٓ اَكْرَمَنِ ﴿١٥﴾ وَاَمَّآ اِذَا
مَا ابْتَلٰىهُ فَقَدَرَ عَلَيْهِ رِزْقَهٗ ۙ فَيَقُوْلُ رَبِّىْٓ
اَهَانَنِ ﴿١٦﴾ كَلَّا بَلْ لَّا تُكْرِمُوْنَ الْيَتِيْمَ ﴿١٧﴾ وَلَا

ରୂପେ) ପରୀକ୍ଷା ନିଅନ୍ତି, ସେ କହେ, "ମୋ' ପ୍ରଭୁ ମୋତେ ଲାଂଛିତ କଲେ ।" ନା ନା, ବରଂ ତୁମେମାନେ ଅନାଥଙ୍କୁ ଆଦର କରନାହିଁ, ଦରିଦ୍ରଭୋଜନ ଦେବାକୁ ପରସ୍ପରକୁ ଉତ୍ସାହିତ କରନାହିଁ ଏବଂ ଉତ୍ତରାଧିକାର ସୂତ୍ରରେ ମିଳିଥିବା ସଂପତ୍ତି ପୂରା ଖାଇଯାଅ । ତୁମେମାନେ ଧନକୁ ବହୁତ ଭଲପାଅ । (୮୯/୧୫-୨୦)

تَحٰٓضُّوْنَ عَلٰى طَعَامِ الْمِسْكِيْنِ ۝١٨ وَتَاْكُلُوْنَ التُّرَاثَ اَكْلًا لَّمًّا ۝١٩ وَّتُحِبُّوْنَ الْمَالَ حُبًّا جَمًّا ۝٢٠

## ୪୮୭. ଦୀନଦୁଃଖୀଙ୍କୁ ଭୋଜନ ଦିଅ

ବାସ୍ତବରେ ଆମ୍ଭେ ମନୁଷ୍ୟକୁ କଠିନ ପରିଶ୍ରମୀ କରି ଗଢ଼ିଛୁ । କ'ଣ ସେ ଭାବିଛି ଯେ ତା' ଉପରେ କାହାରି ଅଙ୍କୁଶ ନାହିଁ ? କହୁଛି ଯେ ମୁଁ ତ ବହୁତ ଧନ ଉଡ଼ାଇ ଦେଲି । କ'ଣ ସେ ଭାବିଛି ଯେ ତାକୁ କେହି ଦେଖିନାହିଁ? କ'ଣ ଆମ୍ଭେ ତାକୁ ଦୁଇ ଆଖି ଦେଇନାହୁଁ? ଗୋଟିଏ ଜିଭ ଏବଂ ଦୁଇଟି ଓଠ ମଧ୍ୟ? କ'ଣ ତାକୁ (ଭଲ ଓ ମନ୍ଦ) ଉଭୟ ବାଟ ଦେଖାଇନାହୁଁ? ମାତ୍ର ସେ (ଦୁର୍ଗମ) ଘାଟିପଥ ଦେଇ ଗଲା ନାହିଁ। ତୁମେ କ'ଣ ଜାଣ ଯେ ସେହି ଘାଟି କ'ଣ? (ତାହା ହେଉଛି) କୌଣସି କ୍ରୀତଦାସକୁ (ଦାସତ୍ୱରୁ) ମୁକ୍ତ କରିବା କିମ୍ବା ଭୋକଉପାସରେ ରହୁଥିବା ସଂପର୍କୀୟ ଅନାଥ ବା ଦୀନଦରିଦ୍ରକୁ ଭୋଜନ ଦେବା । (୯୦/୪-୧୬)

لَقَدْ خَلَقْنَا الْاِنْسَانَ فِيْ كَبَدٍ ۝٤ اَيَحْسَبُ اَنْ لَّنْ يَّقْدِرَ عَلَيْهِ اَحَدٌ ۝٥ يَقُوْلُ اَهْلَكْتُ مَالًا لُّبَدًا ۝٦ اَيَحْسَبُ اَنْ لَّمْ يَرَهٗٓ اَحَدٌ ۝٧ اَلَمْ نَجْعَلْ لَّهٗ عَيْنَيْنِ ۝٨ وَلِسَانًا وَّشَفَتَيْنِ ۝٩ وَهَدَيْنٰهُ النَّجْدَيْنِ ۝١٠ فَلَا اقْتَحَمَ الْعَقَبَةَ ۝١١ وَمَآ اَدْرٰىكَ مَا الْعَقَبَةُ ۝١٢ فَكُّ رَقَبَةٍ ۝١٣ اَوْ اِطْعٰمٌ فِيْ يَوْمٍ ذِيْ مَسْغَبَةٍ ۝١٤ يَّتِيْمًا ذَا مَقْرَبَةٍ ۝١٥ اَوْ مِسْكِيْنًا ذَا مَتْرَبَةٍ ۝١٦

## ୪୮୮. ଭଲ ଓ ମନ୍ଦ କର୍ମ ବିଷୟରେ ମଣିଷ ଜାଣେ

ସେ ମଣିଷର ଅନ୍ତରାତ୍ମାକୁ ଉଚିତ ଓ ଅନୁଚିତ କର୍ମ ସଂପର୍କରେ ସୂଚାଇ ଦେଇଛନ୍ତି । ସେହି ବ୍ୟକ୍ତି ହିଁ ବାସ୍ତବରେ ସଫଳତା ଲାଭକରେ, ଯିଏ ନିଜର ଅନ୍ତଃଶୁଦ୍ଧି କରେ ଏବଂ ସେହି ବ୍ୟକ୍ତି ଅସଫଳ ହୁଏ, ଯିଏ ନିଜ ଆତ୍ମାକୁ (ଅସତ୍ ଆଚାର ଓ ଅସତ୍ ବିଚାର ଦ୍ୱାରା) କଳୁଷିତ କରେ । (୯୧/୮-୧୦)

فَاَلْهَمَهَا فُجُوْرَهَا وَتَقْوٰىهَا ۝٨ قَدْ اَفْلَحَ مَنْ زَكّٰىهَا ۝٩ وَقَدْ خَابَ مَنْ دَسّٰىهَا ۝١٠

## ୪୮୯. ଆତ୍ମଶୁଦ୍ଧି ପାଇଁ ଦାନପୁଣ୍ୟ କର

ତେଣୁ, ଆମ୍ଭେ ତୁମମାନଙ୍କୁ ନର୍କର ଲେଲିହାନ ଅଗ୍ନିଶିଖାରୁ ସାବଧାନ କରିଦେଲୁ । ସେଥିରେ କେବଳ ସେହି ବ୍ୟକ୍ତି ପ୍ରବେଶ କରିବ, ଯିଏ ହତଭାଗା ଏବଂ ଯିଏ (ସତ୍ୟକୁ) ପ୍ରତ୍ୟାଖ୍ୟାନ କରି ମୁହଁ ଫେରାଇ ନେଲା । ମାତ୍ର ସେହି ବ୍ୟକ୍ତିକୁ ସେଥିରୁ ରକ୍ଷା କରାଯିବ ଯିଏ ଧର୍ମପରାୟଣ, ଯିଏ ନିଜର ଆତ୍ମଶୁଦ୍ଧି ପାଇଁ

فَاَنْذَرْتُكُمْ نَارًا تَلَظّٰى ۝١٤ لَا يَصْلٰىهَآ اِلَّا الْاَشْقَى ۝١٥ الَّذِيْ كَذَّبَ وَتَوَلّٰى ۝١٦ وَسَيُجَنَّبُهَا الْاَتْقَى ۝١٧ الَّذِيْ يُؤْتِيْ مَالَهٗ يَتَزَكّٰى ۝١٨ وَمَا لِاَحَدٍ

(ଦାନପୁଣ୍ୟରେ) ଧନ ଖର୍ଚ୍ଚ କରୁଥାଏ ମାତ୍ର ତାହା ସେ କାହାରି ଉପକାରର ପ୍ରତିବଦଳରେ କରେନାହିଁ, ବରଂ କେବଳ ନିଜର ମହାନ୍ ପ୍ରଭୁଙ୍କ ପ୍ରସନ୍ନତା ଲାଭ କରିବା ଉଦ୍ଦେଶ୍ୟରେ କରେ । ଏହି ବ୍ୟକ୍ତି ଅବଶ୍ୟ ଅତିଶୀଘ୍ର (ସ୍ୱର୍ଗଲାଭ କରି) ସନ୍ତୁଷ୍ଟ ହୋଇଯିବ । (୯୨/୧୪-୨୧)

عِنْدَهٗ مِنْ نِّعْمَةٍ تُجْزٰىٓ ۙ﴿۱۹﴾ اِلَّا ابْتِغَآءَ وَجْهِ رَبِّهِ الْاَعْلٰى ۚ﴿۲۰﴾ وَلَسَوْفَ يَرْضٰى ﴿۲۱﴾

## ୪୯୦. ଭିକ୍ଷୁକକୁ ଭର୍ତ୍ସନା କରନାହିଁ

ସୁତରାଂ, (କୌଣସି) ଅନାଥ ପ୍ରତି କଠୋର ହୁଅନାହିଁ କିମ୍ବା ଭିକ୍ଷୁକକୁ ଭର୍ତ୍ସନା କରନାହିଁ । ତୁମ ପ୍ରଭୁଙ୍କ ଅନୁଗ୍ରହଗୁଡ଼ିକ ବିଷୟରେ (ନିୟମିତ) ଚର୍ଚ୍ଚା କରୁଥାଅ । (୯୩/୯-୧୧)

فَاَمَّا الْيَتِيْمَ فَلَا تَقْهَرْ ۗ﴿۹﴾ وَاَمَّا السَّآئِلَ فَلَا تَنْهَرْ ۗ﴿۱۰﴾ وَاَمَّا بِنِعْمَةِ رَبِّكَ فَحَدِّثْ ﴿۱۱﴾

## ୪୯୧. ପ୍ରାକୃତିକ ଧର୍ମର ପାଳନ ଏକ ଆଦିସ୍ରୋତ

ସ୍ପଷ୍ଟ ପ୍ରମାଣ ନ ଆସିଥିଲେ ଗ୍ରନ୍ଥଧାରୀ ଓ ବହୁଦେବବାଦୀମାନେ (ସେମାନଙ୍କ ପନ୍ଥାରୁ) ଓହରି ନ ଥାଆନ୍ତେ । ସେଇମାନଙ୍କ ମଧ୍ୟରୁ ଅଲ୍ଲାହଙ୍କ ଦ୍ୱାରା ନିଯୁକ୍ତ କରାଯାଇଥିବା ଜଣେ ବାର୍ତ୍ତାବହ ସେମାନଙ୍କୁ ପବିତ୍ର ଗ୍ରନ୍ଥ ପାଠ କରି ଶୁଣାନ୍ତି, ଯେଉଁଥିରେ ଚିରନ୍ତନ ନିୟମାବଳୀ ରହିଛି । ମାତ୍ର ଗ୍ରନ୍ଥଧାରୀମାନଙ୍କ ପାଖରେ ସ୍ପଷ୍ଟ ପ୍ରମାଣ ପହଁଚି ସାରିବା ସତ୍ତ୍ୱେ ସେମାନେ ମତଭେଦ କଲେ । ସେମାନଙ୍କୁ (ପୂର୍ବ ଗ୍ରନ୍ଥରେ ମଧ୍ୟ) ଏହାହିଁ ଆଜ୍ଞା ଦିଆଯାଇଥିଲା ଯେ ସେମାନେ ସ୍ୱଭାବଗତ (ଅର୍ଥାତ୍ ପ୍ରାକୃତିକ) ଧର୍ମରେ ଅଟଳ ରହି ଏକନିଷ୍ଠ ହୋଇ ଅଲ୍ଲାହଙ୍କର ଉପାସନା କରନ୍ତୁ ଏବଂ ଦୈନିକ ଉପାସନା (ଅର୍ଥାତ୍ ନମାଜ) ପ୍ରତିଷ୍ଠା କରନ୍ତୁ ଏବଂ ନିୟମିତ ଦାନ କରନ୍ତୁ । ଏହାହିଁ ପ୍ରତିଷ୍ଠିତ ଧର୍ମ । (୯୮/୧-୫)

لَمْ يَكُنِ الَّذِيْنَ كَفَرُوْا مِنْ اَهْلِ الْكِتٰبِ وَالْمُشْرِكِيْنَ مُنْفَكِّيْنَ حَتّٰى تَاْتِيَهُمُ الْبَيِّنَةُ ۙ﴿۱﴾ رَسُوْلٌ مِّنَ اللّٰهِ يَتْلُوْا صُحُفًا مُّطَهَّرَةً ۙ﴿۲﴾ فِيْهَا كُتُبٌ قَيِّمَةٌ ۗ﴿۳﴾ وَمَا تَفَرَّقَ الَّذِيْنَ اُوْتُوا الْكِتٰبَ اِلَّا مِنْۢ بَعْدِ مَا جَآءَتْهُمُ الْبَيِّنَةُ ۗ﴿۴﴾ وَمَآ اُمِرُوْٓا اِلَّا لِيَعْبُدُوا اللّٰهَ مُخْلِصِيْنَ لَهُ الدِّيْنَ ۙ حُنَفَآءَ وَيُقِيْمُوا الصَّلٰوةَ وَيُؤْتُوا الزَّكٰوةَ وَذٰلِكَ دِيْنُ الْقَيِّمَةِ ۗ﴿۵﴾

## ୪୯୨. ପ୍ରତ୍ୟେକ କର୍ମର ରେକର୍ଡ଼ ରହେ

ଯିଏ ଅଣୁ ପରିମାଣରେ କୌଣସି ସତକର୍ମ କରିଥିବ, ସେ (ବିଚାର ଦିନ) ତାହା ଦେଖିନେବ ଏବଂ ଯିଏ ଅଣୁ ପରିମାଣରେ ଦୁଷ୍କର୍ମ କରିଥିବ, ସେ ମଧ୍ୟ ତାହା ଦେଖିନେବ । (୯୯/୭-୮)

فَمَنْ يَّعْمَلْ مِثْقَالَ ذَرَّةٍ خَيْرًا يَّرَهٗ ۗ﴿۷﴾ وَمَنْ يَّعْمَلْ مِثْقَالَ ذَرَّةٍ شَرًّا يَّرَهٗ ﴿۸﴾

## ୪୯୩. ଧନର ଲୋଭ ମଣିଷକୁ କୃତଘ୍ନ କରିଦିଏ

ବାସ୍ତବରେ ମଣିଷ ତା' ପାଳନକର୍ତ୍ତାଙ୍କ ପ୍ରତି ଭାରି କୃତଘ୍ନ ଆଉ ଏହା ତାକୁ ଭଲରୂପେ ଜଣା । ଧନପାଇଁ ତା'ର ଲୋଭ ପ୍ରବଳ । (୧୦୦/୬-୮)

اِنَّ الْاِنْسَانَ لِرَبِّهٖ لَكَنُوْدٌ ۚ﴿۶﴾ وَاِنَّهٗ عَلٰى ذٰلِكَ لَشَهِيْدٌ ۚ﴿۷﴾ وَاِنَّهٗ لِحُبِّ الْخَيْرِ لَشَدِيْدٌ ﴿۸﴾

**୪୯୪. ପୁଣ୍ୟଭାର ଅଧିକ ହେଲେ ସ୍ୱର୍ଗଲାଭ ଏବଂ ପାପଭାର ଅଧିକ ହେଲେ ନର୍କବାସ ହେବ**

ପୁଣି ଯାହାର (ସତକର୍ମର) ଓଜନ ଭାରି ହେବ, ସେ ନିଜ ମନ ପସନ୍ଦର ସୁଖ ଭୋଗ କରିବ, ମାତ୍ର ଯାହାର (ସତକର୍ମର) ଓଜନ ହାଲୁକା ହେବ, ସେ ଗଭୀର ଗର୍ତ୍ତରେ ପଡ଼ିବ (ଅର୍ଥାତ୍ ନର୍କରେ ପ୍ରବେଶ କରିବ) । (୧୦୧/୬-୯)

فَأَمَّا مَنْ ثَقُلَتْ مَوَازِينُهُ ۝٦ فَهُوَ فِي عِيشَةٍ
رَّاضِيَةٍ ۝٧ وَأَمَّا مَنْ خَفَّتْ مَوَازِينُهُ ۝٨
فَأُمُّهُ هَاوِيَةٌ ۝٩

**୪୯୫. ସଂସାରଭୋଗର ପ୍ରତିଦ୍ୱନ୍ଦିତାରେ ତୁମେ ପରଲୋକ ଭୁଲିଗଲ**

(ସଂସାରଭୋଗର ପ୍ରତିଦ୍ୱନ୍ଦିତାରେ) ପରସ୍ପରକୁ ଟପିଯିବାର ଲାଳସା ତୁମମାନଙ୍କୁ (ପରଲୋକ ବିଷୟରେ) ଭୁଲାଇ ରଖିଛି । ଏପରିକି (ଏହି ଚିନ୍ତାରେ) ତୁମେମାନେ ସମାଧିରେ ପହଁଚିଯାଅ । ଶୀଘ୍ର ତୁମେମାନେ (ବାସ୍ତବିକତା) ଜାଣିଯିବ । ଖୁବ୍ ଶୀଘ୍ର ତୁମେମାନେ ଜାଣିଯିବ । ଯଦି ତୁମେମାନେ ଭଲ ଭାବରେ ଏକଥା ଜାଣିଥାଆନ୍ତ, ତେବେ ଏପରି କରନ୍ତ ନାହିଁ । ତୁମେମାନେ ଅବଶ୍ୟ ନର୍କ ଦେଖିବ । ପୁଣି ନିଜ ଆଖିରେ ଦେଖିବ । ଏହାପରେ ତୁମମାନଙ୍କୁ ନିଶ୍ଚୟ (ଆମ୍ଭର) ଅନୁଗ୍ରହଗୁଡ଼ିକ ବିଷୟରେ ପ୍ରଶ୍ନ କରାଯିବ ।

(୧୦୨/୧-୮)

أَلْهَىٰكُمُ التَّكَاثُرُ ۝١ حَتَّىٰ زُرْتُمُ الْمَقَابِرَ ۝٢
كَلَّا سَوْفَ تَعْلَمُونَ ۝٣ ثُمَّ كَلَّا سَوْفَ تَعْلَمُونَ ۝٤
كَلَّا لَوْ تَعْلَمُونَ عِلْمَ الْيَقِينِ ۝٥ لَتَرَوُنَّ
الْجَحِيمَ ۝٦ ثُمَّ لَتَرَوُنَّهَا عَيْنَ الْيَقِينِ ۝٧
ثُمَّ لَتُسْأَلُنَّ يَوْمَئِذٍ عَنِ النَّعِيمِ ۝٨

**୪୯୬. ସଦାଚାରୀ ଓ ସଦ୍‌ବିଶ୍ୱାସୀ ସଫଳ ହେବେ**

କାଳର ରାଣ ! ଯେଉଁମାନେ (ସତ୍ୟରେ) ବିଶ୍ୱାସ କରନ୍ତି, ସତ୍‌କର୍ମ କରନ୍ତି, ପରସ୍ପରକୁ ସତ୍‌ପଥରେ ଚାଲିବାର ଏବଂ ସଂଯମ ଆଚରଣ କରିବାର ଉପଦେଶ ଦେଉଥାଆନ୍ତି, ଏହି ଲୋକମାନଙ୍କ ବ୍ୟତୀତ ଅନ୍ୟମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବେ । (୧୦୩/୧-୩)

وَالْعَصْرِ ۝١ إِنَّ الْإِنسَانَ لَفِي خُسْرٍ ۝٢ إِلَّا الَّذِينَ
آمَنُوا وَعَمِلُوا الصَّالِحَاتِ وَتَوَاصَوْا بِالْحَقِّ
وَتَوَاصَوْا بِالصَّبْرِ ۝٣

**୪୯୭. ପରନିନ୍ଦୁକ ଓ ଚୁଗୁଲିଆର ସର୍ବନାଶ ହେବ**

ପ୍ରତ୍ୟେକ ପରନିନ୍ଦୁକ ଓ ଚୁଗୁଲିଆର ସର୍ବନାଶ ହେବ, (ଏବଂ ଏଭଳି ବ୍ୟକ୍ତିର) ଯିଏ ଧନ ସଂଚୟ କରେ ଆଉ ତାକୁ ଗଣିଗଣି ରଖେ । ସେ ଭାବୁଛି ଯେ ତା' ଧନ ତାକୁ ସଦା ଜୀବିତ ରଖିବ । କଦାପି ନୁହେଁ । ସେ ନିଶ୍ଚୟ ସର୍ବଗ୍ରାସକାରୀ ଅନଳରେ ଦଗ୍ଧ ହେବ । ତୁମେ କ'ଣ ଜାଣ ଯେ ସର୍ବଗ୍ରାସୀ ଅନଳ କ'ଣ ? ଏହା ଅଲ୍ଲାହଙ୍କ ଦ୍ୱାରା ପ୍ରଜ୍ୱଳିତ ଅଗ୍ନି, ଯାହା (ସେମାନଙ୍କର) ଅନ୍ତର

وَيْلٌ لِّكُلِّ هُمَزَةٍ لُّمَزَةٍ ۝١ الَّذِي جَمَعَ مَالًا وَ
عَدَّدَهُ ۝٢ يَحْسَبُ أَنَّ مَالَهُ أَخْلَدَهُ ۝٣ كَلَّا
لَيُنبَذَنَّ فِي الْحُطَمَةِ ۝٤ وَمَا أَدْرَاكَ مَا
الْحُطَمَةُ ۝٥ نَارُ اللَّهِ الْمُوقَدَةُ ۝٦ الَّتِي تَطَّلِعُ

ଭେଦ କରିବ । ସେମାନଙ୍କୁ ବନ୍ଦ କରିଦିଆଯିବ (ସେହି ଅଗ୍ନିର) ଉଚ୍ଚ ଉଚ୍ଚ ସ୍ତମ୍ଭ ମଧ୍ୟରେ । (୧୦୪/୧-୯)

عَلَى الْأَفْـِٔدَةِ ۝٧ إِنَّهَا عَلَيْهِم مُّؤْصَدَةٌ ۝٨ فِي
عَمَدٍ مُّمَدَّدَةٍ ۝٩

## ୪୯୮. ନମାଜପାଠରେ ଅବହେଳା କରନାହିଁ

କ'ଣ ତୁମେ ସେହି ବ୍ୟକ୍ତିକୁ ଦେଖିଲ, ଯିଏ (ପରଲୋକର) ବିଚାର ଦିନକୁ ମିଥ୍ୟା ବୋଲି କହେ ? ସେ ହିଁ ଅନାଥମାନଙ୍କୁ ଧକ୍କା ଦେଇଥାଏ ଏବଂ ଗରିବମାନଙ୍କୁ ଭୋଜନ ଦେବା ଲାଗି (ଲୋକଙ୍କୁ) କୁହେନାହିଁ । ସେହି ନମାଜ ପାଠ କରୁଥିବା ଲୋକଙ୍କର ମଧ୍ୟ ସର୍ବନାଶ ହେବ, ଯେଉଁମାନେ ନିଜ ନମାଜ ପ୍ରତି ଅବହେଳା କରନ୍ତି, ଲୋକ ଦେଖାଣିଆ କର୍ମ କରନ୍ତି ଏବଂ ସାଧାରଣ ବ୍ୟବହାର୍ଯ୍ୟ ଜିନିଷଟିଏ ମଧ୍ୟ (ଅନ୍ୟକୁ) ଦେବାକୁ ମନା କରିଦିଅନ୍ତି । (୧୦୭/୧-୭)

أَرَءَيْتَ الَّذِي يُكَذِّبُ بِالدِّينِ ۝١ فَذَٰلِكَ الَّذِي
يَدُعُّ الْيَتِيمَ ۝٢ وَلَا يَحُضُّ عَلَىٰ طَعَامِ الْمِسْكِينِ ۝٣
فَوَيْلٌ لِّلْمُصَلِّينَ ۝٤ الَّذِينَ هُمْ عَن صَلَاتِهِمْ
سَاهُونَ ۝٥ الَّذِينَ هُمْ يُرَاءُونَ ۝٦ وَيَمْنَعُونَ
الْمَاعُونَ ۝٧

## ୪୯୯. ତୁମମାନଙ୍କ ଈଶ୍ୱର ଅଜନ୍ମା ଓ ଅନୁପମ

କହିଦିଅ, "ସେ ଅଲ୍ଲାହ୍ ଏକ । ଅଲ୍ଲାହ ଆବଶ୍ୟକତା-ରହିତ । ତାଙ୍କଠାରୁ କେହି ଜନ୍ମ ନେଇନାହିଁ ବା ତାଙ୍କୁ କେହି ଜନ୍ମ ଦେଇନାହିଁ ଏବଂ କେହି ତାଙ୍କର ସମକକ୍ଷ ନୁହେଁ ।'' (୧୧୨/୧-୪)

قُلْ هُوَ اللَّهُ أَحَدٌ ۝١ اللَّهُ الصَّمَدُ ۝٢ لَمْ يَلِدْ
وَلَمْ يُولَدْ ۝٣ وَلَمْ يَكُن لَّهُ كُفُوًا أَحَدٌ ۝٤

## ୫୦୦. ଦୁର୍ଭାବନା ଆସିଲେ ପ୍ରଭୁଙ୍କ ଆଶ୍ରୟ ନିଅ

(ପ୍ରାର୍ଥନାରେ) କୁହ, "ମୁଁ ମନୁଷ୍ୟମାନଙ୍କର ପ୍ରତିପାଳକ, ମନୁଷ୍ୟମାନଙ୍କର ଅଧୀଶ୍ୱର ଏବଂ ମନୁଷ୍ୟମାନଙ୍କର ପରମେଶ୍ୱରଙ୍କ ଆଶ୍ରୟ ଭିକ୍ଷା କରୁଛି ସେହି ଦୁର୍ଭାବନା ଉତ୍ପନ୍ନକାରୀର କୁପ୍ରଭାବରୁ, ଯିଏ ଲୋକଙ୍କ ମନରେ ଦୁର୍ଭାବନା ଉତ୍ପନ୍ନ କରିଥାଏ, ସେ କୌଣସି ମାନବ ହେଉ ବା ଦାନବ ।" (୧୧୪/୧-୬)

قُلْ أَعُوذُ بِرَبِّ النَّاسِ ۝١ مَلِكِ النَّاسِ ۝٢
إِلَٰهِ النَّاسِ ۝٣ مِن شَرِّ الْوَسْوَاسِ الْخَنَّاسِ ۝٤
الَّذِي يُوَسْوِسُ فِي صُدُورِ النَّاسِ ۝٥ مِنَ الْجِنَّةِ
وَالنَّاسِ ۝٦




**ତୁମମାନଙ୍କ ମଧ୍ୟରେ ସର୍ବୋତ୍ତମ ବ୍ୟକ୍ତି ସେଇ, ଯିଏ କୁରଆନ ଶିକ୍ଷା କରେ ଏବଂ ଏହାର ଶିକ୍ଷା ଦିଏ ।**

ମହାମାନ୍ୟ ମୁହମ୍ମଦ (ସହୀ ବୁଖାରୀ)

إِنَّ اللَّهَ يَأْمُرُ بِالْعَدْلِ وَالْإِحْسَانِ وَإِيتَاءِ ذِي
الْقُرْبَىٰ وَيَنْهَىٰ عَنِ الْفَحْشَاءِ وَالْمُنْكَرِ وَالْبَغْيِ يَعِظُكُمْ
لَعَلَّكُمْ تَذَكَّرُونَ ﴿٩٠﴾

ଅଲ୍ଲାହ୍ ତୁମମାନଙ୍କୁ ନ୍ୟାୟବିଚାର କରିବା, (ଅନ୍ୟର) ଉପକାର କରିବା ଏବଂ ନିକଟ ସଂପର୍କୀୟମାନଙ୍କୁ (ସେମାନଙ୍କର ପ୍ରାପ୍ୟ) ଦେବାର ଆଜ୍ଞା ଦେଉଛନ୍ତି ଏବଂ ଅଶ୍ଳୀଳତା, ଅପକର୍ମ ତଥା ଅନ୍ୟାୟ-ଅତ୍ୟାଚାରରୁ ବିରତ ରହିବାର ମଧ୍ୟ ଆଜ୍ଞା ଦେଉଛନ୍ତି । ସେ ତୁମମାନଙ୍କୁ ଏହି ଉପଦେଶ ଦେଉଛନ୍ତି, ଯେପରିକି ତୁମେମାନେ ମନେରଖିବ ।

➡ ପବିତ୍ର କୁରଆନ୍ ୧୬/୯୦